# ଅନୁଭବକୁ ସତ୍ୟ କହି

(ଠାକୁର ଶ୍ରୀ ଅଭିରାମ ପରମହଂସ ଦେବଙ୍କ ଲୀଳାନୁଭୂତି)

*ଲେଖକ :*

**ଶ୍ରୀ ପ୍ରତାପ କିଶୋର ପଟ୍ଟନାୟକ**

*ଠିକଣା :*

ଶ୍ରୀ ଅଭିରାମ ନଗର (ନିଉ କଲୋନୀ),

ରଙ୍ଗାଡ଼ିପା, ସୁନ୍ଦରଗଡ଼ - ୭୭୦୦୦୨

*ପ୍ରକାଶିକା :*

**ଶ୍ରୀମତୀ ପ୍ରୀତି ପଟ୍ଟନାୟକ**

ଶ୍ରୀ ଅଭିରାମ ନଗର (ନିଉ କଲୋନୀ),

ରଙ୍ଗାଡ଼ିପା, ସୁନ୍ଦରଗଡ଼ - ୭୭୦୦୦୨



*ପ୍ରଥମ ସଂସ୍କରଣ : ଡିସେମ୍ବର, ୨୦୧୮*

*ପ୍ରଚ୍ଛଦପଟ :* ବିଜୟ ସାହୁ, କଟକ

*ମୁଦ୍ରଣ : ସ୍ୱସ୍ତିକ୍ ପ୍ରିଣ୍ଟର୍ସ*

*ପ୍ରାପ୍ତିସ୍ଥାନ :*

ଶ୍ରୀ ଅଭିରାମ ନଗର (ନିଉ କଲୋନୀ),

ରଙ୍ଗାଡ଼ିପା, ସୁନ୍ଦରଗଡ଼ - ୭୭୦୦୦୨

*ଯୋଗାଯୋଗ :*

୯୪୩୮୦୭୭୦୫୩, + ୯୧ ୬୬୨୨୨୭୨୧୦୩

*ସହଯୋଗ ରାଶି :*

ଟ. ୧୦୦/- (ଏକ ଶତ ଟଙ୍କା ମାତ୍ର)



ଶରଣଦ! ତୁମ୍ଭ ଅବ୍ଜ ଅଂଘ୍ରି ତଳେ
ରେଣୁ ପରି ମୋତେ ରଖ କାଳେ କାଳେ ।



ମନୋଭିରାମଂ	ନୟନାଭିରାମଂ
ବଚୋଭିରାମଂ	ଶ୍ରବଣାଭିରାମଂ
ସଦାଭିରାମଂ	ସତତାଭିରାମଂ
ବନ୍ଦେ ସଦା	ଗୁରୁଦେବାଭିରାମଂ ।

# ହୃଦୟ ରସରେ ଜାରିତ ଓ ନିର୍ମଳ ଭକ୍ତି-ଭାବନାରେ ସ୍ନାତ 'ଅନୁଭବକୁ ସତ୍ୟ କହି' ସମ୍ପର୍କରେ ପଦେ

ଏକୋଇଶିଟି ଭକ୍ତିରସାତ୍ମକ ଜୀବନ୍ତ ଅନୁଭୂତିର କଥାକୁ ନେଇ ପରିକଳ୍ପିତ ପୁସ୍ତକ 'ଅନୁଭବକୁ ସତ୍ୟ କହି' ଶ୍ରଦ୍ଧେୟ ପ୍ରତାପ କିଶୋର ପଟ୍ଟନାୟକଙ୍କର ଭକ୍ତି ତଦ୍‌ଗତ ହୃଦୟର ଏକ ମାର୍ମିକ ଆଲେଖ୍ୟ । ପୁସ୍ତକର ଶୀର୍ଷକ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବଙ୍କଦ୍ୱାରା ପ୍ରଣୀତ ଗ୍ରନ୍ଥ "କଳି ଭାଗବତ"ରୁ ସେ ଚୟନ କରିଛନ୍ତି । ସେ ନିଜେ ଠାକୁରଙ୍କର ଆଶ୍ରିତ ଓ ଭକ୍ତ; ଏବେ ନୁହେଁ, କିଶୋର ବୟସରୁ ଯେତେବେଳେ ସେ ଯାଇଥିଲେ କରମଳା ମାତ୍ର ନଅ / ଦଶ ବର୍ଷ ବୟସରେ । ସେଦିନ ସେ ଠାକୁରଙ୍କୁ ଦେଖିଥିଲେ ସ୍ୱଦେହରେ । ଚାଲୁଥିବା, କଥା କହୁଥିବା, ମୃଦୁ ମୃଦୁ ହସୁଥିବା ଦେଖି ସେ ତନ୍ମୟ ହୋଇ ଯାଇଥିଲେ । ତାଙ୍କ ମନ, ପ୍ରାଣ ଓ ହୃଦୟରେ ସେହି ପ୍ରେମମୟ ଠାକୁରଙ୍କ ମୂର୍ତ୍ତି ଜୀବନ୍ତ ହୋଇ ରହିଗଲା ଓ ଏବେ ମଧ୍ୟ ରହିଛି । ୧୯୬୩ ମସିହାରେ ଠାକୁରଙ୍କ ମାନବଲୀଳାର ଅନ୍ତ ହୋଇଗଲା । ସେ ଶୁଣିଲେ । ଅନ୍ତର ଭିତରେ ସୃଷ୍ଟି ହେଲା ଦୁଃଖ । ନୟନରେ ଅଶ୍ରୁ । ଅଥଚ ସେହି ଦୁଃଖ ଓ ଅଶ୍ରୁ ମଧ୍ୟ ଦେଇ ସେ ସ୍ପଷ୍ଟ ଦେଖିପାରିଲେ ଆରାଧ୍ୟ ଠାକୁରଙ୍କୁ । ତାହା ଆଉ ସ୍ଥୂଳ ଦୃଷ୍ଟିରେ ନୁହେଁ; ସୂକ୍ଷ୍ମ ଦୃଷ୍ଟିରେ; ଅନ୍ୟ ଅର୍ଥରେ ଦିବ୍ୟ ଦୃଷ୍ଟିରେ, ତୈଜସ ଦୃଷ୍ଟିରେ । ତାଙ୍କ ପାଖରେ ଠାକୁରଙ୍କ ଆଶୀର୍ବାଦ ପ୍ରାପ୍ତ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ପ୍ରଫେସର ହରିହର ପଟ୍ଟନାୟକ ଓ ରାଧାଶ୍ୟାମ ପଟ୍ଟନାୟକ, ଉଭୟ ତାଙ୍କରି ଗ୍ରାମର ଓ ନିଜର ପିତୃତୁଲ୍ୟ ବ୍ୟକ୍ତି, ଆଦର୍ଶ ହୋଇଗଲେ; ହୋଇଗଲେ ମଧ୍ୟ ପ୍ରେରଣା । ୧୯୬୮ /୬୯ ମସିହା ବେଳକୁ ସେ ବାଲେଶ୍ୱରର ଫକୀର ମୋହନ କଲେଜରେ ଛାତ୍ର ଥିଲା ବେଳେ ମୁଁ ଥିଲି ସେହି ମହାବିଦ୍ୟାଳୟର

ଅଧ୍ୟାପକ । ମୁଁ ତାଙ୍କୁ ସେଇଠି ଜାଣିଥିଲି । ସେ ଥିଲେ ଶାନ୍ତ ସମାହିତ ଚିତ୍ତର ଛାତ୍ରଟିଏ । ସେତେବେଳେ ମୁଁ ଜାଣି ନ ଥିଲି ସେ ଠାକୁର ଅଭିରାମଙ୍କର ଆଶ୍ରିତ ବୋଲି ।

ଏହା ମଧ୍ୟରେ ବିତିଗଲାଣି ଅନେକ ବର୍ଷ ପ୍ରାୟ ଅର୍ଦ୍ଧଶତାବ୍ଦୀ । ସେ ଅଧ୍ୟୟନ ସମାପ୍ତି ପରେ ବୃତ୍ତିଗତ ଜୀବନ ଆରମ୍ଭ କଲେ ଶିକ୍ଷା ବିଭାଗରେ ସୁଦୂର ସୁନ୍ଦରଗଡ଼ରେ । ତେଣ୍ଡରା ହାଇସ୍କୁଲରେ ଥିଲା ବେଳେ ଶିକ୍ଷକ ନ ହୋଇ ବି ପିଲାଙ୍କୁ ପଢ଼ାଇଲେ । ଅଫିସ୍‌ରେ ଆକାଉଣ୍ଟାଣ୍ଟ ହେଲେ, ନିଜର କର୍ତ୍ତବ୍ୟ ସୁଚାରୁ ରୂପେ ସମ୍ପାଦନ କଲେ । ଅଥଚ ଠାକୁରଙ୍କଠାରୁ ଶିଖିଥିବା ସତ୍ୟ, ଶାନ୍ତି, ଦୟା, କ୍ଷମାକୁ ସେ ଭୁଲି ନ ଥିଲେ; ହରେଇ ନ ଥିଲେ ନିଜର ସ୍ୱାଭିମାନ । କୌଣସି ଲାଳସା ରଖି ନ ଥିଲେ । ଠାକୁରଙ୍କର ବାଣୀ 'କର୍ମ ନ ଥିଲେ ପ୍ରଭୁ ସ୍ନେହ କାହିଁ' ତାଙ୍କ ଭିତରେ ଅନବରତ ପ୍ରତିଧ୍ୱନିତ ହୋଇଛି । ଶ୍ରୀମଦ୍‌ଭଗବତ୍ ଗୀତାର ବାଣୀ – 'ଅହଙ୍କାରଂ ବଳଂ ଦର୍ପଂ କାମଂ କ୍ରୋଧଂ ପରିଗ୍ରହଂ / ବିମୁଚ୍ୟ ନିର୍ମମୋ ଶାନ୍ତ ବ୍ରହ୍ମଭୂୟାୟଃ କଳ୍ପତେ' ତାଙ୍କ ଭିତରେ ମର୍ମରିତ ହୋଇଉଠିଛି । ସେ ହୋଇଯାଇଛନ୍ତି 'ବ୍ରହ୍ମଭୂତଃ ପ୍ରସନ୍ନାତ୍ମା' । କିଛି ଚିନ୍ତା ନାହିଁ । ଅନ୍ୟମାନଙ୍କ ପରି ସେ ଉପରିସ୍ଥଙ୍କୁ ତୋଷାମଦ କରି ନାହାନ୍ତି । କାହା ପାଖରେ ନତଜାନୁ ହୋଇ ନାହାନ୍ତି । କେବଳ ଶୟନେ, ସ୍ୱପନେ, ଜାଗରଣେ ଠାକୁରଙ୍କୁ ସ୍ମରଣ, ମନନ ଓ ଧ୍ୟାନ । ବାଧା ଆସିଛି, ବିପଦ ଆସିଛି; କୁଆଡ଼େ ମିଳେଇ ଯାଇଛି ଠାକୁରଙ୍କ କୃପାରୁ । ବଣେଇରୁ ପୁନର୍ବାର ଆସିଛନ୍ତି ସୁନ୍ଦରଗଡ଼ । ସେଇଠି ଘର କରିଛନ୍ତି, ରହିଛନ୍ତି ସପରିବାର । ଅବସର ନେଇଛନ୍ତି ମାତ୍ର ଭୁଲି ନାହାନ୍ତି ଠାକୁରଙ୍କୁ । ବାରମ୍ବାର ଆସିଛନ୍ତି କରମଳା । ବିଭିନ୍ନ ଉତ୍ସବରେ ଯୋଗ ଦେଇଛନ୍ତି ଠାକୁରଙ୍କ ଆଶ୍ରିତ ଭକ୍ତ ଭାଇ ଭଉଣୀମାନଙ୍କ ସହିତ ମିଶିଛନ୍ତି, ଅର୍ଜନ କରିଛନ୍ତି ଅନେକ ଅନୁଭୂତି । ସେହି ଅନୁଭୂତିମାନଙ୍କ ମଧ୍ୟରୁ ଏକୋଇଶିଟି ପ୍ରସଙ୍ଗକୁ ନେଇ ଏ ପୁସ୍ତକର ପରିକଳ୍ପନା ।

ପ୍ରତ୍ୟେକ ପ୍ରସଙ୍ଗ ବଡ଼ ହୃଦୟସ୍ପର୍ଶୀ । ପ୍ରତ୍ୟେକ ଭକ୍ତି-ଭାବନାର ନିର୍ମଳ ଅଭିବ୍ୟକ୍ତି । ପ୍ରଥମଟି 'ଗୁରୁ କୃପା ହିଁ କେବଳ ଭିକ୍ଷା ଏହି ।' ଭାରତବର୍ଷର ଐତିହ୍ୟ ଓ ପରମ୍ପରାରେ ଗୁରୁବାଦ ଏକ ଅମଳିନ ଦୀପ୍ତି । ଯିଏ ଗୁରୁ ସିଏ ସ୍ୱୟଂ ଈଶ୍ୱର । ପ୍ରକୃତ ଗୁରୁ ପଥଭ୍ରଷ୍ଟ ମଣିଷର ଯଥାର୍ଥ ମାର୍ଗ ନିର୍ଦ୍ଦେଶକ । ବିଂଶ ଶତାବ୍ଦୀ ପ୍ରଥମାର୍ଦ୍ଧରେ ଠାକୁର ଅଭିରାମ ହିଁ ହେଲେ ଯଥାର୍ଥ ଗୁରୁ । ସନାତନ ଧର୍ମର ଜୀବନ୍ତ ପ୍ରତିଭୂ । ଧର୍ମ ନାମରେ ସ୍ୱେଚ୍ଛାଚାରିତାର ସେ ବିରୋଧୀ । ସାଧୁ ଓ ସନ୍ନ୍ୟାସୀର ଭେକ ପିନ୍ଧି ଲୋକଙ୍କୁ ଶୋଷଣ କରୁଥିବା, ନାନା ବ୍ୟଭିଚାରରେ ଲିପ୍ତଥିବା ବ୍ୟକ୍ତିଙ୍କୁ ସେ କଠୋର ସମାଲୋଚନା କରିଛନ୍ତି । ସେମାନଙ୍କର ମୁଖା ଖୋଲି ଦେଇଛନ୍ତି । ଠାକୁରଙ୍କ ପରି ଗୁରୁ ହିଁ ଆର୍ତ୍ତମାନଙ୍କୁ କୃପା ପ୍ରଦାନ କରନ୍ତି । ପ୍ରତାପବାବୁ ତାଙ୍କର କୃପା କିପରି ଅଲକ୍ଷ୍ୟରେ ପାଇଛନ୍ତି ଓ ଅନ୍ୟମାନେ ପାଇଛନ୍ତି ତାହାକୁ

ବେଶ୍ ସୁନ୍ଦର ଭାବରେ ରୂପ ଦେଇଛନ୍ତି । 'ଚାତକ ନବଘନ ସମ୍ବାଦ' ପ୍ରସଙ୍ଗରେ ଜୀବନରେ ମୋହ ନୁହେଁ; ବ୍ରତର ଗୁରୁତ୍ୱକୁ ଉଲ୍ଲେଖ କରିଛନ୍ତି । ସେ ନିଜକୁ ଚାତକ ମନେକରି ଯେପରି ଠାକୁରଙ୍କୁ ନବଘନ ରୂପ କଳ୍ପନା କରି ଠାକୁରଙ୍କ କବିତାରୁ ଉଦ୍ଧାର କରି କହିଛନ୍ତି – 'ମୁହିଁ ସିନା ନାଥ ଚାତକ ଆପଣ ନବଘନ' ବାସ୍ତବିକ ତାତ୍ପର୍ଯ୍ୟପୂର୍ଣ୍ଣ । ପୁନଶ୍ଚ ସେ ଗୁରୁଶକ୍ତିର ଅଦ୍‌ଭୁତ କ୍ରିୟା ବିଷୟରେ ଉଲ୍ଲେଖ କରି ଠାକୁରଙ୍କ ପରି ଅସୀମ ଐଶୀଶକ୍ତିଧାରୀ ଗୁରୁଙ୍କର କୃପା ସେ କିପରି ତେଣ୍ଡରାରେ ଥିଲା ବେଳେ ଉପଲବ୍‌ଧି କରିଛନ୍ତି ତାହାକୁ ସୂଚାଇ ଦେଇଛନ୍ତି । ଠାକୁର ତ ନିଜେ ପରମ ଗୁରୁ । ଅଥଚ ସେ ନିଜକୁ ମନେ କରିଛନ୍ତି ପରମଙ୍କର ଶିଷ୍ୟ । ଯିଏ ନିଜକୁ ଗୁରୁ ଭାବି ଅହଙ୍କାର ପ୍ରକାଶ କରେ ସିଏ ଗୁରୁ ହେବାକୁ ଯୋଗ୍ୟ ନୁହେଁ । ଯିଏ ନିଜକୁ ଶିଷ୍ୟ ମନେ କରନ୍ତି ଓ ସମସ୍ତଙ୍କୁ ଶ୍ରଦ୍ଧା ଓ ପ୍ରେମ ବିତରଣ କରି ପାରନ୍ତି ସିଏ ହିଁ ହୁଅନ୍ତି ଯଥାର୍ଥ ଗୁରୁ । ଠାକୁର ଅବ୍ୟକ୍ତ ପରମଙ୍କର ଅଂଶ ଓ ଲୀଳା ପାଇଁ ରୂପବନ୍ତ ହୋଇଥିଲେ । କରମଳା ତାଙ୍କର ଲୀଳା କ୍ଷେତ୍ର । ତାଙ୍କର ଚନ୍ଦନଯାତ୍ରା ଓ ଭଉଁରୀ ଉତ୍ସବ ଭକ୍ତମାନଙ୍କ ପ୍ରାଣରେ ଅପୂର୍ବ ଶିହରଣ ସୃଷ୍ଟି କରେ । ଜନୈକ ଭକ୍ତ, ଯିଏ ଭଉଁରୀ ଯାତ୍ରାରେ ରୋଗରେ ପଡ଼ିଯିବା ହେତୁ ଯୋଗ ଦେଇ ପାରିଲେ ନାହିଁ ଓ ଅଭିମାନରେ ଖାଇବା ପିଇବା ଛାଡ଼ି ଦେଲେ । ସେହି ଭକ୍ତ ଗୁରୁଚରଣଙ୍କ ପ୍ରତି ଠାକୁର ଏପରି କୃପା କଲେ ଯେ ତାଙ୍କ ଅନୁପସ୍ଥିତିରେ ଠାକୁର ତାଙ୍କରି ରୂପ ହୋଇ ହାର୍‌ମୋନିୟମ୍ ବଜାଇ ଜନଗଣଙ୍କୁ ମୁଗ୍ଧ କରିଦେଲେ । ଗୁରୁଚରଣ ଆରୋଗ୍ୟ ହୋଇ ଶାନ୍ତିଧାମକୁ ଆସିଲା ପରେ ଭକ୍ତମାନଙ୍କଠାରୁ ଏକଥା ଶୁଣି ବିମୋହିତ ହୋଇଗଲେ ଓ ତାଙ୍କ ନୟନରୁ ଝରିପଡ଼ିଲା କେବଳ ଆନନ୍ଦାଶ୍ରୁ ।

ଆଉ ଗୋଟିଏ ଅନୁଭବକୁ ଲେଖକ ବର୍ଣ୍ଣନା କରିଛନ୍ତି 'ପିଜୁଳି ଚୋର ନୀଳମଣି' ପ୍ରବନ୍ଧରେ । 'ଗାଈ ଖାଇଗଲା ଘର ନକ୍ସା' ଲେଖକଙ୍କ ନିଜସ୍ୱ ଅନୁଭବର ଏକ ରମ୍ୟ ଆଲେଖ୍ୟ । 'ବେତଣ୍ଡା ମଠର ବିତଣ୍ଡା କଥା', 'ଚିଠି: ସେଇପ୍ରଥମ, ସେଇ ଶେଷ' ମଧ୍ୟ ଲେଖକଙ୍କ ଠାକୁରଙ୍କ କୃପା ସମ୍ପର୍କରେ ଅର୍ଜିତ ଅନୁଭବର ଚମତ୍କାର ଚିତ୍ର । 'ଦୁର୍ଗାମାଧବ ସ୍ତବର ମାହାତ୍ମ୍ୟକୁ ସେ ଭକ୍ତ କସ୍ତୁରୀ ଚରଣ ଦାସଙ୍କଦ୍ୱାରା ଅନୁପ୍ରାଣିତ ଦୋଳବାବାଙ୍କ ଅନୁଭବକୁ ଆଧାର କରି ଲେଖିଛନ୍ତି । ଶ୍ରୀକୃଷ୍ଣଙ୍କ ସେବା ବିହୀନେ, ମନ କଥା ସିନା ଜାଣ ବନମାଳୀ', 'ଦୀନଜନ ଗଲେ ଭାସି', 'ବିଶ୍ୱବିଧାତା ହେ ତୁମ୍ଭେ', 'ଆଉ ଜଣେ ବନ୍ଧୁ ମହାନ୍ତିଙ୍କକଥା', 'କେଶବ ଧୃତ ବାମନ ରୂପ', 'ଗୁରୋର୍ବାକ୍ୟଂ ସଦା ସତ୍ୟଂ', 'ଚୈତନ୍ୟ ଚନ୍ଦ୍ର ବୈଦ୍ୟ ଯା'ର' 'ଠକ ଠାକୁର ଠକିଦେଲେ', 'ଅବୁଝା ଅଙ୍କ', 'ଭୋକିଲିଆ ଅଧାରୁ ରହିଲା' ଇତ୍ୟାଦି ନାନା ପ୍ରସଙ୍ଗରେ ଲେଖକ ଠାକୁରଙ୍କ ସମ୍ପର୍କିତ ବିବିଧ ଅନୁଭୂତିକୁ ଯେପରି ସରଳ ସାବଲୀଳ ଭାବରେ ବର୍ଣ୍ଣନା କରିଛନ୍ତି, ବିବିଧ

ପ୍ରସଙ୍ଗରେ ଯେପରି ବିବିଧ ଭକ୍ତଙ୍କର ଠାକୁରଙ୍କର ଅଦୃଶ୍ୟ କୃପା ଲାଭର ବିବରଣୀ ଦେଇଛନ୍ତି ତାହା ବାସ୍ତବିକ ନିର୍ମଳ ଭକ୍ତିଭାବ ଓ ଶୁଦ୍ଧ ବିଶ୍ୱାସର ଗୋଟିଏ ଗୋଟିଏ ରମ୍ୟ ଆଲେଖ୍ୟ । ପ୍ରତ୍ୟେକରେ ଲେଖକ ନିଜେ ଗୋଟିଏ ଚରିତ୍ର ହୋଇଯାଇଛନ୍ତି । ମନେହୁଏ ସେ ଯେପରି ହୋଇ ଯାଇଛନ୍ତି ବିବିଧ ଭକ୍ତଙ୍କ ଭିତରେ ଏକ ସଂଯୋଗକାରୀ ଚରିତ୍ର । ମଝିରେ ମଝିରେ ସେ ଯେପରି ନାଟକୀୟ ସଂଳାପ ଦେଇଛନ୍ତି ତାହା ପାଠକମାନଙ୍କ ଭିତରେ ଉତ୍କଣ୍ଠା ସୃଷ୍ଟି କରେ ।

ମୋର ଆଶା ଓ ବିଶ୍ୱାସ ଏହି ଭକ୍ତି ଭାବସ୍ନିଗ୍ଧ ପୁସ୍ତକ 'ଅନୁଭବକୁ ସତ୍ୟ କହି' ନିଶ୍ଚୟ ପାଠକମାନଙ୍କୁ ଆକର୍ଷଣ କରିବ । ବିଶେଷତଃ ଠାକୁର ଅଭିରାମ ପରମହଂସ – ପରିବାରର ସମସ୍ତ ସଦସ୍ୟ / ସଦସ୍ୟାଙ୍କୁ ଏହା ଯେ ଆନନ୍ଦ ଦେବା ସଙ୍ଗେ ସଙ୍ଗେ ଭକ୍ତି ଓ ସମର୍ପଣ ଭାବରେ ଉଦ୍‌ବୁଦ୍ଧ ହେବାକୁ ପ୍ରେରଣା ଦେବ ମୋର ଦୃଢ଼ ବିଶ୍ୱାସ ରହିଛି ।

ଶ୍ରଦ୍ଧେୟ ପ୍ରତାପବାବୁଙ୍କର ଏହି ଉଦ୍ୟମ ଠାକୁରଙ୍କ କୃପା ଲାଭ କରୁ ଓ ସେ ପରବର୍ତ୍ତୀ ସମୟରେ ଠାକୁରଙ୍କ ବିଷୟରେ ଆଉ କିଛି ଲେଖନ୍ତୁ; ଏହା କାମନା କରୁଛି ।

ବୈଷ୍ଣବ ଚରଣ ସାମଲ
ଅବସରପ୍ରାପ୍ତ ପ୍ରଫେସର,
ବିଶ୍ୱଭାରତୀ, ଶାନ୍ତିନିକେତନ

# ମୁଁ କାହିଁକି ଲେଖିଲି ଏ ପୁସ୍ତକ

୧୯୭୯ ମସିହା ଦୁର୍ଗାପୂଜାରେ ମୁଁ ପ୍ରଥମେ ଶାନ୍ତି ଆନନ୍ଦାଶ୍ରମ, କରମଳାକୁ ଗଲି । ତା' ପୂର୍ବରୁ ଯଦିଓ ୧୯୬୦-୬୧ / ୬୧-୬୨ରେ ଠାକୁରଙ୍କ ବିଦ୍ୟମାନ କାଳରେ ଯାଇଥିଲି ବଡ଼ବାପା ରାଧାଶ୍ୟାମ ପଟ୍ଟନାୟକଙ୍କ ସହିତ... ଆଠ ଦଶ ବର୍ଷ ବୟସରେ, ସେଇଟା ଥିଲା ପିଲାବେଳ । ତେଣୁ ତାକୁ ହିସାବକୁ ନେଉନି । ୧୯୭୯ ମହାନବମୀ ଦିନ ସନ୍ଧ୍ୟାରେ ମୁଁ, ପ୍ରୀତି (ପତ୍ନୀ) ଓ ମୋ ବୋଉ ତିନିହେଁ ଏକାସାଙ୍ଗରେ ଠାକୁରଙ୍କ ମନ୍ତ୍ରୋପଦେଶ ଗ୍ରହଣ କଲୁ ପ୍ରଥମ ଆଚାର୍ଯ୍ୟ ପୂଜ୍ୟ ବୈକୁଣ୍ଠ ବାବାଙ୍କଠାରୁ । ଆଶ୍ରମରେ ମୁଁ କାହାକୁ ଚିହ୍ନି ନ ଥାଏ କି ମୋତେ ମଧ କେହି ଚିହ୍ନି ନ ଥାନ୍ତି । ଶ୍ୟାମାନନ୍ଦ ବାବା ସେତେବେଳେ ଗୁରୁଭଣ୍ଡାର ଦାୟିତ୍ୱରେ ଥାଆନ୍ତି । ସେ ମୋତେ ଡାକି ଅଳ୍ପ କିଛି କିଛି ଠାକୁରଙ୍କ ବହି, ଲକେଟ୍, ପ୍ରତିମୂର୍ତ୍ତି ଇତ୍ୟାଦି ଦେଲେ ବିକ୍ରି କରିବାକୁ । କେତେବେଳେ ମନ୍ଦିର ହଲ୍ ବାରଣ୍ଡା (ପୁରୁଣା ମନ୍ଦିର) ତ କେତେବେଳେ ସ୍ମୃତିମନ୍ଦିର (ମ୍ୟୁଜିୟମ୍) ବାରଣ୍ଡାରେ ତଳେ ବସି ମୁଁ ସେସବୁକୁ ବିକ୍ରି କରେ । ସନ୍ଧ୍ୟାରେ ହିସାବପତ୍ର କରି ବିକ୍ରୟଲବ୍ଧ ଅର୍ଥ ଓ ବାକି ଜିନିଷ ମୁଁ ବାବାଙ୍କୁ ବୁଝାଇଦିଏ । ଯେଉଁ ଦୁଇ ତିନି ଦିନ ଆମେ ସେତେବେଳେ ରହିଲୁ, ଏହାହିଁ ଥିଲା ମୋର ସେବା । ଠାକୁରଙ୍କ କୃପାରୁ ଆରମ୍ଭରୁ ମିଳିଥିବା ମୋର ଏହି ସେବା ଆଜି ପର୍ଯ୍ୟନ୍ତ ବଳବତ୍ତର ରହିଛି ଓ ଜନ୍ମୋତ୍ସବ ସମୟରେ ପ୍ରତିବର୍ଷ ମୁଁ ଏହି ସେବା କରିଆସୁଛି, ଯଦିଓ ଏହି ଦୀର୍ଘଦିନ ଭିତରେ ଗୁରୁଭଣ୍ଡାର ଦାୟିତ୍ୱ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ବାବାଙ୍କ ହାତକୁ ଯାଇଛି । ବିଭିନ୍ନ ସମୟରେ ମୋ ସହିତ ମଧ ସେବାରେ ଯୋଗ ଦେଇଛନ୍ତି ଅନେକ ପୁରୁଣା ଓ ନୂଆ ଭକ୍ତ । ଉତ୍ସବ ସମୟରେ ଜଣେ ମାତ୍ର ସେବାକାରୀଙ୍କୁ ନେଇ ଆରମ୍ଭ ହୋଇଥିବା ସେ ଦିନର ଗୁରୁଭଣ୍ଡାରର ଅସ୍ଥାୟୀ ବିକ୍ରୟ କେନ୍ଦ୍ର (ଷ୍ଟଲ)ରେ ଏବେ ସେବା କରୁଛନ୍ତି ପ୍ରାୟ କୋଡ଼ିଏ ପଚିଶି ଜଣ ଭକ୍ତ ।

ଏହି ସେବା ଅବସରରେ ମୁଁ ପ୍ରଥମେ ପ୍ରଥମେ ଲକ୍ଷ୍ୟ କଲି ଭକ୍ତ ଓ ଶ୍ରଦ୍ଧାଳୁମାନେ ଶ୍ରୀ ଶ୍ରୀ ଠାକୁରଙ୍କର ଜୀବନୀ ଖୋଜୁଛନ୍ତି । କିନ୍ତୁ ସେମାନଙ୍କୁ ଦେବା ପାଇଁ ଭଣ୍ଡାରରେ ସେଭଳି କିଛି ପୁସ୍ତକ ନାହିଁ । ଯାହା ଅଛି ତାହା ଏକ ଅତି ସଂକ୍ଷିପ୍ତ ଜୀବନୀ (ଅଧ୍ୟାପକ ଶ୍ରୀ ସତ୍ୟନାରାୟଣ ମହାନ୍ତିଙ୍କଦ୍ୱାରା ଇଂରାଜୀରେ ଲିଖିତ) । ତା'ଛଡ଼ା ଆଉ ଯାହା ଅଛି, ତାହା ବିକ୍ଷିପ୍ତ ଭାବରେ ଏଠି ସେଠି ପଡ଼ି ରହିଥିବା କିଛି ତଥ୍ୟ ଓ କିଛି ଲୀଳା କାହାଣୀ, ଯାହାକୁ ଏକତ୍ରିତ କରି ଏକ ପୂର୍ଣ୍ଣାଙ୍ଗ ଜୀବନୀ ଲେଖାଯାଇପାରିବ । ମୁଁ ତ ଲେଖକ ନୁହେଁ, ତଥାପି କାହିଁକି କେଜାଣି ମୋ ଭିତରେ ବାରମ୍ବାର ପ୍ରେରଣା ଜାଗିଲା ସେ ବାବଦରେ କିଛି କରିବା ପାଇଁ । ଠାକୁରଙ୍କ ସମ୍ପର୍କରେ ପ୍ରକାଶିତ ବିଭିନ୍ନ ବହି, ଆଶ୍ରମରୁ ପ୍ରକାଶିତ ପୁରୁଣା 'ଶରଣଦ' ପତ୍ରିକା, ବିଭିନ୍ନ ସ୍ଥାନରେ ହୀରକ ଜୟନ୍ତୀ ପାଳନ ଅବସରରେ ପ୍ରକାଶ ପାଇଥିବା ସ୍ମରଣିକା ଇତ୍ୟାଦି ସଂଗ୍ରହ କରିବାରେ ମୁଁ ଲାଗିପଡ଼ିଲି । ସେହି କ୍ରମରେ ଠାକୁରଙ୍କ ପୁରାତନ ଭକ୍ତ ଓ ଲୀଳା ସଙ୍ଗୀ ସନ୍ନ୍ୟାସୀମାନଙ୍କ ମୁଖରୁ ଶୁଣିଥିବା ଲୀଳା କାହାଣୀମାନ ଟିପି ରଖିବା କାମ ମଧ୍ୟ ଧୀରେ ଧୀରେ ଆରମ୍ଭ ହେଲା । ସେତେବେଳେ ଅନେକ ଅଙ୍ଗଦେହୀ ଭକ୍ତ, ପୁରାତନ ସନ୍ନ୍ୟାସୀ ଓ ସନ୍ନ୍ୟାସିନୀ ସ୍ଥୂଳ ଦେହରେ ଥିଲେ । ଯେଉଁମାନଙ୍କ ଦର୍ଶନ କରିବାର ସୌଭାଗ୍ୟ ଏ ଅଧମକୁ ମିଳିଥିଲା । ୧୯୮୨ ମସିହାରେ ବଣେଇର ତେଣ୍ଡରାକୁ ବଦଳି ହେଲା ପରେ ଜୀବନୀ ପୁସ୍ତକ ରଚନା କରିବାର ପରିକଳ୍ପନା କ୍ରମଶଃ ଦାନା ବାନ୍ଧିଲା ମୋ ଭିତରେ । ପ୍ରସ୍ତୁତ ହେଲା ଏକ ସ୍ଥୂଳଚିତ୍ର (ସ୍କେଚ୍)... ପନ୍ଦର ଅଧ୍ୟାୟ ବିଶିଷ୍ଟ ଏକ ପୂର୍ଣ୍ଣାଙ୍ଗ ଜୀବନୀର । ସେତେବେଳେ ବଞ୍ଚିଥିଲେ ପଣ୍ଡିତ ନୀଳକଣ୍ଠଙ୍କ ସହିତ 'କଳି ଭାଗବତ' ମକଦ୍ଦମାର ବିଚାର ଶୁଣିବାକୁ ଯାଇଥିବା କଂଗ୍ରେସର ତତ୍କାଳୀନ ତୁଙ୍ଗନେତା ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ । ଆହୁରି ମଧ୍ୟ ବଞ୍ଚିଥିଲେ 'ସମାଜ'ର ପୂର୍ବତନ ସମ୍ପାଦକ ଡ. ରାଧାନାଥ ରଥ । ଯୋଜନା ଥିଲା ସେମାନଙ୍କୁ ଭେଟିବାର... ଯୋଜନା ଥିଲା ଠାକୁରେ ପଦବ୍ରଜରେ ଭ୍ରମଣ କରିଥିବା ଗାଁମାନଙ୍କୁ ଯିବା ପାଇଁ । କିଣା ହୋଇଥିଲା ଏକ ଟେପ୍ ରେକର୍ଡ଼ର ସେହି ଉଦ୍ଦେଶ୍ୟରେ । ମାତ୍ର ସୁନ୍ଦରଗଡ଼ ଭଳି ଏକ ଉପାନ୍ତ ଅଞ୍ଚଳରେ ରହିବା, ସରକାରୀ ଚାକିରୀର ଗୁରୁଦାୟିତ୍ୱ ଏବଂ ସର୍ବୋପରି ଆର୍ଥିକ ସମସ୍ୟା କାରଣରୁ ସେ କାର୍ଯ୍ୟରେ ଅଗ୍ରଗତି ହୋଇପାରିଲା ନାହିଁ । ଚାଲିଗଲେ ଜଣକ ପରେ ଜଣେ । କଳ୍ପନାର କଢ଼ି ପ୍ରସ୍ଫୁଟିତ ହୋଇପାରିଲା ନାହିଁ... ଦେଖିପାରିଲା ନାହିଁ ସୂର୍ଯ୍ୟାଲୋକ । ଇତି ମଧ୍ୟରେ ଥରେ ଗାଁରେ ବଡ଼ବାପାଙ୍କୁ ଦେଖାଇଥିଲି ମୋର ସେହି ଅସମ୍ପୂର୍ଣ୍ଣ ପାଣ୍ଡୁଲିପି । ତା' ପୂର୍ବରୁ ସେ ଜୀବନୀ ସମ୍ପର୍କରେ ଚିନ୍ତା କରିଥିଲେ କି ନାହିଁ ଜଣାନାହିଁ; କିନ୍ତୁ ତା'ପରେ ସେ ପ୍ରକାଶ କଲେ ଏକ ଜୀବନୀ ଏବଂ ସେ ଜୀବନୀ ଦେଖିଲା ପରେ ମୋର ସେଥିପ୍ରତି ଆଉ ଆଗ୍ରହ ରହିଲା ନାହିଁ ।

ତେବେ ଯାହାହେଉ ଠାକୁରଙ୍କ କଥା ଶୁଣିବା ଓ ଲୀଳା କାହାଣୀ ସଂଗ୍ରହ କରିବା ପାଇଁ ସେତେବେଳେ ଆରମ୍ଭ ହୋଇଥିବା ନିଶା ମୋତେ ଏବେ ବି ଛାଡ଼ି ନାହିଁ ଏବଂ ସେହି ନିଶାର ଏକ ପ୍ରତିଫଳନ ହେଉଛି ଏହି ପୁସ୍ତକ 'ଅନୁଭବକୁ ସତ୍ୟ କହି' ।

ଶ୍ରୀ ଶ୍ରୀ ଠାକୁରେ ତାଙ୍କ ସାଧନ ଧାରା ଭିତରେ ଅନୁଭବକୁ ସବୁଠାରୁ ଅଧିକ ଗୁରୁତ୍ୱ ଦେଇଛନ୍ତି । ଆମେ ଶୁଣିଥିବା ବା ପଢ଼ିଥିବା କଥା ହୁଏତ ମିଛ ହୋଇଯାଇପାରେ; କିନ୍ତୁ ନିଜେ ଅନୁଭବ କରିଥିବା କଥା କେବେ ହେଲେ ମିଥ୍ୟା ନୁହେଁ । ସାଧାରଣ କ୍ଷେତ୍ରରେ ଯଦି ଏହି ନିୟମ ପ୍ରଯୁଜ୍ୟ, ତେବେ ଅଧ୍ୟାତ୍ମ ରାଜ୍ୟରେ ? ଆଧ୍ୟାତ୍ମିକ କ୍ଷେତ୍ରରେ ଉନ୍ନତି ପାଇଁ ଶିଷ୍ୟ, ସାଧକ ଓ ଭକ୍ତର ମୂଳ ପୁଞ୍ଜି ହେଉଛି ଅନୁଭବ । ମଣିଷ ଜୀବନରେ ଯଦିଓ ସ୍ନାନ, ଶୌଚ, ଦାନ, ବ୍ରତ, ତ୍ୟାଗ, ଉପବାସ, ତୀର୍ଥାଟନ, ପୂଜାପାଠ, ଭଜନ କୀର୍ତ୍ତନ, ଶାସ୍ତ୍ରପାଠ, ପ୍ରବଚନ, ହରିକଥା ଚର୍ଚ୍ଚା ପ୍ରଭୃତିର ଅନେକ ଉପଯୋଗିତା ରହିଛି, ତଥାପି ଏସବୁ ବହିରଙ୍ଗ ସାଧନର ବହୁ ଉର୍ଦ୍ଧ୍ୱରେ ହେଉଛି ଅନ୍ତରଙ୍ଗ ସାଧନ... ନିଜ ଭିତରେ ଓ ବାହାରେ ପ୍ରତି ମୁହୂର୍ତ୍ତରେ ତାଙ୍କୁ ଉପଲବ୍ଧି କରିବାର ସାଧନ... ନିଜ ଭିତରେ ନିଜେ ହଜିଯିବାର ସାଧନ... ସହଜାନନ୍ଦରେ ମଗ୍ନ ହୋଇ ଅତି ସହଜ ଭାବରେ ମଜ୍ଜିଯିବାର ସାଧନ । ଯେଉଁଥିରେ ସ୍ନାନଶୌଚାଦି ବାହ୍ୟାଚାରର ଆଉ ଏତେଟା ଆବଶ୍ୟକତା ପଡ଼େନା । ଆଉ ଏହି ସାଧନ ଆରମ୍ଭ ହୁଏ ନିଜସ୍ୱ ଅନୁଭବରୁ । ତେଣୁ ଠାକୁର ଲେଖିଲେ– 'କହିଲେ କିସ ଅଛି ବାବୁ, ଅନୁଭବରେ ଦେଖ ସବୁ ।' ××× 'କହଇ ଅଭିରାମ ବାଇ, ଅନୁଭବରେ ଦେଖ ଯାଇ ।' ××× 'କହଇ ଅଭିରାମ ବାଇ, ଅନୁଭବକୁ ସତ୍ୟ କହି ।' ସତ୍ୟ ଅନୁଭବ ଉପରେ ପ୍ରତିଷ୍ଠିତ । ଏ ପୁସ୍ତକରେ ସନ୍ନିବେଶିତ ଲୀଳା କାହାଣୀଗୁଡ଼ିକ ଯେହେତୁ ସତ୍ୟ ଘଟଣା ଉପରେ ପର୍ଯ୍ୟବସିତ, ତେଣୁ ପୁସ୍ତକର ନାମ ରଖାଯାଇଛି, 'ଅନୁଭବକୁ ସତ୍ୟ କହି ।'

ଅନୁଭୂତି, ଭକ୍ତର ଏକାନ୍ତ ନିଜସ୍ୱ । ଅନୁଭୂତି ଥରେ ପ୍ରକାଶ କରିଦେଲେ ଆଉ ଅନୁଭୂତି ହୁଏନା – ଠାକୁରଙ୍କର ଏହି ନିଷେଧାଜ୍ଞା ଅନେକ ଭକ୍ତଙ୍କୁ ବାରଣ କରେ ନିଜର ଅନୁଭୂତି ପ୍ରକାଶ କରିବାକୁ । ତା' ସତ୍ତ୍ୱେ ବୋଧହୁଏ ନିଜର ଅନୁଭୂତିକୁ ପୁସ୍ତକ ଆକାରରେ ପ୍ରକାଶ କରିବାର ପ୍ରଥମ ପ୍ରୟାସ କରିଛନ୍ତି ପୂଜ୍ୟ କାହ୍ନୁବାବା, ଯାହାର ନାମ 'ଆଲୋକ ମଣି' ଏବଂ ସେ ସମୟରେ ଏହି ପୁସ୍ତକଦ୍ୱାରା ଅନୁପ୍ରାଣିତ ହୋଇ ବହୁ ଭକ୍ତ ଠାକୁରଙ୍କ ସାକ୍ଷାତ ଦର୍ଶନ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିବା ସଙ୍ଗେ ସଙ୍ଗେ ତାଙ୍କର ଚରଣାଶ୍ରିତ ହୋଇଛନ୍ତି । ପୂଜ୍ୟ ରବିବାବା ଯେଉଁ ଲୀଳା ଚରିତ ରଚନା କରିଛନ୍ତି ଏବଂ ଯାହା ତିନୋଟି ଭାଗରେ ପ୍ରକାଶ ପାଇଛି, ତାହା ତାଙ୍କର ଏକ ଅତ୍ୟନ୍ତ ସଫଳ ପ୍ରୟାସ । କିନ୍ତୁ ସେଥିରେ ତାଙ୍କର ନିଜସ୍ୱ ଅନୁଭୂତି କମ୍ ଓ ସଂଗୃହୀତ ଲୀଳା କାହାଣୀ ବେଶି ଥିଲା ଭଳି ମନେହୁଏ । ଭକ୍ତମାନଙ୍କର ଅନୁଭୂତିକୁ ନେଇ ମୋର ବଡ଼ବାପା

ରାଧାଶ୍ୟାମ ପଟ୍ଟନାୟକ ରଚନା କରିଥିବା ପୁସ୍ତକ 'ଲୀଳାନୁଭୂତି' ଏକ ବହୁଳ ପ୍ରସାରିତ ପୁସ୍ତକ ଏବଂ ଏବେ ଏହା ଶ୍ରୀଗୁରୁ ଭଣ୍ଡାରରେ ଉପଲବ୍ଧ । ଠାକୁରଙ୍କର ପ୍ରିୟ ଭକ୍ତ ନୀଳକଣ୍ଠ ପଟ୍ଟନାୟକ, ବ୍ରହ୍ମାନନ୍ଦ ପଣ୍ଡା, ଭାଗବତ ସାହୁ ଓ ପ୍ରହ୍ଲାଦ କର ମଧ୍ୟ ଲେଖିଛନ୍ତି ତାଙ୍କର ଅନୁଭୂତିମୂଳକ ପୁସ୍ତକ ଯଥାକ୍ରମେ – 'ଯୋଗୀର ଆଶୀର୍ବାଦ', 'ରସୋ ବୈସଃ', 'ସ୍ମୃତି ରତ୍ନହାର' ଓ 'ତାଙ୍କରି କଥା' । ଭକ୍ତ ଶ୍ରୀ ନାରାୟଣ ଦାସଙ୍କର ପୁସ୍ତକ 'କିଛି ସ୍ମୃତି କିଛି ଅନୁଭୂତି', ଠାକୁରଙ୍କ ଲୀଳା କାହାଣୀ ଏବଂ ତାଙ୍କ ନିଜସ୍ୱ ଅନୁଭୂତିର ଏକ ଯୁଗଳବନ୍ଦୀ । ତା'ଛଡ଼ା ଠାକୁରଙ୍କର ଅନ୍ତରଙ୍ଗ ଭକ୍ତ ନୟନକିଶୋର ମହାନ୍ତି ଏବେ ତାଙ୍କର ଅନୁଭୂତିକୁ ନେଇ ରଚନା କରୁଛନ୍ତି ଏକ ପୁସ୍ତକ, ଯାହା ପ୍ରକାଶ ପାଇଲେ ଆମମାନଙ୍କ ପାଇଁ ତଥା ଭବିଷ୍ୟତର ଭକ୍ତ ସମାଜ ପାଇଁ ଏକ ଅମୂଲ୍ୟ ସମ୍ପଦ ଭାବେ ବିବେଚିତ ହେବ ବୋଲି ଆଶା କରାଯାଏ । ତେବେ ଯିଏ ଯେତେ ଯାହା କଲେ ବି ପ୍ରଭୁଙ୍କ ଲୀଳାର ଆଦି ନାହିଁ କି ଅନ୍ତ ନାହିଁ । ପ୍ରଭୁଙ୍କ ଲୀଳା ଶ୍ରବଣ ବା ପଠନରେ ଯଦି ଆମର ସଂଶୟାତ୍ମକ ମନ ନିଶ୍ଚୟାତ୍ମକ ହୋଇପାରିଲା ଓ ଆମର ବିଶ୍ୱାସ ଆହୁରି ଦୃଢ଼ ହୋଇପାରିଲା, ତେବେ କ୍ଷତି କ'ଣ ? କିନ୍ତୁ ଏତିକି ଅନ୍ତତଃ ଆମମାନଙ୍କ ସ୍ମରଣରେ ରହିବା ଉଚିତ ଯେ ଏହା ଯେପରି ଆମ ଆତ୍ମପ୍ରଚାରର ମାଧ୍ୟମ ନ ହୁଏ ବା ଆମ ଅଧ୍ୟାତ୍ମ ଜୀବନର କଣ୍ଟା ନ ହୁଏ ।

ବଡ଼ବାପାଙ୍କ ପ୍ରେରଣାରେ ଜନ୍ମ ନେଇଥିଲା ଠାକୁରଙ୍କ ସମ୍ପର୍କରେ ମୋର ପ୍ରଥମ ଗଦ୍ୟଲେଖା "ଗୁରୁକୃପା ହିଁ କେବଳ ଭିକ୍ଷା ଏହି" ଏବଂ ତାହା ପ୍ରକାଶ ପାଇଥିଲା କଟକରୁ ପ୍ରକାଶିତ ପତ୍ରିକା 'ଅଭୟଦ'ରେ । ତା' ପରବର୍ତ୍ତୀ ଲେଖାଗୁଡ଼ିକ 'ଖଣ୍ଡଗିରି ଲୀଳା', 'ବିନୋରୀ' ଓ ଆଶ୍ରମରୁ ପ୍ରକାଶିତ 'ବ୍ରହ୍ମ ଝଲକ'ରେ ପ୍ରକାଶିତ ହୋଇ ପାଠକୀୟ ଆଦୃତି ଲାଭ କରିଛି । ଏହି ପୁସ୍ତକ ପ୍ରକାଶନ ଅବସରରେ ମୁଁ ମୋର ସେହି ପ୍ରଥମ ପ୍ରେରଣାଦାତା ବଡ଼ବାପାଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି ।

ଯେଉଁ ଭକ୍ତଗଣ ଅକୁଣ୍ଠିତ ଚିତ୍ତରେ ତାଙ୍କର ଅନୁଭୂତିଗୁଡ଼ିକୁ ଏ ଦୀନହୀନ ଅକିଞ୍ଚନକୁ ଶୁଣାଇ କୃତାର୍ଥ କରିଛନ୍ତି ଏବଂ ଯେଉଁ ଭାଇଭଉଣୀମାନେ ଲେଖାଗୁଡ଼ିକୁ ପତ୍ରିକାରୁ ପଢ଼ି ତାଙ୍କର ସୁଚିନ୍ତିତ ମତାମତ ଦେବା ସଙ୍ଗେ ସଙ୍ଗେ ଏଗୁଡ଼ିକୁ ପୁସ୍ତକାକାରରେ ପ୍ରକାଶ କରିବାକୁ ଉତ୍ସାହିତ କରିଛନ୍ତି, ସେ ସମସ୍ତଙ୍କୁ ମୁଁ ମୋର କୃତଜ୍ଞତା ଜଣାଉଛି । ଆହୁରି ମଧ୍ୟ କୃତଜ୍ଞତା ଜଣାଉଛି ମୋର ଧର୍ମପତ୍ନୀଙ୍କୁ, ଯିଏ ହେଉଛନ୍ତି ଏହି ଲେଖାଗୁଡ଼ିକର ପ୍ରଥମ ଶ୍ରୋତା ଓ ଯାହାଙ୍କ ସହଯୋଗ ବିନା ଏ ପୁସ୍ତକ ପ୍ରକାଶ କରିବା ଆଦୌ ସମ୍ଭବ ହୋଇ ନ ଥାନ୍ତା ।

ମୋର ଶିକ୍ଷକ, ବିଶିଷ୍ଟ ଗବେଷକ ତଥା ବିଶ୍ୱଭାରତୀ, ଶାନ୍ତି ନିକେତନର ଅବସରପ୍ରାପ୍ତ ପ୍ରଫେସର ଡ. ବୈଷ୍ଣବ ଚରଣ ସାମଲ ଅତ୍ୟନ୍ତ ଶ୍ରଦ୍ଧାଶୀଳ ଭାବେ ତାଙ୍କର

ବହୁମୂଲ୍ୟ ସମୟ ଦେଇ ମୋର ପାଣ୍ଡୁଲିପିଟି ଆମୂଳଚୂଳ ପାଠ କରି ପୁସ୍ତକର ମୁଖବନ୍ଧ ଲେଖିଥିବାରୁ, ମୁଁ ତାଙ୍କୁ ମୋ ଅନ୍ତରର ଗଭୀରତମ ପ୍ରଦେଶରୁ କୃତଜ୍ଞତା ଜଣାଉଛି ।

ଶେଷରେ ବିଜୟିନୀ ପବ୍ଲିକେଶନ୍ସ ଶଙ୍କରପୁର, କଟକର ପ୍ରୋପ୍ରାଇଟର ତଥା 'ଜନସୁଧା'ର ସମ୍ପାଦକ ଶ୍ରୀ ଦିଲ୍ଲୀପ କୁମାର ବେଉରା ସହୃଦୟତାର ସହିତ ପୁସ୍ତକଟିର ମୁଦ୍ରଣ ଦାୟିତ୍ୱ ବହନ କରିଥିବାରୁ, ତାଙ୍କ ପ୍ରତି ମୋର ହୃଦୟର କୃତଜ୍ଞତା ଜ୍ଞାପନ କରୁଛି ।

ଶ୍ରୀ ଶ୍ରୀ ଠାକୁରଙ୍କର ଭକ୍ତ ତଥା ପାଠକବୃନ୍ଦ ନିଜସ୍ୱ ମହନୀୟ ଗୁଣରେ ତ୍ରୁଟି ମାର୍ଜନାପୂର୍ବକ ପୁସ୍ତକଟିକୁ ଗ୍ରହଣ କଲେ, ଶ୍ରମ ସାର୍ଥକ ହେଲା ବୋଲି ମନେ କରିବି ।

ବିନୀତ

ଲେଖକ

# ସୂଚୀ





# ଗୁରୁକୃପା ହିଁ, କେବଳ ଭିକ୍ଷା ଏହି

ଗୁରୁଙ୍କ କୃପାରୁ ଗୁରୁ ମିଳନ୍ତି । ନିରାକାର ନିର୍ଗୁଣ ବ୍ରହ୍ମ ଯେ କି ଚରାଚର ବିଶ୍ୱବ୍ରହ୍ମାଣ୍ଡରେ ସର୍ବତ୍ର ସମଭାବରେ ବିଦ୍ୟମାନ, ସେ ବେଳେବେଳେ କରୁଣାଘନ ଗୁରୁ ରୂପରେ ଦର୍ଶନ ଦିଅନ୍ତି ଶିଷ୍ୟକୁ । ଅରୂପରୁ ରୂପକୁ ଆସନ୍ତି ଖେଳିବା ପାଇଁ । ଶିଷ୍ୟର ସନ୍ତାପ ହରଣ କରିବା ପାଇଁ ।

ଠାକୁର ଲେଖିଛନ୍ତି–

ନିରାକାର ନିରିଗୁଣ ଗୁରୁ ମୋର
ଅଖଣ୍ଡରେ ପୂରିଛନ୍ତି ଚରାଚର
ଶିଷ୍ୟ ବତ୍ସଳ ହୁଅନ୍ତି ଦୟାବହି ।
ଗୁରୁକୃପା ହିଁ କେବଳ....... ।

ଗୁରୁକୃପାଠାରୁ ବଳି ବଡ଼ ଜିନିଷ ଜଗତରେ ଆଉ କିଛି ନାହିଁ । ସେଇ କୃପା କଣିକା ଯେ କାହା ଭାଗ୍ୟରେ କେତେବେଳେ ଅଯାଚିତ ଭାବରେ ଝରିପଡ଼େ ତାହା କେହି କହିପାରିବ ନାହିଁ । କେବଳ ଅନୁଭବୀ ହିଁ ନିଜ ଅନୁଭୂତିକୁ ସମ୍ବଳ କରି କିଛିଟା ବୟାନ କରେ । ଉଭୟ ଶ୍ରୋତା ଓ ବକ୍ତା ମୁହୂର୍ତ୍ତକ ପାଇଁ ସେଇ ଲୀଳାମୟଙ୍କର ଲୀଳା କାହାଣୀ ଭିତରେ ନିଜସ୍ୱ ସତ୍ତା ହରାଇ ବସନ୍ତି । ଭଗବତ୍ ପ୍ରେମ ପ୍ଲାବନରେ ଆନନ୍ଦାଶ୍ରୁ ଝରାଇ ପରମ ଶାନ୍ତି ଲାଭ କରନ୍ତି ।

ଠାକୁରଙ୍କର ସେଇ ଅହେତୁକୀ କୃପା କିଭଳି ଭାବରେ ଏଇ ଦୀନହୀନ ଅକିଞ୍ଚନ ଜୀବନରେ ଝରି ପଡ଼ିଥିଲା, ସେ ବିଷୟରେ କିଛି ଲେଖୁଛି ।

ସେତେବେଳେ ଆମ ଗାଁରେ ଠାକୁରଙ୍କର ଭକ୍ତ କହିଲେ ମାତ୍ର ଦୁଇଟି ପରିବାର । ଗୋଟିଏ ମୋ'ର ବଡ଼ବାପା ଶ୍ରୀ ରାଧାଶ୍ୟାମ ପଟ୍ଟନାୟକଙ୍କର ଓ ଅନ୍ୟଟି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅବସରପ୍ରାପ୍ତ କୁଳପତି ଡକ୍ଟର ହରିହର ପଟ୍ଟନାୟକଙ୍କର । ଦୁହେଁ ଯାକ ପ୍ରାୟ ବର୍ଷସାରା ବାହାରେ ରହନ୍ତି । ଛୁଟିମାନଙ୍କରେ କେବେ କେମିତି ଗାଁକୁ ଆସନ୍ତି, କିନ୍ତୁ ହରିଭାଇଙ୍କ ମା' ସବୁବେଳେ ଗାଁରେ ରହନ୍ତି । ବଡ଼ ସ୍ନେହୀ । ଗୁରୁ-ବୈଷ୍ଣବଙ୍କଠାରେ

ଅଚଳା ଭକ୍ତି । ଆଶ୍ରମରୁ ବାବାମାନେ ବା ମା'ମାନେ ଆସିଲେ ତାଙ୍କରି ଘରେ ରହନ୍ତି । ଘରକୁ ଘର ଲାଗିଛି । ତା'ଛଡ଼ା ତାଙ୍କ କୋଠାଘର ବଡ଼ ବାରଣ୍ଡା ଓ ଛାତ ଉପର ହେଉଛି ଆମର ଖେଳିବା ସ୍ଥାନ । ତେଣୁ କେହି ବାବା ଆସିବା ସଙ୍ଗେ ସଙ୍ଗେ ଆମକୁ ଖବର ମିଳିଯାଏ । ସନ୍ଧ୍ୟାରେ ସେଇ ବଡ଼ ବାରଣ୍ଡାରେ ଖଞ୍ଜଣି ଭଜନ ହୁଏ । ଆମେ ଛୋଟ ପିଲାମାନେ ବେଶ୍ ଆନନ୍ଦରେ ବସି ଶୁଣୁ । ସେତେବେଳେ ଠାକୁରଙ୍କୁ ସମସ୍ତେ ଅଭିରାମ ବାବା ବୋଲି କହନ୍ତି ।

ଗାଁ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ମୋର ପାଠପଢ଼ା ସରିଲା । ତା'ପରେ ଗାଁ ମାଇନର ସ୍କୁଲରେ ପାଠ ପଢ଼ିବା କଥା । କିନ୍ତୁ ଚଗଲାମି ଯୋଗୁଁ ମୁଁ ପାଠପଢ଼ାରେ ମନ ଦେଉ ନ ଥିବାରୁ ବାପା ବୋଉ ମୋତେ ବଡ଼ବାପାଙ୍କ ସାଥିରେ ମୟୂରଭଞ୍ଜ ପଠାଇ ଦେଲେ । ଚାନ୍ଦୁଆ ଆଶ୍ରମ ସ୍କୁଲରେ ବଡ଼ବାପା ପ୍ରଧାନ ଶିକ୍ଷକ ଥାଆନ୍ତି । ଆଶ୍ରମ ସ୍କୁଲରେ ସୁନ୍ଦର ଫୁଲବଗିଚା ଥାଏ । ପ୍ରତିଦିନ ସକାଳେ ଆମେ ଭାଇ ଭଉଣୀ ମିଶି ଫୁଲ ତୋଳିବାକୁ ଯାଉ । ସନ୍ଧ୍ୟାରେ ସମସ୍ତେ ବସି ଠାକୁରଙ୍କୁ ପ୍ରାର୍ଥନା କରୁ । "ଗୁରୁକୃପା ହିଁ କେବଳ" ଭଜନଟି ମୁଁ ପ୍ରଥମେ ସେଇଠି ଶିଖିଥିଲି ।

ଆମେ ଭାଇଭଉଣୀ ଏକାଠି ବସି ଗପସପ ହେଲାବେଳେ ଭଉଣୀମାନେ ଠାକୁରଙ୍କ କଥା, ଆଶ୍ରମ କଥା ସବୁ କହନ୍ତି । ଠାକୁର ଏମିତି ଚାଲିଲେ, କଥା କହିଲେ, ଚିଠି ଲେଖିଲେ– ଇତ୍ୟାଦି ଶୁଣି ମୁଁ ଆଶ୍ଚର୍ଯ୍ୟ ହୋଇଯାଏ । ଠାକୁର କହିଲେ ମୁଁ ବୁଝେ ଘରେ ବା ଦେଉଳରେ ପୂଜା ପାଉଥିବା ଦେବ ବିଗ୍ରହ ବା ଫଟୋ । ଯେ କି କଥା କହନ୍ତି ନାହିଁ, ଚାଲନ୍ତି ନାହିଁ ବା ଆମ ପରି ଅନ୍ୟ କୌଣସି କାମ କରନ୍ତି ନାହିଁ । ସେ ଚଳତ୍ ଶକ୍ତିହୀନ । କାଷ୍ଠ ବା ପାଷାଣ ନିର୍ମିତ । ତେଣୁ ମୁଁ ବିସ୍ମୟର ସହିତ ପ୍ରଶ୍ନ କରେ– ଏ କେମିତି ଠାକୁର ? ଚାଲୁଛନ୍ତି, ବୁଲୁଛନ୍ତି ? ସେମାନେ କହନ୍ତି– ରହ, ଆମ ସାଙ୍ଗରେ କେତେବେଳେ ଗଲେ ଦେଖିବୁ ଯେ ! ମୋର ଆଗ୍ରହ ଶତଗୁଣ ବଢ଼ିଯାଏ । ମୁଁ ଭାବେ, ସତରେ କ'ଣ ମୁଁ ଠାକୁରଙ୍କ ଦର୍ଶନ ଲାଭ କରିବି ?

ଚାନ୍ଦୁଆରେ ମୋର ରହଣିକାଳ ମାତ୍ର ଦୁଇବର୍ଷ । ତା'ରି ଭିତରେ ସାଧୁସଙ୍ଗର କିଛିଟା ସୁଯୋଗ ମିଳେ । କାହ୍ନୁବାବା ଆସି କିଛିଦିନ ରହିଥିଲେ । ତା'ଛଡ଼ା ବିଚିତ୍ର ବାବା, ମହାଦେବ ବାବା, ତ୍ରୈଲୋକ୍ୟ ବାବା ପ୍ରଭୃତି ମଧ୍ୟ ଆସି ଅନୁଗ୍ରହିତ କରିଥିଲେ ଠାକୁରଙ୍କ କଥା ଓ ଭଜନ ଶୁଣାଇ ।

ଏଥର ଆସିଲା ମହାମିଳନର ଅମୃତଲଗ୍ନ । ଠାକୁରଙ୍କ ଜନ୍ମୋତ୍ସବକୁ ଆଶ୍ରମ ଆସିବାର ପ୍ରସ୍ତୁତି ଚାଲିଲା । ଠାକୁରଙ୍କ ଦର୍ଶନ ଲାଭର ଉତ୍କଣ୍ଠା ମୋର ବେଳୁ ବେଳ ବଢ଼ି ଚାଲିଥାଏ ।

ପୁରୀରେ ପହଞ୍ଚିଲା ପରେ ଆମର ସନ୍ତୋଷ ବାବୁଙ୍କ ସହିତ ଭେଟ ହେଲା । ଠାକୁର ଥିଲେ ଖୁବ୍ ଖେଳଣାପ୍ରିୟ । ବଡ଼ବାପା ଠାକୁରଙ୍କ ପାଇଁ ଗୋଟିଏ ଚାବିଦିଆ ଖେଳଣା କିଣିଲେ । ସନ୍ତୋଷ ବାବୁଙ୍କ ଜିପ୍‌ରେ ଆମେ ସମସ୍ତେ ବସି ଆଶ୍ରମ ଚାଲିଲୁ ।

ମେଲଣ ପଡ଼ିଆ ବାଟେ ଆମ ଜିପ୍ ଆଶ୍ରମ ଭିତରକୁ ପଶିଲା । ରହିବାକୁ ମିଳିଲା ଯଜ୍ଞଶାଳାକୁ ଲାଗି ରହିଥିବା ଟିଣଘରର ଗୋଟିଏ ବଖରା, ଯେଉଁଠାରେ କି ଏବେ ଦୋଳଗୋବିନ୍ଦ ବାବା ରହୁଛନ୍ତି । ଆମେ ସେ ଘରକୁ ପଶୁ ପଶୁ ଆଶ୍ରମର ଭାଲୁ ଭଳି ଧଳା ଓ କଳା ରଙ୍ଗର ଦୁଇଟା ବଡ଼ କୁକୁର ପଶି ଆସି ପାଖରେ ଲସର ପସର ହେଉଥାନ୍ତି । ଏଭଳି କୁକୁର ମୁଁ ତା' ପୂର୍ବରୁ ଦେଖି ନ ଥାଏ । ତେଣୁ ଟିକିଏ ଡରିଗଲି । ସେତେବେଳକୁ ଭକ୍ତ ଗହଳି ଲାଗିଗଲାଣି । ମନ ମୋର ଆଉ କେଉଁଠି ନ ଥାଏ । କେବଳ ଗୋଟିଏ ଇଚ୍ଛା– କେମିତି ସେ ଚାଲୁଥିବା, କଥା କହୁଥିବା ଠାକୁରଙ୍କୁ ଦେଖିବି । ଦେହମୁଣ୍ଡ ଧୂଳିରେ ପୂର୍ଣ୍ଣ । ତଥାପି ସେଥିପ୍ରତି ଭ୍ରୂକ୍ଷେପ ନ ଥାଏ । କେହି କେମିତି ଗୋଡ଼ ହାତ ଧୋଇବା ପାଇଁ ପୋଖରୀକୁ ଗଲେ । କିନ୍ତୁ ମୁଁ ଗଲି ନାହିଁ । ଦୁଇ ହାତରେ ଦୁଇ ଭଉଣୀ ବୁଲୁ ଓ ଟିକିନା ହାତକୁ ଟାଣି ଟାଣି ମୁଁ ଚାଲିଲି ଠାକୁରଙ୍କ ଦର୍ଶନକୁ । କହିଲି– ଚାଲ, ସେ ଠାକୁର କେମିତି ଚାଲୁଛନ୍ତି, କଥା କହୁଛନ୍ତି ମୋତେ ଦେଖାଇବ ।

ଅନ୍ତର୍ଯ୍ୟାମୀଙ୍କୁ କେଉଁ କଥା ବା ଅଜଣା ? ଦର୍ଶନ ଦେବେ ବୋଲି ତ ଗାଁରୁ ଚାନ୍ଦୁଆ, ଆଉ ଚାନ୍ଦୁଆରୁ କରମଳା ଆଣିଛନ୍ତି । ଭଉଣୀମାନଙ୍କ ହାତକୁ ଧରି ମୁଁ ଠିକ୍ ପିଣ୍ଡାତଳକୁ ଓହ୍ଲାଇଛି, ଏତିକିବେଳେ ହରିବୋଲ ହୁଳହୁଳି ଧ୍ୱନିରେ ଚତୁର୍ଦ୍ଦିଗ ପ୍ରକମ୍ପିତ ହେଲା । ମୁଁ କିଛି ବୁଝିପାରିଲି ନାହିଁ । ଭଉଣୀମାନେ କହିଲେ, ହେଇ ଠାକୁର । ମୁଁ ଦେଖିଲି ଛାତ ଉପରେ ଠିକ୍ ମୋରି ଆଡ଼କୁ ମୁହଁ କରି ଠାକୁର ଛିଡ଼ା ହୋଇ ହସୁଛନ୍ତି । ମୋତେ ଆଉ ତାଙ୍କ ପାଖକୁ ଯିବାକୁ ପଡ଼ିନି । ହଜାର ହଜାର ଭକ୍ତଙ୍କ ଭିତରେ କାଳେ ନଅ ଦଶ ବର୍ଷର ଏଡ଼େ ବକଟେ ପିଲା ତାଙ୍କୁ ମନବୋଧ କରି ଦେଖି ନ ପାରିବ, ସେଇଥିପାଇଁ ସେ ଆସି ଉଭା ହୋଇଛନ୍ତି ତା' ସମ୍ମୁଖରେ ।

ମିଳନ ହେଲା ଚାରିଚକ୍ଷୁର । ମିଳନ ହେଲା ଜୀବ ପରମଙ୍କର । ମୁଁ ଅନୁଭବ କଲି– ସେ ବିରାଟ ବ୍ରହ୍ମ ପୁରୁଷଙ୍କର ଅଙ୍ଗରେ ମୁଁ ଯେପରି ଲୀନ ହୋଇଯାଉଛି । ତାଙ୍କ ସହିତ ମୁଁ ଯେପରି ଏକାକାର ହୋଇଯାଉଛି । କିଛିକ୍ଷଣ ପରେ ମୁଁ ପ୍ରକୃତିସ୍ଥ ହେଲି । ମନେ ମନେ ବିଚାର କଲି– ଏ କ'ଣ ସତରେ ଠାକୁର ? ଆଚ୍ଛା, ଯଦି ଠାକୁର ତେବେ ତ ତୁଳସୀ ପିନ୍ଧିଥିବେ ? ଦେଖିଲି ସତକୁ ସତ ମସ୍ତକରେ ତୁଳସୀ ଧାରଣ କରିଛନ୍ତି ।

ଗୁରୁ କ'ଣ, ଶିଷ୍ୟ କ'ଣ, ଦୀକ୍ଷା କ'ଣ, ତା'ର ଆବଶ୍ୟକତା କ'ଣ– ଏ ସବୁ ବିଷୟରେ ଯଦିଓ ସେତେବେଳେ ମୋର ବିନ୍ଦୁ ବିସର୍ଗ ଧାରଣା ନାହିଁ, ତଥାପି ସେଇଠି

ତାଙ୍କରି ମୁଖମଣ୍ଡଳକୁ ଚାହିଁ ମୁଁ ସ୍ଥିର କରିନେଲି– ଏଇ ମୋର ଗୁରୁ । ମୁଁ ଅନୁଭବ କଲି, ସତେ ଯେମିତି ଅନ୍ତର୍ଯ୍ୟାମୀ ପ୍ରଭୁ ମୋର ଅନ୍ତର ଭିତରେ ରହି ଏହି ସିଦ୍ଧାନ୍ତ ଗ୍ରହଣ କରାଇ ନେଉଛନ୍ତି ।

ଆମେ ଦୁଇ ତିନ ଦିନ ରହିଲୁ । ଠାକୁରଙ୍କ ପୂଜା ଆଳତୀଠାରୁ ଆରମ୍ଭ କରି ହରିଲୁଟ ପର୍ଯ୍ୟନ୍ତ ସମସ୍ତ ଦୃଶ୍ୟ ପ୍ରଥମ ଓ ଶେଷଥର ପାଇଁ ଦେଖି ନେତ୍ର ମୋର ସାର୍ଥକ ହେଲା ।

ଜୟନ୍ତୀ ଦିନ ଠାକୁର ବୈଠକ ଘରେ (ଏବେକାର ସମାଧି ମନ୍ଦିର) ଗୋଟିଏ ଚୌକିରେ ବସି ଭକ୍ତମାନଙ୍କୁ ଦର୍ଶନ ଦେଉଥାନ୍ତି । ଆମେ ଛୋଟ ପିଲାମାନେ ଠାକୁରଙ୍କ ପାଖରେ କିଛି ଭୋଗ କରିବାକୁ ବିଚାର କରି ଚାନ୍ଦା ଆଦାୟ କଲୁ । ସେଇ ପଇସାରେ କିଛି ମିଠେଇ ଓ ଦୁଇଖଣ୍ଡି ପାନ କିଣିଲୁ । ଆମ ଭିତରୁ ଦୁଇଜଣ ଗୋଟିଏ ଥାଳିରେ ସେ ସବୁ ଧରି ଭିତରକୁ ଗଲେ । ଆମେ ଅନ୍ୟମାନେ ଝରକା ପାଖରେ ରହି ସେ ଦୃଶ୍ୟ ଦେଖୁଥାଉ । ଠାକୁର ମିଠେଇରେ ଟିକିଏ ହାତ ମାରିଦେଲେ । ପାନ ଦି'ଖଣ୍ଡି ନେଇ ଟେବୁଲ ଉପରେ ରଖିଲେ । ମହାନନ୍ଦରେ ଆମେ ସବୁ ପ୍ରସାଦ ପାଇଲୁ ।

ରାତିରେ ଗାୟକରତ୍ନ ହରିନାଥ ପାଲା କଲେ । ବିଷୟବସ୍ତୁ ଥାଏ "ପ୍ରଭାସ ଯଜ୍ଞ" । କୃଷ୍ଣଙ୍କ ମଥୁରା ଗମନ ପରେ ଶ୍ରୀହୀନ ବୃନ୍ଦାବନର ଦୃଶ୍ୟ, ନନ୍ଦ ଯଶୋଦାଙ୍କର ପୁତ୍ର ବିଚ୍ଛେଦ ଜନିତ ବାତୁଳତାର ଦୃଶ୍ୟ ବର୍ଣ୍ଣନା ମୋର ଏବେ ବି ମନେ ପଡ଼ିଯାଉଛି । ରସ ପରିବେଷଣରେ ତ ସହଜେ ହରିନାଥ ସିଦ୍ଧହସ୍ତ । ତା' ସାଙ୍ଗକୁ ଉପଭୋକ୍ତା ହେଉଛନ୍ତି ସ୍ୱୟଂ ରସରାଜ ଠାକୁର । ବାରଣ୍ଡାରେ ଗୋଟିଏ ଚୌକିରେ ଠାକୁର ବସିଥାନ୍ତି । ସେବକ ସନ୍ନ୍ୟାସୀମାନେ ଚାମର ଢାଳୁଥାନ୍ତି । ଠାକୁର ତନ୍ମୟ ହୋଇ ଶୁଣୁଥାନ୍ତି ।

ପରଦିନ ମହୋତ୍ସବ । ନଗର କୀର୍ତ୍ତନ ପରେ ଦଧି ବିକ୍ରି । ଭକ୍ତ ମା'ମାନଙ୍କଠାରୁ ଶାଢ଼ୀ ବ୍ଲାଉଜ୍ ଗହଣା ଗାଣ୍ଠି ଆଦି ଆଣି ନିଜ ନିଜକୁ ଗୋପିକା ବେଶରେ ସଜ୍ଜିତ କରି ବାହାରି ପଡ଼ନ୍ତି ସନ୍ନ୍ୟାସୀମାନେ । ପ୍ରତ୍ୟେକଙ୍କର ଶିରରେ ଥାଏ ଗୋଟିଏ ଲେଖାଏଁ ଦଧିଭାଣ୍ଡ । ଭକ୍ତମାନେ କିଏ ପାଞ୍ଚ ପଇସା କିଏ ବା ଦଶ ପଇସା ଦେଇ ଦହି ମାଗି ଖାଆନ୍ତି । ଠାକୁର ବୁଲି ବୁଲି ସମସ୍ତଙ୍କଠାରୁ ଦହି ଖାଆନ୍ତି; କିନ୍ତୁ କାହାରିକୁ ପଇସାଟିଏ ଦିଅନ୍ତି ନାହିଁ । ପଇସା ମାଗିଲେ କହନ୍ତି– ତୋ ଦହିଟା ଖଟା । ସେ ଆନନ୍ଦମୁଖର ଦୃଶ୍ୟ ଦେଖିଲେ ମନ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଚାଲିଯାଏ । ସବୁଠାରୁ ଉପଭୋଗ୍ୟ ବିଷୟ ହେଉଛି– ଏ ଅଭିନବ ଗୋପିକାମାନଙ୍କର ବେଶଭୂଷା । ଆଖିରେ କଜ୍ଜଳ, କପାଳରେ ସିନ୍ଦୂର, ହାତରେ ଚୂଡ଼ି, କର୍ଣ୍ଣରେ କୁଣ୍ଡଳ, କଣ୍ଠରେ ହାର, ପାଦରେ ଅଳତା ଆଉ ପୃଷ୍ଠଦେଶରେ ସୁସଜ୍ଜିତ କବରୀ । ସବୁ ତ ହେଲା; କିନ୍ତୁ ମୁଖମଣ୍ଡଳରେ କଳା କଳା

ଏଗୁଡ଼ାକ କ'ଣ ? ଗୋପାବାଳୀଙ୍କର ସତରେ କ'ଣ ଏମିତି ଗୁଡ଼ାଏ ଦାଢ଼ି ନିଶ ଥିଲା ନା କ'ଣ ମ ? ସେ ଅପୂର୍ବ ରୂପ ଦେଖିଲେ ହସି ହସି ପେଟ ଦରଜ ହୋଇଯାଏ ।

ଜନ୍ମୋତ୍ସବର ପରିସମାପ୍ତି ଘଟେ ହରିଲୁଟ୍‌ରେ । ଛାତ ଉପରେ ଠିଆ ହୋଇ ଠାକୁର ଫଳମୂଳ, ଲୁଗାପଟା, ଲଡୁମିଠେଇ, ଟଙ୍କା ପଇସା ସବୁ ତଳକୁ ଫିଙ୍ଗନ୍ତି । ତାକୁ ଧରିବା ପାଇଁ ଭକ୍ତମାନଙ୍କ ଭିତରେ ଆରମ୍ଭ ହୋଇଯାଏ ପ୍ରତିଯୋଗିତା । ଠେଲାପେଲା ଧରାଧରି, ଗଡ଼ାଗଡ଼ି ଭିତରେ ଯେ କିଛି ଗୋଟାଏ ପାଇଯାଏ ତା'ର ଆନନ୍ଦ କହିଲେ ନ ସରେ । ଆମେ ଛୋଟ ପିଲାମାନେ ସବୁ ଦୂରରେ ଛିଡ଼ା ହୋଇ ସେହି ଦୃଶ୍ୟ ଉପଭୋଗ କରୁଥାଉଁ । ଆମ ଭିତରେ ଟିକିଏ ବଡ଼ ଥାଆନ୍ତି ବଡ଼ଭାଇ ପ୍ରଦୀପ । ସେ ବେଳେବେଳେ ଭିତରକୁ ପଶିଯାଇ ପ୍ରତିଯୋଗିତାରେ ଲାଗି ପଡ଼ନ୍ତି । ହାତରେ କିଛି ଗୋଟାଏ ପଡ଼ିଗଲେ ଆଣି ଆମକୁ ଦିଅନ୍ତି ।

ପ୍ରତ୍ୟାବର୍ତ୍ତନର ସମୟ ଏବେ ନିକଟ ହେଲା । ଠାକୁରଙ୍କ ଠାରୁ ବିଦାୟ ନେଇ ସମସ୍ତେ ଆସିଲୁ । ସେଇଦିନଠାରୁ ଠାକୁର ହେଲେ ମୋର ଗୁରୁ । ମୋର ହର୍ତ୍ତା କର୍ତ୍ତା ଦଇବ ବିଧାତା । ଆଗରୁ ଯେ ନ ଥିଲେ ଏକଥା ନୁହେଁ । ତେବେ ସେଇଦିନଠାରୁ ମୁଁ ତାଙ୍କୁ ଜାଣିଲି ଜୀବନ ସର୍ବସ୍ୱ ଭାବରେ ।

ଠାକୁର ୧୯୬୩ରେ ଅପ୍ରକଟ ହେଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ବାଳକ ସୁଲଭ ଚପଳତା ମୋର କ୍ରମଶଃ କମିବାକୁ ଲାଗିଲା । ହାଇସ୍କୁଲରେ ପଢ଼ିବା ବେଳେ ବଡ଼ବାପାଙ୍କ ଘରୁ 'ଶରଣଦ' ପତ୍ରିକାରୁ ଠାକୁରଙ୍କର ଗୋଟିଏ ଫଟୋ ସଂଗ୍ରହ କଲି । ସିଙ୍ଗାପୁର ଯାତ୍ରାରୁ ବନ୍ଧାଇ ଆଣି ଘରେ ରଖିଲି । ସେଇଦିନଠାରୁ ଠାକୁରଙ୍କର ପୂଜା ଆମ ଘରେ ଟିକେ ଟିକେ ଆରମ୍ଭ ହେଲା ।

୧୯୬୮-୬୯ରେ ମୁଁ ପଢୁଥାଏ ବାଲେଶ୍ୱରର ଫକୀର ମୋହନ କଲେଜରେ । ଦିନେ କମନ୍‌ରୁମ୍‌ରେ ଏକାକୀ ବସିଛି । ହଠାତ୍ ଠାକୁରଙ୍କ କଥା ମନେ ପଡ଼ିଲା । ଭାବିଲି, ଠାକୁର ତ ଥରଟିଏ ମାତ୍ର ଦର୍ଶନ ଦେଇ କେଉଁଠି ଲୁଚିଗଲେ । ମନେ ମନେ ଗୁରୁ ଭାବରେ ବରଣ କଲି ସିନା, ଦୀକ୍ଷା ତ ନେଇ ନାହିଁ । ଏବେ ମନ୍ତ୍ରୋପଦେଶ ନେବି କେଉଁଠୁ ? ଖିଆଲ ପଡ଼ିଲା ଠାକୁରଙ୍କ ପଟ୍ଟଶିଷ୍ୟ ଆଚାର୍ଯ୍ୟ ବୈକୁଣ୍ଠ ବାବାଙ୍କ କଥା । ଆଶ୍ରମ ଠିକଣା ମନେ ଥାଏ । ଖଣ୍ଡିଏ ପୋଷ୍ଟକାର୍ଡ଼ ଆଣି ବାବାଙ୍କ ନିକଟକୁ ଚିଠି ଲେଖିଲି ଶାନ୍ତି ଆନନ୍ଦାଶ୍ରମ ଠିକଣାରେ । ଚିଠି କଥା ଭାବିଲେ ମୁଁ ଏବେ ବି ମନେ ମନେ ବଡ଼ ଲଜ୍ଜିତ ହୁଏ । ସତରେ ମୁଁ କେଡ଼େ ନିର୍ବୋଧ ନ ଥିଲି ସେତେବେଳେ ! ଗୁରୁ ଦ୍ରୋଣଙ୍କ ନିକଟକୁ କେତେ ଧାଇଁ ନ ଥିଲେ ଏକଲବ୍ୟ ? ଗୁରୁ ରାମାନନ୍ଦଙ୍କ ନିକଟକୁ କେତେ ଧାଇଁ ନ ଥିଲେ କବୀର ? ଆଉ ମୁଁ ? ସିଧାସଳଖ ଯୋଗାଯୋଗ ଆରମ୍ଭ କରିଦେଲି ପତ୍ର

ମାଧ୍ୟମରେ । ସେହି କାରଣରୁ ହେଉ ବା ମୋର ସେ ଶୁଭ ସମୟ ଆଗମନର ବିଳମ୍ବ ହେତୁ ହେଉ, ଆଚାର୍ଯ୍ୟଙ୍କଠାରୁ କୌଣସି ଉତ୍ତର ପାଇଲି ନାହିଁ ।

ଇତି ମଧ୍ୟରେ ମୁଁ ଚାକିରି କଲି । ସେତେବେଳର ମୋର ହାକିମ ଯେ କି ପରବର୍ତ୍ତୀ ସମୟରେ ଜଣେ ରାଜ୍ୟସ୍ତରୀୟ ପଦସ୍ଥ ଅଧିକାରୀ ହୋଇଥିଲେ, ସେ ଠାକୁର ଅନୁକୂଳଚନ୍ଦ୍ରଙ୍କ ସଂସ୍ଥାରେ ଦୀକ୍ଷା ନେବା ପାଇଁ ମୋତେ ବହୁତ ପ୍ରବର୍ତ୍ତାଇଲେ । ଏପରିକି ମୋର ମତ ପରିବର୍ତ୍ତନ କରିବା ପାଇଁ ଠାକୁରଙ୍କ ଛବିକୁ ବିଜ୍ଞାପନ ଭାବରେ ବ୍ୟବହାର କରିବାକୁ ମଧ୍ୟ ସେ ତିଳେ ହେଲେ କୁଣ୍ଠାବୋଧ କରି ନ ଥିଲେ । କିନ୍ତୁ ଠାକୁରଙ୍କ କୃପାରୁ ମୁଁ ସେ ଫାନ୍ଦରୁ ବର୍ତ୍ତିଗଲି ।

୧୯୭୯ ଦଶହରାରେ ଆସିଲା ସେ ସୁଯୋଗ, ଯାହାର ପ୍ରତୀକ୍ଷାରେ ମୋର ବିତିଗଲା ଦୀର୍ଘ ଷୋଳ / ସତର ବର୍ଷ । ମହାନବମୀ ଦିନ ସନ୍ଧ୍ୟାରେ ଆଚାର୍ଯ୍ୟ ବୈକୁଣ୍ଠ ବାବାଙ୍କଠାରୁ ମୁଁ ଦୀକ୍ଷା ଗ୍ରହଣ କଲି ସସ୍ତ୍ରୀକ । ଏ ଦଦରା ନାବରେ କର୍ଣ୍ଣଧାର ହେଲେ ପରମ ପ୍ରେମମୟ ଠାକୁର । ତାଙ୍କ ଶ୍ରୀଚରଣ ସେବାର ଯୋଗ୍ୟତା ମୋର ନାହିଁ । ସେଥିପାଇଁ ଏବେ ବି ଗାଉଛି –

"ଯୋଗ୍ୟ କରି ଗଢ଼ ମୋତେ ତବ ସେବା ପାଇଁ
ଶ୍ରୀରଙ୍ଗାଚରଣ ତଳେ ରଖ ମୋତେ ନେଇ ।"



# ଚାତକ ନବଘନ ସମ୍ବାଦ

ଯେତେବେଳେ ସମ୍ବନ୍ଧର କଥା ଉଠେ, ନିବିଡ଼ତାର କଥା ଉଠେ, ସେତେବେଳେ ଛାଁ କୁ ଛାଁ ଅଙ୍ଗୁଳି ରେଖା ମଧ୍ୟକୁ ଆସିଯାଆନ୍ତି– ନଦୀ-ସାଗର, ଜଳ-ମୀନ, ସିଂହ-ବନ, କୁମୁଦ-ଚନ୍ଦ୍ର, ସୂର୍ଯ୍ୟ-ପଦ୍ମ ଆଦି କେତେକ ଯୁଗ୍ମ ଶବ୍ଦ । ପତି-ପତ୍ନୀ, ପିତା-ପୁତ୍ର, ଭ୍ରାତା-ଭଗିନୀ ଇତ୍ୟାଦି ସାମାଜିକ ସମ୍ବନ୍ଧର ଉତ୍କର୍ଷତା ପ୍ରମାଣ କରିବାକୁ ଯାଇ ଆମେ ଏଇ ସବୁ ପ୍ରାକୃତିକ ସମ୍ବନ୍ଧର ନୈସର୍ଗିକତା ଆଲୋଚନା କରୁ । ସାମାଜିକ ସମ୍ବନ୍ଧରେ ଜୁଆର-ଭଟ୍ଟା ଥାଏ । କିନ୍ତୁ ନ ଥାଏ ପ୍ରାକୃତିକ ସମ୍ବନ୍ଧରେ । ସତରେ ପ୍ରାକୃତିକ ବ୍ୟବସ୍ଥା କି ସୁନ୍ଦର !

ନଦୀ, ସାଗର ସଙ୍ଗମ ନିମନ୍ତେ କାହିଁ କେତେ ଦୂରରୁ କେତେ ବାଧାବିଘ୍ନ ଅତିକ୍ରମ କରି ଧାଇଁଆସେ । ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପି ଦେଇ ସେ ଲାଭ କରେ ଅସୀମ ଆନନ୍ଦ, ଜୀବନର ପରିପୂର୍ଣ୍ଣତା । ସାଗର ମଧ୍ୟ ଉଲ୍ଲସିତ ଭାବରେ ତାକୁ ସ୍ୱାଗତ କରେ । ମିଳନର ସାନ୍ଦ୍ରତା ଦୁହିଁଙ୍କୁ ଏକାକାର କରିଦିଏ । ତା'ପରେ ନଦୀ ତା'ର ନିଜସ୍ୱ ସତ୍ତା ଖୋଜିଲେ ମଧ୍ୟ ପାଏନା । ସବୁଦିନ ପାଇଁ ହଜିଯାଏ ସାଗର ବକ୍ଷରେ ।

ମୀନ ଜଳରେ ଜନ୍ମ ନିଏ, ବଢ଼େ ଏବଂ ବିଚରଣ କରେ ଶେଷ ଜୀବନ ପର୍ଯ୍ୟନ୍ତ । ଜଳ ବିନା ମୀନ ମୁହୂର୍ତ୍ତଟିଏ ବି ବଞ୍ଚି ପାରିବ ନାହିଁ ।

ପଶୁରାଜ ସିଂହ ଅରଣ୍ୟର ରାଜା । ରାଜା ବିହୀନ ଦେଶରେ ଯେପରି ଅରାଜକତା ଘୋଟିଯାଏ, ସିଂହବିହୀନ ଅରଣ୍ୟ ସେହିପରି ଅଚିରେ ଧ୍ୱଂସପ୍ରାପ୍ତ ହୁଏ । ନଦୀ-ସାଗର, ଜଳ-ମୀନ ପ୍ରଭୃତିର ସମ୍ବନ୍ଧଠାରୁ ସିଂହ ଆଉ ବନର ସମ୍ବନ୍ଧ ସ୍ୱତନ୍ତ୍ର । ଉପରୋକ୍ତ କ୍ଷେତ୍ରରେ ଜଣେ ଅନ୍ୟଜଣକ ଉପରେ ନିର୍ଭରଶୀଳ । କିନ୍ତୁ ଏ କ୍ଷେତ୍ରରେ ଉଭୟେ ଉଭୟଙ୍କ ଉପରେ ନିର୍ଭରଶୀଳ । ସିଂହବିହୀନ ବନର ଅସ୍ତିତ୍ୱ ଯେପରି କଳ୍ପନାତୀତ, ବନବିହୀନ ଇଲାକାରେ ସିଂହର ସମ୍ଭାବନା ମଧ୍ୟ ସେହିପରି ଏକ ଉଦ୍ଭଟ ଚିନ୍ତା– ଏକ ନିଛକ ଦିବାସ୍ୱପ୍ନ । ତେଣୁ ଠାକୁର ଶ୍ରୀ ଅଭିରାମ ଲେଖିଲେ– "ବନ ରଖେ ସିଂହ, ସିଂହ ରଖେ ବନ ।"

ସୂର୍ଯ୍ୟ ଓ ଚନ୍ଦ୍ରଙ୍କର ଉଦୟାସ୍ତ ସହିତ ପଦ୍ମ ଓ କଇଁର ଘନିଷ୍ଠ ସମ୍ବନ୍ଧ ନିହିତ । ସୂର୍ଯ୍ୟଙ୍କୁ ନଳିନୀକାନ୍ତ କୁହାଯାଉଥିବା ବେଳେ ଚନ୍ଦ୍ରଙ୍କୁ କୁହାଯାଏ କୁମୁଦ-ବାନ୍ଧବ । ମିଳନର

ଯୋଗସୂତ୍ର ସ୍ଥାପନ କରେ ସୂର୍ଯ୍ୟରଶ୍ମି ବା ଚନ୍ଦ୍ରକିରଣ । କାନ୍ତାଦ୍ୱୟ ଜଳରୁ ଉଭବ ହୋଇଥିବା ବେଳେ କାନ୍ତଦ୍ୱୟ ଆକାଶଚାରୀ । ଜଣେ ଉଷ୍ଣକିରଣ ସର୍ବସ୍ୱ ଦିବାକର ଏବଂ ଆଉ ଜଣେ ଶୀତଳ କିରଣ ସବସ୍ୱ ନିଶାକର । ଅପରପକ୍ଷରେ ଜଣେ ଦିବସର ନାୟିକା ତ ଜଣେ ରାତ୍ରିର । ଉଭୟ କିନ୍ତୁ ପତି ସୁହାଗିନୀ । ଅସ୍ତାଚଳଗାମୀ ପତିଙ୍କର ବିଚ୍ଛେଦରେ ଉଭୟେ ଶ୍ରୀହୀନ ଦେଖାଯା'ନ୍ତି ।

କିନ୍ତୁ ଏକାଧାରରେ ଅନନ୍ୟ ଶରଣ ଭାବ, ଐକାନ୍ତିକ ନିଷ୍ଠା, ପ୍ରଗାଢ଼ ବିଶ୍ୱାସ ଏବଂ ଅସୀମ ଧୈର୍ଯ୍ୟର କଥା ପଡ଼ିଲେ, ଏ ଯେତେସବୁ ପଛରେ ପଡ଼ିଯା'ନ୍ତି । ସେତେବେଳେ ଆଗକୁ ଆସିଯାଏ ଚାତକ ନବଘନର କଥା । ଛୋଟିଆ ପକ୍ଷୀଟିଏ । କେତେ ବା ତା'ର ଜୀବନ ? ତାକୁ କ'ଣ ଶୋଷ ହୁଏନା ? ତାକୁ କ'ଣ ରୌଦ୍ରତାପର ଜ୍ୱାଳା ବାଧେନା ? ତା'ର କ'ଣ ଜଳର ଆବଶ୍ୟକତା ପଡ଼େନା ? ପଡୁଥିବ ନିଶ୍ଚୟ । କିନ୍ତୁ ପଡ଼ିଲେ ମଧ ସେ ତା'ର ନୀତିରେ ଅଟଳ । ଭୂମି ଜଳ ସ୍ପର୍ଶ କରିବା ତା' ଜାତକରେ ନାହିଁ । ଅତି ବେଶିରେ ଜୀବନଟା ଚାଲିଯିବ ତ ? ଯାଉ, ତା' ବୋଲି ସେ କ'ଣ ତା'ର ସବୁକିଛି ଜଳାଞ୍ଜଳି ଦେଇଦେବ ନା କ'ଣ ?

ଏ ହେଉଛି ସେଇ ଚାତକ । ଅନ୍ୟ ପ୍ରାଣୀମାନଙ୍କ ପରି ଜୀବନ ପ୍ରତି ତା'ର ଏତେଟା ମୋହ ନାହିଁ । ତା' ନିକଟରେ ଜୀବନ ଅପେକ୍ଷା ବ୍ରତର ମୂଲ୍ୟ ଢେର ବେଶି । ଯେଉଁଠି ଜନ୍ମ ଅଛି, ସେଠାରେ ମୃତ୍ୟୁ ଅବଶ୍ୟମ୍ଭାବୀ, ଅନିବାର୍ଯ୍ୟ । ତେଣୁ ପ୍ରାଣହାନି ଭୟରେ ସେ ଭୂମିଜଳ ସ୍ପର୍ଶ କରେ ନାହିଁ । ପଲ୍ଲୀକବି ନନ୍ଦକିଶୋରଙ୍କ ଭାଷାରେ–

"କେତେ ହ୍ରଦ ନଦୀ ସରସୀ ସମୁଦ୍ର
ନାହିଁ ଏ ଅବନୀ ତଳେ,
ସର୍ବ ଆଶା ତେଜି ନିବେଶେ ଚାତକ
ଆଶା ଜଳଧର ଜଳେ ।" .... (ଶର୍ମିଷ୍ଠା)

ନବଘନର ଆଗମନରେ ତା'ର ଆଶା ତୃଷ୍ଣା ପୂର୍ଣ୍ଣ ହୁଏ । ବୃଷ୍ଟିଜଳ ପାନ କରି ସେ ଜୀବନ ଧାରଣ କରେ । ତା'ର ଦୃଢ଼ ବିଶ୍ୱାସ ତା' ନିକଟକୁ ଟାଣି ଆଣେ ନବଘନକୁ । ବିଜୁଳି ଘଡ଼ଘଡ଼ି ଶବ୍ଦରେ ସେ ଆତଙ୍କିତ ହୁଏନା । ଘନ ଅନ୍ଧକାରରେ ସେ ହୁଏନା ଦିଗହରା । ଅନ୍ୟ ପ୍ରାଣୀମାନେ ନିଜ ନିଜର ଆଶ୍ରୟସ୍ଥଳୀ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲାବେଳେ ସେ ମୁକ୍ତ ଆକାଶ ତଳେ ସ୍ୱଚ୍ଛନ୍ଦରେ ଉଡ଼ିବୁଲେ । ସେତେବେଳେ ତା'ର ଆନନ୍ଦ କହିଲେ ନ ସରେ ।

ଆଚ୍ଛା, ସେ ଯଦି ଭୂମିଜଳ ପାନ କରିଥାନ୍ତା, ତେବେ ତା' ଜୀବନରେ କ'ଣ କେବେ ନବଘନର ଆଗମନ ଘଟିଥାନ୍ତା ? ଦାରୁଣ ତୃଷ୍ଣାର କଷ୍ଟ ସହିବାର ଶକ୍ତି କ'ଣ

କେବେ ସେ ଲାଭ କରିଥାନ୍ତା ? ବୋଧହୁଏ କେବେ ନୁହେଁ । ସହଜଲଭ୍ୟ ଭୂମିଜଳରେ ପ୍ରଲୋଭିତ ହୋଇଥିଲେ, ନିର୍ମଳ ବୃଷ୍ଟିଜଳ ଲାଭ କରିବା ହୁଏତ ତା' ଜୀବନରେ ଗୋଟାଏ ସ୍ୱପ୍ନ ହୋଇ ରହି ଯାଇଥାନ୍ତା । ନବଘନ ଆସିଥାନ୍ତା ଅନ୍ୟ ସମସ୍ତଙ୍କ ପାଇଁ ଯେମିତି ଆସେ । କିନ୍ତୁ ସେଥିରେ ତା'ର କୌଣସି ମାଦକତା ରହି ନ ଥାନ୍ତା ।

ସେଇଥିପାଇଁ ବୋଧହୁଏ ଚାତକ ଠାକୁରଙ୍କ ଦୃଷ୍ଟି ଆକର୍ଷଣ କରିଛି । ତାଙ୍କ ରଚନାବଳୀ ମଧ୍ୟରେ ଭକ୍ତ ଭଗବାନ ସମ୍ବନ୍ଧ ବର୍ଣ୍ଣନା କରିବାକୁ ଯାଇ ସେ ବହୁ ସ୍ଥାନରେ ଚାତକ ନବଘନର ଉପମା ଉପସ୍ଥାପନ କରିଛନ୍ତି । ଚାତକର ତ୍ୟାଗ, ନିଷ୍ଠା, ଅନନ୍ୟ ଶରଣ ଭାବ ଓ ଦୃଢ଼ବିଶ୍ୱାସରୁ କାଣିଚାଏ ଆମ ନିକଟରେ ନାହିଁ ସତ । କିନ୍ତୁ ତଥାପି ସେ ଆମର ଆଦର୍ଶ । ତାକୁ ଆଖି ଆଗରେ ରଖି ଆମେ ଯଦି ଭଗବତ୍ ପଥର ପଥିକ ହେଉ, ତେବେ ଭଗବତ୍ କୃପାବୃଷ୍ଟି ଯେ ଅବଶ୍ୟ ଘଟିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ।

ନବଘନ ଯେ କେବଳ ଚାତକ ପାଇଁ ଆସେ ଏକଥା ନୁହେଁ । ଚାତକ ପାଇଁ ସେ ଆସେ ନବଘନ (ନୂଆମେଘ) ରୂପରେ । କିନ୍ତୁ ଆମ ପାଇଁ ଆସେ ମଣିଷ ରୂପରେ । ନବୀନ ନୀରଦ କାନ୍ତି ଶ୍ୟାମଘନର ପ୍ରତିଛାୟା ହୋଇ । ଏହା କଥାର କଥା ନୁହେଁ । କଳ୍ପନା ବିଳାସ ମଧ୍ୟ ନୁହେଁ । ଅନୁଭବ ସିଦ୍ଧ ସତ୍ୟ ଘଟଣା ।

୧୯୮୨ ମସିହା ମଧ୍ୟଭାଗର କଥା । ହାକିମଙ୍କର କାର୍ଯ୍ୟକଳାପ ଓ ବ୍ୟବହାରରେ ଅତିଷ୍ଠ ହୋଇପଡ଼ିଲୁ ଆମେ ସମସ୍ତେ । ଅସନ୍ତୋଷର ବହ୍ନି କ୍ରମଶଃ ତେଜି ଉଠିଲା । ଅଳ୍ପ କେତେକ ତୋଷାମଦକାରୀଙ୍କୁ ବାଦ୍ ଦେଲେ ବାକି ସମସ୍ତେ ସାମିଲ ହେଲେ ଅସନ୍ତୋଷ ଜନିତ ଆନ୍ଦୋଳନରେ । ଉତ୍ତେଜନାର ବାତାବରଣ ଭିତରେ ଆମେ ଥାଉଁ ।

ଦିନେ ରାତିରେ ଅଗଣାରେ ଖଟିଆ ପକାଇ ମୁଁ ଶୋଇଛି । ଗୋଟାଏ ସ୍ୱପ୍ନ ଦେଖିଲି । ଆମ ଅଫିସ୍‌ଟା ବଣେଇରେ ଅଛି । ଠାକୁରଙ୍କର ଏକ ବିରାଟ ସନାତନ ଧର୍ମ ସମ୍ମିଳନୀର ଆୟୋଜନ ହୋଇଛି ସ୍ଥାନୀୟ ସ୍କୁଲ ହତାରେ । ମୁଁ ଅଫିସ୍‌ରେ ଥିବା ସମୟରେ ଆଶ୍ରମବାସୀ ଦୁଇଜଣ ସାଧୁ ଆସୁଛନ୍ତି । ମୁଁ ସେମାନଙ୍କୁ ବସିବା ପାଇଁ ଆସନ ଦେଉଛି । ତା'ପରେ ବଡ଼ବାବୁଙ୍କ ଅନୁମତି ନେଇ ସେମାନଙ୍କ ସହିତ ସମ୍ମିଳନୀ ମଣ୍ଡପକୁ ଯାଉଛି । ସେଠାରେ ବହୁ ସାଧୁ ସନ୍ଥ ଓ ଭକ୍ତମାନଙ୍କ ସହିତ ଭେଟ ହେଉଛି । ଆଉ ସବୁଠୁ ବଡ଼କଥା ହେଉଛି ଯେ ଆଚାର୍ଯ୍ୟ ବୈକୁଣ୍ଠ ବାବା ଯେ କି ନିଜ କୋଠରୀ ମଧ୍ୟରୁ କ୍ୱଚିତ୍ ବାହାରନ୍ତି, ସେ ମଧ୍ୟ ସେ ସମ୍ମିଳନୀକୁ ଆସିଛନ୍ତି । ଗୋଟିଏ କୋଠରୀରେ ବାବା ବସିଛନ୍ତି । ମୁଁ ସପରିବାର ତାଙ୍କ ଦର୍ଶନକୁ ଯାଇଛି । ବାବା ସମସ୍ତଙ୍କୁ ଆଶୀର୍ବାଦ କରିଛନ୍ତି । କିନ୍ତୁ ମୋ ପାଇଁ ତାଙ୍କର କୃପା ବିଶେଷ ଭାବରେ ଝରି ପଡ଼ିଛି । ବୋଧହୁଏ ତାହା ହିଁ ହେଉଛି ମୋ ଜୀବନର ଏକ ବିରାଟ ପ୍ରାପ୍ତି । ବାବାଙ୍କ ଅଯାଚିତ କୃପାର କଥା ଚିନ୍ତା କରୁ କରୁ ମୁଁ ଆନନ୍ଦାଶ୍ରୁ ବିସର୍ଜନ କରିଛି କୃତଜ୍ଞତାରେ ।

ଏତିକିବେଳେ ହଠାତ୍ ମୋର ନିଦ ଭାଙ୍ଗିଗଲା । ଦେଖିଲି ସତକୁ ସତ ଆଖି ଲୁହରେ ମୋର ତକିଆ ଭିଜି ଯାଇଛି । ସ୍ୱପ୍ନ ବୃତ୍ତାନ୍ତ ମନେପକାଇ ମୁଁ ଆନନ୍ଦ ବିଭୋର ହୋଇ ଉଠିଲି । ଠାକୁରଙ୍କୁ ପୁଣି ଥରେ ପ୍ରଣାମ କଲି କୃତଜ୍ଞତାରେ ।

ରାତି ପାହି ଯାଇଥିଲା । ଶଯ୍ୟାତ୍ୟାଗ କରି ମୁଁ ବାହାରିଲି ନିତ୍ୟକର୍ମ କରିବାକୁ । କିନ୍ତୁ ସ୍ୱପ୍ନକଥା ଆଉ ମନରୁ ପାଶୋର ଗଲା ନାହିଁ । ଭାବିଲି ଆଗାମୀ ଶହେ ବର୍ଷ ଭିତରେ ତ ବଣେଇରେ ଇନ୍‌ସପେକ୍ଟର ଅଫିସ୍ ହେବାର ସମ୍ଭାବନା ନାହିଁ; ଆମ ଅଫିସ୍ ସୁନ୍ଦରଗଡ଼ରୁ ବଣେଇ ଆସିଲା କେମିତି ? ବୋଧହୁଏ ଏଣିକି ବଣେଇ ହିଁ ମୋର କର୍ମକ୍ଷେତ୍ର ହେବ । ସେଇଥିପାଇଁ ଠାକୁରେ ସ୍ୱପ୍ନରେ ପୂର୍ବରୁ ସୂଚନା ଦେଇଦେଲେ । ପ୍ରାତଃପୂଜା ସମୟରେ ମଧ୍ୟ ଆଉ ଏକ ଘଟଣା ଘଟିଲା । ଧୂପ ଓ ଦୀପ ଦୁଇଟିଯାକ ଭଲ ଭାବରେ ଜଳିଲା । କିନ୍ତୁ ଠାକୁରଙ୍କୁ ଅର୍ପଣ କରିବା ପୂର୍ବରୁ ଦୁଇଟି ଯାକ ଲିଭିଗଲା । ଏଥର ଆଉ ବୁଝିବାକୁ ବାକି ରହିଲା ନାହିଁ । ଏହା ଯେ ପ୍ରଭୁଙ୍କର ନିର୍ଦ୍ଦେଶ– ଏକଥା ମୁଁ ସ୍ପଷ୍ଟ ବୁଝିପାରିଲି ।

ସେଇଦିନ ଅଫିସ୍‌ରେ ମୁଁ ଘୋଷଣା କଲି "ମୋର ବଣେଇ ବଦଳି ହେଉଛି ।" ରାଖାଲ ଚନ୍ଦ୍ର ରାୟ ନାମରେ ଜଣେ ଗୁରୁଭାଇ ସୁନ୍ଦରଗଡ଼ ରାଜ୍ୟ ପରିବହନ ସଂସ୍ଥାରେ କଣ୍ଡକ୍ଟର ଥାଆନ୍ତି । ବୟସରେ ପିତୃତୁଲ୍ୟ, ଭାରି ସ୍ନେହୀ, ଠାକୁରଙ୍କ କଥା କହିଲାବେଳେ ଭାବ ଗଦ୍‌ଗଦ୍ ହୋଇପଡ଼ନ୍ତି । ସେ ଥରେ କଥା ପ୍ରସଙ୍ଗରେ ମୋର ସ୍ଥାନାନ୍ତର ଯୋଗ ଅଛି ବୋଲି କହିଥିଲେ । ସବୁ କଥାକୁ ମିଳାଇ ମୁଁ ଏକ ପ୍ରକାର ସ୍ଥିର ନିଶ୍ଚିତ ହୋଇଗଲି ଯେ ମୋର ବଣେଇକୁ ବଦଳି ହେବ ।

ଏବଂ ତାହା ହିଁ ହେଲା । ବଣେଇ ଅନ୍ତର୍ଗତ ଡେଣ୍ଡରା ସରକାରୀ ଉଚ୍ଚ ବିଦ୍ୟାଳୟରେ ମୁଁ ଯୋଗ ଦେଲି ପ୍ରଥମ କିରାଣୀ ଭାବରେ । ଏକ ସଙ୍ଗେ ବଦଳି ହୋଇଥିବା ବାକି ଚାରିଜଣ ନିଜ ନିଜର ପାରିବାରିକ ଅସୁବିଧା ଦର୍ଶାଇ ହାକିମଙ୍କ ନିକଟରେ ଅପିଲ୍ କଲେ ସିନା, କିନ୍ତୁ କିଛି ଫଳ ହେଲା ନାହିଁ । ହାକିମ ଭାବିଥିଲେ ମୁଁ ମଧ୍ୟ ଯାଇ ତାଙ୍କ ପାଖରେ ଶରଣ ପଶିଥାଆନ୍ତି । ତାଙ୍କୁ ମୁଣ୍ଡିଆ ମାରିଥାନ୍ତି । ତା' ହେଲେ ହୁଏତ ସେ ମୋ' କଥା ସହାନୁଭୂତିର ସହିତ ବିଚାର କରିଥାଆନ୍ତେ । କାରଣ ମୋ ବିରୋଧରେ କୌଣସି ଅଭିଯୋଗ ନ ଥିଲା । ମୁଁ ନିଷ୍ଠାର ସହିତ ମୋର କର୍ତ୍ତବ୍ୟ ସମ୍ପାଦନ କରୁଥିଲି । ମୋ ବଦଳିର ଏକମାତ୍ର କାରଣ ଥିଲା ମୋର ଅପ୍ରିୟ ସତ୍ୟବାଣୀ । ଯାହାକି ହାକିମଙ୍କର ଗାତ୍ରଦାହ କରିଥିଲା । ଠାକୁର "କଳି ଭାଗବତ"ରେ ଲେଖିଛନ୍ତି– "ସମସ୍ତ ବେଳେ ସଙ୍ଗ ଯେହି, ତାଙ୍କୁ ଧରିଲେ ଭୟ ନାହିଁ ।" ନିର୍ଭୀକ ହେବାକୁ ଯଦି କେହି ଇଚ୍ଛା କରୁଥାନ୍ତି, ତେବେ ଜନ୍ମ ଜନ୍ମାନ୍ତରର ବନ୍ଧୁ ସେଇ ଜଗବନ୍ଧୁଙ୍କୁ ହିଁ ତାଙ୍କୁ ଆଶ୍ରୟ କରିବାକୁ ପଡ଼ିବ । ଆଉ ସେ ହିଁ ହେଉଛନ୍ତି ମୋର ବନ୍ଧୁ ।

ତେଣୁ ତାଙ୍କର ଆଶା ଆଶାରେ ହିଁ ରହିଗଲା । କ୍ଷମତାର ଅଭିମାନ ତାଙ୍କୁ ଶାନ୍ତିରେ ରହିବାକୁ ଦେଲାନି । ସେ ପ୍ରତିକ୍ରିୟାଶୀଳ ହୋଇ ଉଠିଲେ ମୋ ପାଇଁ । ଝିରାରୁ ଶିରା ବାହାର କରି ଏବଂ ଛେନାରୁ ଚୋପା ଛଡ଼ାଇ ସେ ଖୋଜି ବସିଲେ ମୋର ଦୋଷତ୍ରୁଟି । ସାମାନ୍ୟ କଥାକୁ ବିରାଟ ରୂପ ଦେଇ ସେ ମୋ ନାଁରେ ପ୍ରୋସିଡ଼ିଂ କଲେ । ସୁନ୍ଦରଗଡ଼ ବସାଘର ଛାଡ଼ିବା ପାଇଁ ଘନ ଘନ ନୋଟିସ୍ ଜାରି କଲେ । ମୁଁ ଘର ଛାଡ଼ିଲି ନାହିଁ । ପ୍ରୋସିଡ଼ିଂର କୈଫିୟତ୍ ମଧ୍ୟ ଦେଲି ନାହିଁ । କୈଫୟତ୍ ନ ଦେଲେ ଏକତରଫା ବିଚାର ହେବ ବୋଲି ଧମକ୍ ମଧ୍ୟ ଦେଲେ । କିନ୍ତୁ ମୁଁ କୌଣସିଥିରେ ଭୟଭୀତ ହେଲି ନାହିଁ । ପାଠକେ ଏହାକୁ ମୋର ଔଦ୍ଧତ୍ୟ ଓ ଅନମନୀୟତା ବୋଲି ବିଚାର କରି ପାରନ୍ତି । କିନ୍ତୁ ତାହା ଠିକ୍ ନୁହେଁ । ତଳିଆ କର୍ମଚାରୀ ହେଲୁ ବୋଲି ଆମର କ'ଣ ଆତ୍ମସମ୍ମାନ ନାହିଁ । ହାକିମ ଜଣକ ଏଭଳି ଏକ ବ୍ୟକ୍ତି ଯେ କି ନିଜେ ସାଧୁ ନୁହନ୍ତି; କିନ୍ତୁ ଅନ୍ୟକୁ ଚୋର କହନ୍ତି । ତା' ଛଡ଼ା ତୋଷାମଦ ଓ ଚାଟୁକଥା ହିଁ ତାଙ୍କ ନିକଟରେ ଯୋଗ୍ୟତାର ଏକମାତ୍ର ମାପକାଠି । ତେଣୁ ତାଙ୍କଠାରୁ ନ୍ୟାୟ ବିଚାର ଆଶା କରିବା ନିର୍ବୋଧତା ଛଡ଼ା ଆଉ କିଛି ନୁହେଁ । ଏ ସବୁ ଦୃଷ୍ଟିରୁ ଆତ୍ମରକ୍ଷା ପାଇଁ ମୋତେ ମୋର ନିଜସ୍ୱ କୌଶଳ ଅବଲମ୍ବନ କରିବାକୁ ପଡ଼ିଲା । ଚାକିରୀ କ୍ଷେତ୍ରରେ ଜଟିଳ, ସମସ୍ୟା ସୃଷ୍ଟି କରିବାକୁ ମୁଁ ତାଙ୍କୁ ଆଉ ଅଧିକ ସୁଯୋଗ ଦେଲି ନାହିଁ । ଯେସାକୁ ତେସା ନୀତିରେ ସେ ଯେତିକି କଡ଼ା ଚିଠି ଲେଖନ୍ତି, ତା'ର ଉତ୍ତର ମଧ୍ୟ ମୁଁ ସେତିକି କଡ଼ା ଭାଷାରେ ଦିଏ । ବଣ ପାହାଡ଼ ଘେରା ସେ ଗାଆଁରେ ସୁଚିନ୍ତିତ ପରାମର୍ଶ ଦେବା ପାଇଁ ଲୋକଟିଏ ମଧ୍ୟ ନ ଥାଏ । କେବଳ ଠାକୁର ହିଁ ମୋର ଏକମାତ୍ର ଭରସା । ଅନ୍ତର ଭିତରେ ଥାଇ ସେ ଯାହା ନିର୍ଦ୍ଦେଶ ଦିଅନ୍ତି, ମୁଁ ସେଇଆ କରେ । ମୋର ଖଣ୍ଡିଏ ଖଣ୍ଡିଏ ଲେଖା ଆମୋଘ ଅସ୍ତ୍ର ଭଳି କାର୍ଯ୍ୟ କରେ । ଜୋକ ମୁହଁରେ ଲୁଣ ଦେଲା ଭଳି ତାହା ହାକିମଙ୍କୁ ନିରୁତ୍ତର କରିଦିଏ ।

ଏହିପରି ଭାବରେ ବିତିଗଲା ଦୀର୍ଘ ଅଢ଼େଇବର୍ଷ । ପିଲାମାନେ ରହିଲେ ସୁନ୍ଦରଗଡ଼ରେ, ଆଉ ମୁଁ ରହିଲି ତାଙ୍କଠାରୁ ଦୁଇଶହ ପନ୍ଦର କିଲୋମିଟର ଦୂରରେ । ଅସୁବିଧା ଯେ ନ ହୁଏ ଏକଥା ନୁହେଁ । ତେବେ ସବୁଟାକୁ ଠାକୁରଙ୍କର ଆଶୀର୍ବାଦ ମନେକରି ମୁଁ ଆଗେଇ ଚାଲିଥାଏ । ଶୁଭେଚ୍ଛୁ ବନ୍ଧୁ ଓ ହିତାକାଂକ୍ଷୀ ଗୁରୁଜନମାନେ ମୋର ଦୁଃଖରେ ସମବେଦନା ଜ୍ଞାପନ କରନ୍ତି । ବିଭାଗୀୟ କର୍ମଚାରୀମାନଙ୍କ ମଧ୍ୟରୁ ଯେଉଁମାନେ ବ୍ୟକ୍ତିଗତ ଭାବରେ ମୋତେ ଜାଣନ୍ତି, ସେମାନେ ହାକିମଙ୍କ ଅବିବେକିତା ଓ ଅବିଜ୍ଞତାର ନିନ୍ଦା କରନ୍ତି ।

ଥରେ ଆଶ୍ରମର ଜନୈକ ସନ୍ନ୍ୟାସୀ ମୋତେ କହିଲେ– "ପ୍ରତାପ ! ତୁ କାହିଁକେ କେଉଁ ଜଙ୍ଗଲ ଭିତରେ ଅଛୁ ପରା ? ଶୁଣିଲି, ପିଲାମାନେ ସୁନ୍ଦରଗଡ଼ରେ

ଭାରି ହଇରାଣ ହେଉଛନ୍ତି ? ଯଦି କହିବୁ ତେବେ ମୋର ଜଣେ ପିଲାଦିନର ସହପାଠୀ ମୁଖ୍ୟମନ୍ତ୍ରୀଙ୍କର ପି.ଏ. ଅଛନ୍ତି । ମୁଁ ତାଙ୍କୁ କହି ସୁନ୍ଦରଗଡ଼କୁ ପୁଣି ତୋର ବଦଳି କରାଇବାର ବ୍ୟବସ୍ଥା କରିବି ।"

ସେତେବେଳେ ମୁଁ ତାଙ୍କୁ ଉତ୍ତର ଦେଇଥିଲି– "ବୁଝିଲେ ବାବା ! ଠାକୁରେ ମୋତେ ଯେଉଁଠି ରଖିଛନ୍ତି, ମୁଁ ବେଶ୍ ଆନନ୍ଦରେ ଅଛି । ଆପଣ ସେଥିରେ ମୋଟେ ମୁଣ୍ଡ ଖେଳାନ୍ତୁ ନାହିଁ ।" ସତରେ ତେଣ୍ଡରାର ପ୍ରାକୃତିକ ପରିବେଶ ଅତି ସୁନ୍ଦର । କେତେକ ଆର୍ଥିକ ତଥା ପାରିବାରିକ ଅସୁବିଧା ଥିଲେ ମଧ୍ୟ ମୁଁ ସେଠାରେ ଖୁବ୍ ଆନନ୍ଦରେ ଥିଲି । ହାଇସ୍କୁଲରେ ଶିକ୍ଷକତା କରିବାର ଯେଉଁ ବାସନା ମୋ ଭିତରେ ପିଲାଦିନୁ ଥିଲା ତାହା ସେଠାରେ କେତେକାଂଶରେ ପୂରଣ ହୋଇଥିଲା । ଦଣ୍ଡ ଦେବା ଉଦ୍ଦେଶ୍ୟରେ ମୋତେ ସେଠାକୁ ପଠାଯାଇଥିଲା । କିନ୍ତୁ ସେ ସବୁକୁ ଭ୍ରୂକ୍ଷେପ ନ କରି ସ୍କୁଲର ବିଭିନ୍ନ ଗଠନମୂଳକ କାର୍ଯ୍ୟରେ ମୁଁ ମନୋନିବେଶ କରିଥିଲି ବରଂ ଅଶାନ୍ତିରେ ଦିନ କାଟିଥିଲେ ମୋର ଅନ୍ୟାନ୍ୟ ସହକର୍ମୀବୃନ୍ଦ, ଯେଉଁମାନେ କି ବଦଳି ନ ହୋଇ ପୂର୍ବବତ୍ ସେହି ସୁନ୍ଦରଗଡ଼ ଅଫିସ୍‌ରେ ଥିଲେ ।

୧୯୮୭ ଠାକୁରଙ୍କ ଜୟନ୍ତୀ ସମୟର ଘଟଣା । ଉତ୍ସବ ପରେ ମୁଁ ଆଶ୍ରମରୁ ଫେରୁଥାଏ । କଟକ ବସ୍‌ଷ୍ଟାଣ୍ଡରେ ହଠାତ୍ ମୋର ଦେଖାହେଲା ସୁନ୍ଦରଗଡ଼ର ଜଣେ ଶିକ୍ଷକଙ୍କ ସହିତ । ହାକିମଙ୍କ ସହିତ ମୋର ଯେଉଁ ତିକ୍ତ ମଧୁର ସମ୍ପର୍କ ଥିଲା, ସେ ବିଷୟରେ ସେ କିଛିଟା ଅବଗତ ଥିଲେ । ତେଣୁ ମୋତେ ଦେଖୁ ଦେଖୁ ସେ ପୁରୁଣା ହାକିମଙ୍କ ବଦଳି ଓ ନୂଆ ହାକିମଙ୍କ କାର୍ଯ୍ୟଭାର ଗ୍ରହଣ କରିବା ଖବରଟା ଜଣାଇଦେଲେ । କିନ୍ତୁ ମୋର ସେଭଳି କୌଣସି ପ୍ରତିକ୍ରିୟା ପ୍ରକାଶ ପାଇଲା ନାହିଁ । ମୁଁ ଜାଣିଥିଲି, ତେଣ୍ଡରାରେ ମୋର ଦାନାପାଣି ଯେତେଦିନ ଅଛି, ମୋତେ ସେତେଦିନ ସେଠାରେ ରହିବାକୁ ହିଁ ପଡ଼ିବ ।

ସୁନ୍ଦରଗଡ଼ରେ ପହଞ୍ଚି ମୁଁ ନୂଆ ହାକିମଙ୍କୁ ଅଫିସ୍‌ରେ ଭେଟିଲି । ସେ ପୂର୍ବରୁ ସୁନ୍ଦରଗଡ଼ ଜିଲ୍ଲାରେ ଅନେକ ଦିନ ଥିଲେ । ତେଣୁ ତାଙ୍କ ସହିତ ମୋର ବେଶ୍ ପରିଚୟ ଥିଲା । ସେ ଦେବଗଡ଼ରେ ଥିବାବେଳେ ଥରେ ତାଙ୍କରି ବସାରେ ମୁଁ ରାତ୍ରିଯାପନ କରିଥିଲି ଏବଂ ସେତିକିବେଳେ ମୋ ଚାକିରୀ ଜୀବନର ଝଡ଼ଝଞ୍ଜା ବିଷୟରେ ମୋ'ଠାରୁ ଶୁଣିଥିଲେ । ତେଣୁ ଏଥର ସାକ୍ଷାତବେଳେ ମୋତେ ଆଉ କିଛି କହିବାକୁ ପଡ଼ିଲା ନାହିଁ । ମୋତେ ଦେଖିବା ମାତ୍ରେ ତାଙ୍କର ସ୍ମୃତିପଟରେ ସବୁକଥା ନାଚି ଉଠିଲା । ଆଶ୍ୱାସନାର ବାଣୀ ଶୁଣି ମୁଁ ଫେରିଗଲି ମୋର କର୍ମଭୂମିକୁ ।

ସେତେବେଳକୁ ପଦୋନ୍ନତି ପାଇଁ ମୋର ଯୋଗ୍ୟତା ଆସି ଯାଇଥାଏ ଏବଂ ପଦ ଖାଲି ପଡ଼ିଥାଏ ହାକିମଙ୍କ ନିଜ ଅଫିସ୍‌ରେ । ଯଦିଓ ତାହା ପୂରଣ କରିବାକୁ ପୁରୁଣା ହାକିମ ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ । ଗୋଟିଏ ପ୍ରୋସିଡ଼ିଂ ଅମୀମାଂସିତ ଥାଇ ପଦୋନ୍ନତି ଦେଲେ କାଳେ ଭବିଷ୍ୟତରେ କୌଣସି ଅସୁବିଧା ହେବ, ଏଇଥିପାଇଁ ବିନା କୈଫିୟତ୍‌ରେ ତାକୁ ସବୁଦିନ ପାଇଁ ଶୀତଳ ଭଣ୍ଡାରରେ ବାନ୍ଧି ରଖି ଦିଆଗଲା । ତା'ପରେ ମୁଁ ପଦୋନ୍ନତି ପାଇଲି । ୧୯୮୭ ମାର୍ଚ୍ଚ ୧୨ ତାରିଖରେ ସୁନ୍ଦରଗଡ଼ରେ ମୁଁ ମୋର ନୂତନ କାର୍ଯ୍ୟଭାର ଗ୍ରହଣ କଲି ।

ଦିନକର ପ୍ରାତଃପୂଜା ସମୟରେ ମୁଁ ଠାକୁରଙ୍କର "ଅପ୍ରାକୃତ ପ୍ରେମ ମୂର୍ତ୍ତି ହେ ବାଞ୍ଛା କଳପତରୁ, ପ୍ରେମ କଳ୍ପତରୁ କୃଷ୍ଣ ହେ ତୁମେ ଜଗତ୍‌ଗୁରୁ" ଭଜନଟି ପଢୁଥାଏ । ତହିଁରେ ଥିବା ଦୁଇଟି ପଦ ବିଶେଷ କରି ଦୁଇଟି ଶବ୍ଦ ଉପରେ ମୋର ନଜର ରହିଗଲା । ସେ ପଦ ଦୁଇଟି ହେଲା—

"ଫିଙ୍ଗିଦେଲେ ବଳେ ପଶିବି ଅନ୍ୟେ ନାହିଁ ମୋ' ମନ,
ମୁହିଁ ସିନା ନାଥ ଚାତକ ଆପଣ ନବଘନ ।"

× × ×

"କର୍ମର ଫଳଦାତା ସିନା ହୋଇଛ ବାସୁଦେବ,
ଯା'ର ଫଳରେ ବାଞ୍ଛା ନାହିଁ ତାକୁ କି ଫଳ ଦେବ ?"

ମନେ ମନେ ଠାକୁରଙ୍କୁ ଜଣାଇଲି – ଠାକୁରେ ! ୧୯୬୩ ମସିହାରେ ଅପ୍ରକଟ ହେବା ପୂର୍ବରୁ ଏ ଭଜନ ତୁମେ କେବେ ଲେଖିଥିଲ ସିନା, କିନ୍ତୁ ଆଜି ୧୯୮୭ ମସିହାରେ ମୁଁ ଦେଖୁଛି, ଏ ଭଜନ ଖାସ୍ ମୋରି ପାଇଁ ଲେଖା ଯାଇଛି । ତୁମ ଅଧୀନରେ କାମ କରିବାର ଆଗ୍ରହ ମୋର ଭାଙ୍ଗିଗଲା । ତେଣୁ ମୋତେ ବଦଳିକର – ଏଇ ଅପ୍ରିୟ ସତ୍ୟକଥା ଲେଖିଥିଲି ବୋଲି ତୁମେ 'ବାସୁଦେବ' ରୂପରେ ମୋତେ ହଇରାଣ କରିବାକୁ ଅନେକ ଚେଷ୍ଟା କଲ । କିନ୍ତୁ ପାରିଲ ନାହିଁ । ଯେହେତୁ ମୋର ଫଳବାଞ୍ଛା ନ ଥିଲା । ପୁଣି ସବୁ ବାଧାବିଘ୍ନ ସତ୍ତ୍ୱେ ଯେହେତୁ ମୁଁ ଅନ୍ୟ କାହାରି ଆଶ୍ରୟ ନ ନେଇ କେବଳ ତୁମରି ପଦପଙ୍କଜରେ ଶରଣ ପଶିଛି, ତେଣୁ ତୁମେ 'ନବଘନ' ରୂପରେ ଅଳ୍ପ ସମୟ ପାଇଁ ହେଲେ ବି ଆସିଲ ଏବଂ ଚାତକରୂପୀ ଏ ଦୀନହୀନ ଅକିଞ୍ଚନ ବଞ୍ଚିଲା ।

କୌତୂହଳର ବିଷୟ ଏହି ଯେ 'ନବଘନ' ନାମଧାରୀ ମୋର ଏ ନୂଆ ହାକିମ ମାତ୍ର ଗୋଟିଏ ମାସ ପାଇଁ ଆସିଥିଲେ ଏବଂ ମୋ କାମ ସାରିବା ପରେ ଚାକିରୀରୁ ଅବସର ଗ୍ରହଣ କଲେ । ଏପରିକି ମୁଁ ସୁନ୍ଦରଗଡ଼ରେ କାର୍ଯ୍ୟଭାର ଗ୍ରହଣ କଲାବେଳକୁ ସେ ଆଉ ଚାକିରୀରେ ନ ଥିଲେ । ଠାକୁର ଶ୍ରୀ ଅଭିରାମ ଲେଖିଲେ—

"ଚାତକ ଭୂମିରେ ଘନ ଶୂନ୍ୟରେ,
ଚାତକ ରହିଛି ଘନ ଧ୍ୟାନରେ,
ଶ୍ୟାମଘନ ଯଦି ବୃଷ୍ଟି ନ କର,
ଚାତକ ମରିଲେ ନିନ୍ଦା କାହାର ?
—କୃଷ୍ଣ ହେ ! କୃପା ବରଷା କର ।"

ଚାତକ କେବେ ମରିନାହିଁ କି ମରିବ ନାହିଁ– ଏହା ଧ୍ରୁବ ସତ୍ୟ, ତା' ନ ହେଲେ ନବଘନକୁ ପୁଣି ନିନ୍ଦା ଲାଗିବ ଯେ !



# ଗୁରୁଶକ୍ତିର ଅଦ୍ଭୁତ କ୍ରିୟା

ସନାତନ ଧର୍ମରେ ବହୁ ମତ ଓ ବହୁ ପଥ ଥିଲେ ହେଁ 'ଗୁରୁବାଦ' ହେଉଛି ଏକମାତ୍ର ସାଧାରଣ କ୍ଷେତ୍ର ଯେଉଁଠି ସମସ୍ତେ ମିଳିତ ହୁଅନ୍ତି । ଗୁରୁଙ୍କ ମହିମା ଗାନରେ ଶତମୁଖ ହୋଇ ଉଠନ୍ତି । ଗାଇ ଉଠନ୍ତି ଜଗଦ୍‌ଗୁରୁ ଜଗନ୍ନାଥଙ୍କ ବନ୍ଦନା ସମବେତ କଣ୍ଠରେ–

"ମନ୍ନାଥ ଶ୍ରୀଜଗନ୍ନାଥ ମଦ୍‌ଗୁରୁ ଶ୍ରୀଜଗଦ୍‌ଗୁରୁ ।
ମଦାତ୍ମା ସର୍ବଭୂତାତ୍ମା ତସ୍ମୈ ଶ୍ରୀ ଗୁରବେ ନମଃ ॥"

କାରଣ ସମସ୍ତେ ସ୍ୱୀକାର କରନ୍ତି ଯେ ବିନା ଗୁରୁରେ ଭଗବତ୍ ରାଜ୍ୟର ସୀମା ସ୍ପର୍ଶ କରିବା ସମ୍ପୂର୍ଣ୍ଣ ଅସମ୍ଭବ । ପୁଣି ସେ ଗୁରୁ ଆଉ କେହି ନୁହନ୍ତି, ସ୍ୱୟଂ ଭଗବାନ । ତେଣୁ ସ୍ଥୂଳତଃ ନାମ, ରୂପ, ସାଧନଧାରା, ପ୍ରଚାରିତ ମନ୍ତ୍ର ଇତ୍ୟାଦି ପୃଥକ୍ ପୃଥକ୍ ହୋଇଥିଲେ ମଧ୍ୟ ଗୁରୁ ଏକ ଛଡ଼ା ଦୁଇ ହୋଇ ନ ପାରନ୍ତି । ଠାକୁର ଶ୍ରୀ ଅଭିରାମଙ୍କ ଭାଷାରେ– "ଏକଇ ଗୁରୁ ଜଗନ୍ନାଥ, ତା' ବିନୁ କେ ହେବ ସମର୍ଥ ।" ଶିଷ୍ୟର ଆଧାର, ଅଧିକାର ଓ ରୁଚି ଅନୁକୂଳ ସାଧନ ଧାରା ପ୍ରଦାନ ପୂର୍ବକ ତା'ର କଲ୍ୟାଣ କରିବା ନିମନ୍ତେ ଗୁରୁଙ୍କୁ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ରୂପରେ ଅବତରଣ କରିବାକୁ ପଡ଼େ । ଗୁରୁଙ୍କର ଏହି ରୂପ ପରିଗ୍ରହ ଯେଉଁମାନଙ୍କ ପାଇଁ ଉଦ୍ଦିଷ୍ଟ, କେବଳ ସେହି ନିର୍ଦ୍ଦିଷ୍ଟ ଶ୍ରେଣୀର ଭକ୍ତମାନେ ହିଁ ତାଙ୍କଦ୍ୱାରା ଆକୃଷ୍ଟ ହୁଅନ୍ତି । ତାଙ୍କଦ୍ୱାରା ଉପଦିଷ୍ଟ ହୋଇ ଅଧ୍ୟାତ୍ମ ରାଜ୍ୟରେ ପ୍ରବେଶ କରନ୍ତି । ଯାହାକୁ କହନ୍ତି "ଦୀକ୍ଷା" । ତେଣୁ ବାସ୍ତବ କ୍ଷେତ୍ରରେ ଗୁରୁଙ୍କର ଶକ୍ତି ଶିଷ୍ୟଠାରେ କ୍ରିୟାଶୀଳ ହୁଏ ଏହି ଦୀକ୍ଷା ଗ୍ରହଣ ପରଠାରୁ । ଜନ୍ମ ଜନ୍ମାନ୍ତରର ପ୍ରାରବ୍ଧ ଖଣ୍ଡନ କରି ଗୁରୁ ଶିଷ୍ୟର କର୍ମଚକ୍ର ନିୟନ୍ତ୍ରଣ କରନ୍ତି । ସମସ୍ତ ସ୍ୱାଧୀନତା ହରାଇ ଶିଷ୍ୟ ସେଇ ମୁହୂର୍ତ୍ତରୁ ସାଜେ ଗୁରୁଙ୍କ ହସ୍ତର ଏକ କ୍ରୀଡ଼ନକ । ଥାଇପାରନ୍ତି ଗୁରୁ ଲକ୍ଷ ଯୋଜନ ଦୂରରେ, ମାନୁଷୀଲୀଳା ବିଗ୍ରହ ପରିତ୍ୟାଗ ପୂର୍ବକ ହୋଇପାରନ୍ତି ଗୁରୁ ସୂକ୍ଷ୍ମ ଶରୀରଧାରୀ । କିନ୍ତୁ ତଥାପି ଗୁରୁଙ୍କର ଶକ୍ତି ଅତି ଅଦ୍ଭୁତ ଭାବରେ କ୍ରିୟା କରୁଥାଏ ଶିଷ୍ୟ ଜୀବନରେ । ଯାହା ବୁଝିବା ଶିଷ୍ୟ ପକ୍ଷରେ ସମ୍ଭବ ହୁଏନା । ତେଣୁ ଅନ୍ୟାନ୍ୟ ସାଧାରଣ ମଣିଷ ପରି ଗୁରୁ ଜନ୍ମ ହୁଅନ୍ତି, ମୃତ୍ୟୁବରଣ କରନ୍ତି– ଇତ୍ୟାଦି ଏକ ସମ୍ପୂର୍ଣ୍ଣ ଭ୍ରାନ୍ତ ଧାରଣା । ଯଦି ତାହା

ହେଉଥାନ୍ତା ତେବେ ଗୁରୁଙ୍କ ଦେହାବସାନ ପରେ ଆଉ କେହି ଗୁରୁ ଆଶ୍ରମକୁ ଯାଉ ନ ଥାନ୍ତେ କି ଗୁରୁମୂର୍ତ୍ତି ପୂଜା ଅର୍ଚ୍ଚନା କରୁ ନ ଥାନ୍ତେ । ଜ୍ଞାତିକୁଟୁମ୍ବଙ୍କ ମୃତ୍ୟୁରେ ସ୍ନାନଶୌଚାଦି କରି ସେମାନଙ୍କୁ ଭୁଲିବାର ଚେଷ୍ଟା କଲା ପରି ଗୁରୁଙ୍କ ଦେହାବସାନ ପରେ ଗୁରୁମୂର୍ତ୍ତିଙ୍କୁ ଜଳରେ ବିସର୍ଜନ ଦେଇ ଅନ୍ୟ ଗୁରୁ ଖୋଜୁଥା'ନ୍ତେ ।

କିନ୍ତୁ ବନ୍ଧୁ! କଥାଟା ତାହା ନୁହେଁ । ଗୁରୁ କେବଳ ଏଇ ଗୋଟିଏ ଜନ୍ମର ନୁହନ୍ତି । ସେ ଜନ୍ମଜନ୍ମାନ୍ତରର ଗୁରୁ । ଠାକୁର ଶ୍ରୀ ଅଭିରାମ ଲେଖିଲେ–

"ପ୍ରତି ଯୁଗେ ପ୍ରତି ଜନ୍ମେ ତୁମ୍ଭେ ଗୁରୁ,
ମୁହିଁ ତୁମ୍ଭ ଶିଷ୍ୟ ଅନାଦି କାଳରୁ ।"

ତେଣୁ ବାରମ୍ବାର ଗୁରୁ ପରିବର୍ତ୍ତନ କରିବା, ଆଜି ଏ ସଂସ୍ଥାରୁ କାଲି ସେ ସଂସ୍ଥାରୁ ଦୀକ୍ଷା ଗ୍ରହଣ କରିବା ଭଳି ଅଭ୍ୟାସ ଛାଡ଼ି ଦୃଢ଼ ବିଶ୍ୱାସ ସହିତ ଜଣଙ୍କୁ ଗୁରୁ ରୂପେ ବରଣ କରିବା ଉଚିତ । ଅବଶ୍ୟ ଦୀକ୍ଷା ଗ୍ରହଣ ପୂର୍ବରୁ ବାରମ୍ବାର ପରୀକ୍ଷା କରାଯାଇପାରେ । କିନ୍ତୁ ପରେ ଆଉ ନୁହେଁ ।

ଏକନିଷ୍ଠ ଭାବରେ ସାଧନ ଭିତରେ ବୁଡ଼ି ରହିଲେ ଶିଷ୍ୟ କ୍ରମଶଃ ଅନୁଭବ କରେ ଗୁରୁଶକ୍ତିର ଅଦ୍ଭୁତ କ୍ରିୟା । ଅନୁଭବ କରେ ଗୁରୁଙ୍କର ସଦୟ ଉପସ୍ଥିତି ।

"ମୋର ପାଶେ ପାଶେ ଅଛି ନନ୍ଦନ,
କିମ୍ପା ବସି ମୁଁ କରୁଛି କ୍ରନ୍ଦନ ।"

ଆଉ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଗାଏ–

"ପାଶେ ପାଶେ ଅଛ ଭୁଞ୍ଜାଇ ଭୁଞ୍ଜୁଛ
ତୁମ୍ଭ ବିନା ନାଥ ସଂସାର ଜଳି ।
ଆସ ଜୀବଧନ ଦୁଃଖୀ ସଂଖାଳି

ଆଉ ପ୍ରଭୁ କହନ୍ତି –

"ତୁ ଦେଲେ ମୁହିଁ ଖାଉଥିବି,
ତୋର ଗୁଣ ମୁଁ ଗାଉଥିବି ।"

ଏ ଅତି ନିଗୂଢ଼ ସମ୍ବନ୍ଧର କଥା । ମନ ସେଭଳି ସ୍ତରକୁ ନ ଗଲେ ଧାରଣା କରିବା ଅସମ୍ଭବ ।

ଏଇଭଳି ଜଣେ ଐଶୀଶକ୍ତିଧାରୀ ପରମ ପୁରୁଷଙ୍କୁ ଯଦି କେହି ଗୁରୁ ରୂପରେ ପାଇଯାଏ, ତେବେ ଚିନ୍ତାର ଅନ୍ୟ କୌଣସି କାରଣ ନାହିଁ । କେବଳ କାୟମନୋବାକ୍ୟରେ ତାଙ୍କରି ଉପଦେଶ ପାଳନଦ୍ୱାରା ହିଁ ଶିଷ୍ୟର ପରମଗତି ଲାଭ ହେବ । ଆଉ ଯଦି ପାଳନ ନ କରିପାରେ ତଥାପି ମଧ ନିରାଶ ହେବାର ନୁହେଁ । ଗୋଟିଏ ହିନ୍ଦୀ ଭଜନରେ ଅଛି–

"ୟାଦ୍ ଆଓ୍ୱେଗା ପ୍ରଭୁକୋ କଭି ନା କଭି,
ଦାସ୍ ପାଓ୍ୱେଗା ପ୍ରଭୁ କୋ କଭି ନା କଭି,
ଐସେ ବିଶ୍ୱାସ ମନ୍‌ମେ ଜମାତେ ଚଲୋ,
କୃଷ୍ଣ ଗୋବିନ୍ଦ ଗୋବିନ୍ଦ ଗାତେ ଚଲୋ ।"

ଠାକୁର ମଧ୍ୟ ଗୋଟିଏ ଭଜନରେ ଲେଖିଛନ୍ତି–

"କହେ ଅଭିରାମ ପରମଶଶୀ, ଶଶୀ ଆଶା ନିଶ୍ଚେ ପାଇବ ଶଶୀ,
ନିଷ୍କଳଙ୍କ ଚନ୍ଦ୍ରେ କଳଙ୍କ ରହିବ ବହିବ ଭକତ ନାଶ ପୌରୁଷ
.... ଆସ ଜୀବଧନ ମୋ' କୋଳେ ବସ ।"

ତେଣୁ ସେଦିନ ନିଶ୍ଚୟ ଆସିବ । କେବଳ ବିଶ୍ୱାସର ସହିତ ଆଗେଇବାର କଥା । ଆଉ ସେଇତକ କରାଇବେ ପରମ କାରୁଣିକ ଗୁରୁଦେବ । ଦୀକ୍ଷାଦାନ ସମୟରୁ ପରା ସେ ଶିଷ୍ୟର ସମସ୍ତ ଦାୟିତ୍ୱ ଗ୍ରହଣ କରିଛନ୍ତି !

ଆଉ ଗୋଟିଏ ଭଜନରେ ଠାକୁର ଲେଖିଛନ୍ତି– "ଗର୍ବ ଛାଡ଼ି ଗର୍ବ କର ମୁଁ ନିତ୍ୟଦାସ କୃଷ୍ଣର ।" ଗର୍ବ କରିବ ତ ଭଗବାନଙ୍କର ନିତ୍ୟଦାସ ରୂପରେ ଗର୍ବ କର । ରୂପ, ଧନ, କ୍ଷମତା ବା ଅନ୍ୟ କୌଣସି ଅନିତ୍ୟ ବସ୍ତୁ ପାଇଁ ନୁହେଁ । ଯଦିଓ ନିତ୍ୟଦାସ ହେବାର ଯୋଗ୍ୟତା ମୋର ଅଦ୍ୟାପି ଆସି ନାହିଁ ବା କେବେ ସେ ଯୋଗ୍ୟତା ମୋର ଆସିବ ମୁଁ ଜାଣେନା, ତଥାପି ସେହି ପରମ ପୁରୁଷଙ୍କୁ ଗୁରୁ ରୂପରେ ପାଇ ମୁଁ ଗର୍ବିତ । ମୋର ମାତା ପିତା ଧନ୍ୟ । ମୋ ଜୀବନ ଧନ୍ୟ । ମୋର ଗତି ବିଷୟରେ ମୁଁ ନିଶ୍ଚିନ୍ତ ।

ଶ୍ରୀ ଶ୍ରୀ ଠାକୁରଙ୍କ ଶକ୍ତି ବିଭୂତି କେବଳ ମୁଁ କାହିଁକି, ତାଙ୍କର ଆଶ୍ରିତ ଅଗଣିତ ଶିଷ୍ୟଭକ୍ତ ଅଳ୍ପେ ବହୁତେ ପ୍ରାୟ ସମସ୍ତେ ଅନୁଭବ କରିଛନ୍ତି ନିଜ ନିଜ ଜୀବନରେ । ତେଣୁ ମୁଁ ବା ଅଧିକ କ'ଣ କହିବି ? କେବଳ ଅଙ୍ଗେ ନିଭେଇଥିବା ଗୋଟିଏ ଛୋଟ ଘଟଣା ମୁଁ ଏଠାରେ କହୁଛି । ଆଶା, ଅନୁଭବୀ ଭକ୍ତଙ୍କ ପାଇଁ ଏହା ଆନନ୍ଦଦାୟକ ହେବ । ଅନ୍ତତଃ ମୁହୂର୍ତ୍ତକ ପାଇଁ ପ୍ରଭୁଙ୍କ ସ୍ମୃତି ମନରେ ଜାଗ୍ରତ ହେବ ତ ! ବାସ୍, ସେତିକି ମୋ ପାଇଁ ଯଥେଷ୍ଟ । ମୁଁ ଆଉ କିଛି ଚାହେଁନା ।

ମୁଁ ସେତେବେଳେ ବଣେଇ ଅନ୍ତର୍ଗତ ତେଣ୍ଡରାରେ ଥାଏ । ପରିବାର ଥାଆନ୍ତି ସୁନ୍ଦରଗଡ଼ରେ । ମାସରେ ଥରଟିଏ ଆସି ସେମାନଙ୍କର ଖବର ବୁଝିଯାଏ । ଏମିତି ଥରଟିଏ ଆସିଛି । ହଠାତ୍ ମନ କ'ଣ ହେଲା କେଜାଣି, ବଡ଼ି ଭୋର୍‌ରୁ ଉଠି ତେଣ୍ଡରା ଯିବାକୁ ବାହାରି ପଡ଼ିଲି । ଯଦିଓ ପାଞ୍ଚବର୍ଷ ରହଣି ଭିତରେ କେବେ ବି ସେମିତି ଯାଇ ନାହିଁ । କଟକ-ଭୁବନେଶ୍ୱର ଆଡୁ ଆସୁଥିବା ଗୋଟିଏ ଘରୋଇ ବସ୍‌ରେ ବସିଗଲି । ରାଜଗାଙ୍ଗପୁର ପାଖରେ ପହଞ୍ଚିଲା ବେଳକୁ ଟିକେ ଟିକେ ଫର୍ଚ୍ଚା ହୋଇ ଆସିଲାଣି । କାଚଫାଙ୍କରେ ସୁଲୁସୁଲିଆ ଥଣ୍ଡାପବନ ବସ୍ ଭିତରକୁ ପଶି ଆସୁଥାଏ । ଏତିକିବେଳେ ବସ୍‌ଚାଳକ

କ୍ୟାବିନ୍‌ର ପଛ ଓ ଯାତ୍ରୀମାନଙ୍କ ସାମ୍‌ନାରେ ଥିବା ନୀଳାଚଳ ନାଥ ଜଗନ୍ନାଥଙ୍କ ନିକଟରେ ଥିବା ରଙ୍ଗୀନ୍ ଆଲୁଅଟି ଜାଳି ଦେଇ ଅନୁପ୍ ଜଲୋଟାଙ୍କ ହିନ୍ଦୀ ଭଜନ୍ କ୍ୟାସେଟ୍‌ଟିଏ ଲଗାଇଦେଲା । ଆହା କି ସୁନ୍ଦର ସେ ଭଜନ । ଲବଣୀଚୋର କାହ୍ନୁ ମା ଯଶୋଦାଙ୍କ ନିକଟରେ ସଫେଇ ଦେଉଛନ୍ତି– ମା' ମୁଁ ଲହୁଣୀ ଖାଇ ନାହିଁ ।

"ମୈୟା ମୋରି, ମେଁ ନେହିଁ ମାଖନ ଖାୟୋ ।"

ସୁଲଳିତ କଣ୍ଠସାଙ୍ଗକୁ ଅପୂର୍ବ ଭାବବ୍ୟଞ୍ଜନା ଭଜନର ମାଧୁର୍ଯ୍ୟକୁ ଶତଗୁଣ ବଢ଼ାଇ ଦେଇଥିଲା । ମନ ବିଚରଣ କରୁଥିଲା ଏକ ଅତୀନ୍ଦ୍ରିୟ ରାଜ୍ୟରେ । ପରେ ଯଦିଓ ସେ ଭଜନଟି ମୁଁ ବହୁବାର ଶୁଣିଛି, ସେଦିନ ତାହା ଥିଲା ମୋ ପାଇଁ ସମ୍ପୂର୍ଣ୍ଣ ନୂଆ । ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଭକ୍ତିପୂତ ପ୍ରଣାମ ନିବେଦନ କଲି । ପ୍ରଭୁଙ୍କ ବାଲ୍ୟଲୀଳା ସ୍ମରଣ କରୁ କରୁ ଅଜାଣତରେ ଅଶ୍ରୁପ୍ଲାବିତ ହେଲା ଗଣ୍ଡଯୁଗଳ । ଭଜନ ସରିଲା ବେଳକୁ ବସ୍ ପହଞ୍ଚିଥିଲା କାଂସବାହାଲ ପାଖରେ । ସିନ୍ଦୂରା ଫାଟି ଆସିଥିଲା । ଯାତ୍ରୀମାନଙ୍କ ମଧ୍ୟରୁ ଅଧିକାଂଶ ଉଠି ପଡ଼ିଥିଲେ ମଧ୍ୟ ବସ୍ ଭିତରେ· ପୂର୍ବର ଶାନ୍ତ ପରିବେଶ ଅକ୍ଷୁର୍ଣ୍ଣ ଥିଲା । ଏକପ୍ରକାର ତନ୍ମୟ ଅବସ୍ଥାରେ ମୋର ଅବଶିଷ୍ଟ ଯାତ୍ରାପଥ ଅତିକ୍ରାନ୍ତ ହେଲା । ରାଉରକେଲା ବସ୍‌ଷ୍ଟାଣ୍ଡରେ ଓହ୍ଲାଇ ଦେଖିଲି ବଣେଇ ବାଟ ଦେଇ ଯାଉଥିବା କୋଇଡ଼ା ବସ୍ ଠିଆ ହୋଇଛି । ସଙ୍ଗେ ସଙ୍ଗେ ସେଥିରେ ବସିଗଲି । ତୁମୁକେଲା ଘାଟରେ ବସ୍‌ରୁ ଓହ୍ଲାଇ ଧାଇଁଗଲି ଡଙ୍ଗା ପାଖକୁ । ବଡ଼ ଡଙ୍ଗା ଛାଡ଼ିବାକୁ ଡେରିଥାଏ । କିନ୍ତୁ ଗୋଟିଏ ଛୋଟ ଡଙ୍ଗା ଥାଏ ଛାଡ଼ିବା ଉପରେ । ମାତ୍ର ଜଣେ ଦୁଇଜଣ ଯାତ୍ରୀ ବସିଥାନ୍ତି । ତେଣୁ ବିନା ଦ୍ୱିଧାରେ ଝରା (ନାଉରୀ) ତା' ଡଙ୍ଗାରେ ମୋତେ ସବାର କଲା ।

ସୁନ୍ଦରଗଡ଼ରୁ ତେଣ୍ଡରା ବାଟରେ ପ୍ରାୟ ଅଧିକାଂଶ ସମୟ ମୁଁ ବଣେଇରେ ରାତ୍ରିଯାପନ କରେ ବାଣେଶ୍ୱର ମନ୍ଦିର ସନ୍ନିକଟ ବାବାଜୀ ଶ୍ରୀ ବାଳକ ଦାସଙ୍କ ମଠରେ । ସେଥିରେ ପୁଣି ରାତି ଆଠଟା ନଅଟା ପୂର୍ବରୁ କେବେ ବି ପହଞ୍ଚେ ନାହିଁ । କିନ୍ତୁ ଏଥର ସକାଳ ଓଳି ପୁଣି ଅଗାଧୁଆ ମୋତେ ପହଞ୍ଚିବା ଦେଖି ବାବା ବିସ୍ମିତ ହେଲେ । ସୁନ୍ଦରଗଡ଼ରୁ ଆସିଲି ଓ ତେଣ୍ଡରା ଯିବି ବୋଲି ଶୁଣିଲା ପରେ ବାବା କହିଲେ– ଯା ଯା, ଜଲ୍‌ଦି ଗାଧୁଆ ପାଧୁଆ କରି ଆସ । ପ୍ରସାଦ ଟିକେ ପାଇ ଦେଇ ବାହାରି ଯିବ । ଆଜି ଗୋଟାଏ ନୂଆ ବସ୍ ଏବେ ଆସିଛି । ଆଉ ଟିକିଏ ପରେ ଦେବଗଡ଼ ଫେରିବ ।

ମୁଁ କିଛି ବୁଝି ପାରୁ ନ ଥିଲି । କେବଳ ଯନ୍ତ୍ର ପରି ସବୁ କରି ଯାଉଥିଲି । ବାବାଙ୍କ କଥା ଅନୁସାରେ ସବୁ କାମ ସାରି ବସ୍ ଧରିଲି । ବସ୍‌ଷ୍ଟାଣ୍ଡରୁ ପ୍ରାୟ ପାଞ୍ଚ କିଲୋମିଟର ଜଙ୍ଗଲ ଭିତରେ ଚାଲି ଚାଲି ଗଲେ ପଡ଼ିବ ତେଣ୍ଡରା ହାଇସ୍କୁଲ । ଯାହାହେଉ ଟାଇଁ ଟାଇଁ ଖରାରେ ଗୋଟିଏ ଗୋଟିଏ ଚାଲିଲି । ପ୍ରାୟ ସାଢ଼େ ଦି'ଟା ଆଡ଼କୁ ସ୍କୁଲରେ ପହଞ୍ଚିଲି । ସକାଳୁଆ ସ୍କୁଲ ବହୁ ଆଗରୁ ଛୁଟି ହୋଇ ଯାଇଥାଏ । ସ୍କୁଲରେ ଥାଆନ୍ତି କେବଳ ଜଣେ

ଦୁଇଜଣ ଶିକ୍ଷକ ଓ ଛାତ୍ରାବାସରେ ଅଳ୍ପ କେତେଜଣ ଛାତ୍ର । ଶିକ୍ଷକମାନେ ମୋତେ ଦେଖି ଆଶ୍ଚର୍ଯ୍ୟ ହେଲେ । ପଚାରିଲେ, "କ'ଣ ଆପଣ ଖବର ପାଇ ନାହାନ୍ତି ?"

ହଠାତ୍ ମୁଁ କିଛି ବୁଝିପାରିଲି ନାହିଁ । ବୋକା ଭଳି ଚାହିଁ ରହିଲି ସେମାନଙ୍କ ମୁହଁକୁ । ତା'ପରେ ସେମାନେ ବୟାନ୍ କଲେ ଶ୍ୱଶୁରଙ୍କ ମୃତ୍ୟୁ ସମ୍ବାଦବାହୀ ଟେଲିଗ୍ରାମର କଥା । ସଙ୍ଗେ ସଙ୍ଗେ ପ୍ରଧାନ ଶିକ୍ଷକଙ୍କ ନିକଟକୁ ଖବର ଦିଆଗଲା । ସେ ଆସି ମୋ ହାତକୁ ବଢ଼ାଇଦେଲେ ଟେଲିଗ୍ରାମଟି ଏବଂ ଦୁଃଖ ପ୍ରକାଶ କଲେ ସୁନ୍ଦରଗଡ଼କୁ ଖବର ଦେଇ ପାରି ନ ଥିବାରୁ । ଅବଶ୍ୟ ଏଥିରେ ତାଙ୍କର କିଛି ଦୋଷ ନ ଥିଲା । ମୋ ଦେହ ହଠାତ୍ ଖରାପ ହେବାରୁ ମୁଁ ନିର୍ଦ୍ଦିଷ୍ଟ ସମୟରେ ସୁନ୍ଦରଗଡ଼ରୁ ନ ଫେରି ଅଧିକ ଦୁଇ ଚାରିଦିନ ରହି ଯାଇଥିଲି । ଯାହା ଫଳରେ ସ୍କୁଲର ସମସ୍ତେ ଏକପ୍ରକାର ଧରି ନେଇଥିଲେ ଯେ ମୁଁ ସୁନ୍ଦରଗଡ଼ରେ ଖବର ପାଇ ସେଠାରୁ ସିଧା ଶ୍ୱଶୁର ଘରକୁ ଚାଲିଯାଇଛି । ହିସାବ କରି ଦେଖିଲି ସେଇଦିନଟି ହେଉଛି ନଅ ଦିନ ଓ ତା' ପରଦିନ ଦଶାହ । ବଡ଼ ଜ୍ୱାଇଁ ହିସାବରେ ମୁଁ ସେଦିନ ନିହାତି ଉପସ୍ଥିତ ରହିବା କଥା । ସେଦିନ ସନ୍ଧ୍ୟାରେ ଯାଜପୁର ବସ୍ ନ ଧରିଲେ କୌଣସି ପ୍ରକାରେ ତା' ପରଦିନ ଶୁଦ୍ଧିକ୍ରିୟାରେ ଯୋଗଦେଇ ହେବ ନାହିଁ । ତେଣୁ ଆଉ ଲୁଗାପଟା ନ ବଦଳାଇ ସଙ୍ଗେ ସଙ୍ଗେ ଫେରିଲି ପୁଣି ବସ୍‌ଷ୍ଟାଣ୍ଡକୁ । ଚାରିଟା ବେଳ ବସ୍ ଛାଡ଼ିଦେଲେ ଆଉ ବଣେଇ ଫେରିହେବ ନାହିଁ ଯେ !

ଯାହାହେଉ ଠିକ୍ ସମୟରେ ବଣେଇ ବସ୍ ମିଳିଗଲା । ଘାଟ ପାରି ହୋଇ ତା'ପରେ ଧରିଲି ରାଉରକେଲା ମଙ୍ଗଳପୁର ବସ୍ । ଏଥର ବସ୍ ଚାଲିଲା ତା' ବାଟରେ । ଆଉ ମୁଁ ମନେ ପକାଉଥିଲି ସେଦିନର ଅବିରାମ ଗତିର କଥା । କେଉଁଠି ଟିକିଏ ବିଶ୍ରାମ ନାହିଁ । ସବୁ ଯେପରି ଗୋଟିକ ପରେ ଗୋଟିଏ ଖଞ୍ଜା ହୋଇ ରହିଛି । କୌଣସି ପ୍ରକାରେ ତେଣ୍ଡରା ନ ପହଞ୍ଚିଲେ ଖବର ମିଳିବ ନାହିଁ ଓ ପୁଣି ସେଇଦିନ ତେଣ୍ଡରାରୁ ନ ଫେରିଲେ ଶୁଦ୍ଧିକ୍ରିୟାରେ ଯୋଗ ଦେଇ ହେବ ନାହିଁ । ବୋଧହୁଏ ଏଇଥିପାଇଁ ପ୍ରଭୁଙ୍କର ଏସବୁ ଯୋଜନା । ନ ହେଲେ ବଡ଼ି ଭୋର୍‌ରୁ ବିଛଣାରୁ ଉଠାଇ ଅଗାଧୁଆ ବସ୍‌ରେ ବସାଇ ଆଣି ଥାଆନ୍ତେ କାହିଁକି ? ବଣେଇକୁ ନୂଆ ବସ୍ ଚଳେଇଥାନ୍ତେ କାହିଁକି ? ଆଉ ଯିଏ ଯାହା ଭାବନ୍ତୁ ପଛେ, ମୁଁ ଜାଣୁଛି ଏ ସବୁ ବ୍ୟବସ୍ଥା କେବଳ ମୋରି ପାଇଁ । ତା' ନ ହୋଇଥିଲେ ସେ ବସ୍ ମାତ୍ର ସେଇ ଗୋଟିଏ ଦିନ ଚାଲି ତା' ପରଦିନଠାରୁ ବନ୍ଦ ହୋଇ ଯାଇଥାନ୍ତା କାହିଁକି ?

ସବୁ ସେଇ କୃପାମୟ ଗୁରୁଦେବଙ୍କର କୃପା । ସବୁ ସେଇ ଗୁରୁଶକ୍ତିର ଅଦ୍ଭୁତ କ୍ରିୟା । ସେ ଯଦି ସେଇତକ ନ କରିବେ ତେବେ ତାଙ୍କର ଆଶ୍ରିତଜନ ଅନ୍ୟମାନଙ୍କ ପାଖରେ ନିନ୍ଦିତ ହେବେ ସିନା ! ଶିଷ୍ୟ ତ ଅଜ୍ଞ କିନ୍ତୁ ଗୁରୁଦେବ ଯେ ସର୍ବାନ୍ତର୍ଯ୍ୟାମୀ ।



# ଚନ୍ଦନ ଚାପରେ ଗୁରୁଚରଣ

ଠାକୁରେ ଲେଖିଛନ୍ତି– "ଯା'ର ଦାସ୍ୟକର୍ମ କଲେ ଦିବାନିଶି, ପରମ ଆନନ୍ଦ ଲାଭ ହୁଏ ଆସି।" ସଚ୍ଚିଦାନନ୍ଦ ଭଗବାନଙ୍କର ଅଂଶ ହୋଇଥିବାରୁ ଜୀବ ମାତ୍ରକେ ସମସ୍ତେ ପରମାନନ୍ଦର ଅଧିକାରୀ। ପରମାନନ୍ଦ ପ୍ରାପ୍ତି ତା'ର ଜନ୍ମଗତ ଅଧିକାର। କାରଣ ସେଇ ଆନନ୍ଦମୟ ପରମପିତା ହେଉଛନ୍ତି ତା'ର ପିତା ଓ ସେ ତାଙ୍କରି ସନ୍ତାନ। ପିତାଙ୍କ ଧନରେ ସନ୍ତାନର ଅଧିକାର ହେଉଛି ଜନ୍ମସିଦ୍ଧ। ସେଇ ଅଖଣ୍ଡାନନ୍ଦ ପରମାନନ୍ଦ ପ୍ରଭୁଙ୍କ ଆନନ୍ଦରୁ ତା'ର ସୃଷ୍ଟି। ତାଙ୍କରି ଆନନ୍ଦରେ ତା'ର ସ୍ଥିତି ଓ ତାଙ୍କରି ଆନନ୍ଦରେ ହିଁ ତା'ର ବିଲୟ। ସଂସାରର ମଳିନତା ସ୍ପର୍ଶ କରି ନ ଥିବା ଗୋଟିଏ ଛୋଟ ଶିଶୁର ଧୂଳିଖେଳ ପରି ପ୍ରଭୁଙ୍କର ଆନନ୍ଦ। ଧୂଳି ଘର ତିଆରି କରିବାରେ ଯେମିତି ଆନନ୍ଦ, ମିଛିମିଛିକା ଭାତଡାଲି କରି ଖାଇବାରେ ସେମିତି ଆନନ୍ଦ ଓ ଖେଳ ଶେଷରେ ଧୂଳିଘର ଭାଙ୍ଗି ମା' କୋଳକୁ ଫେରିଯିବାରେ ମଧ୍ୟ ସେତିକି ଆନନ୍ଦ। ଗଢ଼ିବା, ଭାଙ୍ଗିବା ଓ ପୁଣି ଗଢ଼ିବା ହେଉଛି ପ୍ରଭୁଙ୍କର ନିତ୍ୟଲୀଳା।

ଜୀବ କିନ୍ତୁ ଏ ଲୀଳାର ରହସ୍ୟ ବୁଝିପାରେନା। ମିଛମାୟାର ଏ ସଂସାରକୁ ସତ୍ୟ ମଣି ସେଥିରେ ମଜ୍ଜିଯାଏ। ବିଷୟଭୋଗ ଭିତରେ ସେ ଖୋଜେ ଆନନ୍ଦ, ଯାହା ତା' ପାଇଁ ସବୁଦିନ ଅପ୍ରାପ୍ତ ହୋଇ ରହିଯାଏ। ସଂସାର ଭିତରୁ ସେ ଯେଉଁ ଆନନ୍ଦ ପାଏ, ତାହା ପ୍ରକୃତ ଆନନ୍ଦ ନୁହେଁ– ଆନନ୍ଦର ଏକ ଝଲକ୍, ଏକ ଆଭାସ ମାତ୍ର। ତାହା କ୍ଷଣସ୍ଥାୟୀ। କିନ୍ତୁ ଗୁରୁକୃପାରୁ ଜୀବ ଯେତେବେଳେ ଭଗବତ୍ ପଥର ପଥିକ ହୁଏ, ସେହି ପରମ ପଦ ପ୍ରାପ୍ତ ହୁଏ, ସେତେବେଳେ ଯାଇ ସେ ପାଏ ପ୍ରକୃତ ଆନନ୍ଦ। ଯାହା ପାଇଲା ପରେ ତା'ର ପାଇବାକୁ ଆଉ କିଛି ବାକି ନ ଥାଏ। ଭଗବାନଙ୍କ ପାଦପଦ୍ମରେ ଯେଉଁ ଆନନ୍ଦ ଅଛି, ସେ ଆନନ୍ଦ ସଂସାରର ଅନ୍ୟ କୌଣସିଠାରେ ନାହିଁ ଓ ସେହି ହେତୁରୁ ସେ ଆନନ୍ଦକୁ କୁହାଯାଏ ପରମାନନ୍ଦ। ସେହି ଆନନ୍ଦକୁ କେହି ବ୍ରହ୍ମାନନ୍ଦ କହନ୍ତି ତ କେହି ସଦାନନ୍ଦ କହନ୍ତି। କେହି ଆତ୍ମାନନ୍ଦ କହନ୍ତି ତ କେହି ପ୍ରେମାନନ୍ଦ କହନ୍ତି। ହେଲେ ସାରକଥା ହେଲା ସେହି ଆନନ୍ଦର ଆସ୍ୱାଦନ କଲାପରେ ଭକ୍ତ ଏକ ମଦମତ୍ତ ଅବସ୍ଥାକୁ

ପ୍ରାପ୍ତ ହୁଏ ଓ ତହିଁରୁ ସାମାନ୍ୟ ବିଚ୍ୟୁତି ତା' ପକ୍ଷରେ ହୁଏ ଘୋର ଅସହ୍ୟ । ସାମାନ୍ୟ ବିଚ୍ଛେଦ ତଥା ବିସ୍ମରଣ ତାକୁ କୋଟିଯୁଗ ସମ ବୋଧହୁଏ । ଚରମ ବ୍ୟାକୁଳତାରେ ମନପ୍ରାଣ ଆନ୍ଦୋଳିତ ହୁଏ । ତାଙ୍କରି ମିଳନ ବିନା ଅନ୍ୟ କୌଣସି ଉପଚାର ଏ ରୋଗର ଉପଶମ କରିପାରେନା । ତେଣୁ ଭକ୍ତ ବାରମ୍ବାର ଧାଇଁଯାଏ କରମଳାକୁ । ଠାକୁରଙ୍କ ସାନ୍ନିଧ୍ୟକୁ । ତାଙ୍କରି ସେବାରେ ନିଜକୁ ନିୟୋଜିତ କରି ସେ ଲାଭ କରେ ପରମାନନ୍ଦ ।

କରମଳା ହେଉଛି ଠାକୁରଙ୍କ ଲୀଳାଧାମ । ଠାକୁରଙ୍କ ପ୍ରକଟ ସମୟରେ ସେଠାରେ କେତେ ଯେ ଲୀଳା ସଙ୍ଘଟିତ ହୋଇଛି, ତା'ର ହିସାବ କେହି ରଖିନି । ରଖିବା ବି ସମ୍ଭବ ନୁହେଁ । ଆଉ ଅପ୍ରକଟ ପରେ ଯେ ଲୀଳା ରଚନା ସରିଯାଇଛି– ଏକଥା ମଧ୍ୟ ନୁହେଁ । ସେତେବେଳେ ପ୍ରକଟ ଲୀଳାର ପ୍ରତ୍ୟକ୍ଷ ଅନୁଭବ କରିବାର ସୌଭାଗ୍ୟ ଲାଭ କରୁଥିଲେ ଅନେକ । କିନ୍ତୁ ଅପ୍ରକଟ ଲୀଳା ସଂଘଟିତ ହେଲା ସୂକ୍ଷ୍ମ ଭାବରେ ।

ଫଳରେ ଅନୁଭବୀ ଭକ୍ତର ଅନୁଭବ ଭିତରେ ତାହା ସୀମାବଦ୍ଧ ରହିଗଲା । "ତା' ଅନୁଭବ ସେ ଜାଣଇ ।" ଅନୁଭୂତି ପ୍ରକାଶ କରିଦେଲେ ଆଉ ଅନୁଭୂତି ହୁଏନା ଏହି ଶ୍ରୀମୁଖବାଣୀ ଅନେକଙ୍କୁ ଅନୁଭୂତି ପ୍ରକାଶ କରିବାକୁ ବାରଣ କରେ । ତେଣୁ କାଗଜ କଲମର ପରିସରକୁ ସେ ଆସିପାରେନା । ଆଉ ଯଦି ଦୈବାତ୍ ଆସିଗଲା ତେବେ ତାହା ହୁଏ ଭକ୍ତ ନିକଟରେ ଅତୀବ ମୂଲ୍ୟବାନ– ଅନ୍ଧର ଲହୁଡ଼ି... କୋଟିନିଧି ସଦୃଶ । ହେଲେ ଲୀଳାର ଅନ୍ତ ନାହିଁ । କୌଣସି ନିର୍ଦ୍ଦିଷ୍ଟ ନୀତିନିୟମ ମଧ୍ୟ ନାହିଁ । ଲୀଳାମୟଙ୍କର ଯେତେବେଳେ ଇଚ୍ଛା ହେଲା ସେ ଚାଲିଆସିଲେ ରଙ୍ଗମଞ୍ଚକୁ । କେତେବେଳେ ଭଗବାନ୍ ରୂପରେ ତ କେତେବେଳେ ଭକ୍ତ ରୂପରେ ।

ବାରମାସରେ ତେରପର୍ବ ଲାଗିଥିଲେ ବି ଧାମର କେତୋଟି ମୁଖ୍ୟ ପର୍ବ ଭିତରୁ ଚନ୍ଦନଯାତ୍ରା ହେଉଛି ଗୋଟିଏ । ଅକ୍ଷି ତୃତୀୟାଠାରୁ ଭଉଁରୀ ପର୍ଯ୍ୟନ୍ତ ଏକୋଇଶି ଦିନ ବ୍ୟାପୀ ଏ ଯାତ୍ରାର ଏକ ସ୍ୱତନ୍ତ୍ର ଆକର୍ଷଣ ଅଛି । ପ୍ରତ୍ୟହ ସନ୍ଧ୍ୟା ଆଳତୀ ପରେ ଠାକୁର ଏକ ଶୋଭାଯାତ୍ରାରେ ଯାଇ ଚନ୍ଦନ ଚାପରେ ବିଜେ କରନ୍ତି ଓ ଚାପ ଖେଳ ପରେ ପୁଣି ଦେଉଳକୁ ଫେରନ୍ତି । ଏକ ସୁସଜ୍ଜିତ ବିମାନରେ ଠାକୁର ଓ ଦୁର୍ଗାମାଧବଙ୍କୁ ଉପବିଷ୍ଟ କଲାପରେ ଆରମ୍ଭ ହୁଏ ଶୋଭାଯାତ୍ରା । ଘଣ୍ଟ, ଘଣ୍ଟା, ମର୍ଦ୍ଦଳ, ବୀର କାହାଳୀ, ତେଲିଙ୍ଗି ବାଜା, ତାଳ ମୃଦଙ୍ଗର ସମ୍ମିଳିତ ବାଦ୍ୟଧ୍ୱନି, ନାନାଦି ନୃତ୍ୟଗୀତ, ରଙ୍ଗବେରଙ୍ଗ ଆଲୋକସଜ୍ଜା, ନାନାଦି ସୁଗନ୍ଧିତ ଅତର ଓ ଚନ୍ଦନ ମିଶ୍ରିତ ଜଳର ପିଚକାରୀ, ଆଲଟ ଚାମର, ଛତାଛତି ଓ ସେବକ ଭୃତ୍ୟ ଗହଣରେ ଚାଲେ ରାଜରାଜେଶ୍ୱରଙ୍କର ରାଜକୀୟ ଶୋଭାଯାତ୍ରା । ଆତସ୍‌ବାଜୀର ଗୁଡୁମ୍ ଗୁଡୁମ୍ ଶବ୍ଦ ସାଙ୍ଗକୁ ତା'ର ରଙ୍ଗବେରଙ୍ଗ ଭେଳିକି ପରିବେଶକୁ ଆହୁରି ବର୍ଣ୍ଣାଢ଼୍ୟ କରିଦିଏ ।

ଯାତ୍ରାର ଅବଧି ଦୀର୍ଘ ଏକୋଇଶି ଦିନ ହୋଇଥିବାରୁ ଆଶ୍ରମକୁ ଭକ୍ତମାନଙ୍କର ଯିବା ଆସିବା ପ୍ରାୟ ଚାଲିଥାଏ । ସନ୍ନ୍ୟାସୀ ସନ୍ନ୍ୟାସିନୀଙ୍କ ମଧ୍ୟରେ ସେବା ବଣ୍ଟନ ହେଲା ପରି ଆଗ୍ରହୀ ଭକ୍ତମାନଙ୍କ ମଧ୍ୟରେ ବି ବିଭିନ୍ନ ସେବା ବଣ୍ଟା ଯାଇଥାଏ । କାହାର ଆଲଟ ସେବା ତ କାହାର ଚାମର ସେବା । କାହାର ଚନ୍ଦନ ଘୋରିବା ସେବା ତ କାହାର ଚନ୍ଦନ ପିଚ୍‌କାରୀ ସେବା । କାହାର କୀର୍ତ୍ତନ ସେବା ତ କାହାର ଭଜନ ସେବା । କାହାର ଅହ୍ଲଣିଆ ସେବା ତ କାହାର ତାମ୍ବୁଳ ସେବା । କାହାର ଆଲୋକ ସେବା ତ କାହାର ଆତସବାଜୀ ସେବା । ଏମିତି ଯେତେ ପ୍ରକାର ସେବା ସବୁ ଗୋଟି ଗୋଟି କରି ବଣ୍ଟା ଯାଇଥାଏ ଭଗବତ୍ ଗୋଷ୍ଠୀଦ୍ୱାରା । ଆଉ ତା' ଛଡ଼ା ସେବାରେ ଯେପରି କୌଣସି ତ୍ରୁଟି ନ ହୁଏ, ସେଥିପାଇଁ କଡ଼ାକଡ଼ି ନିୟମ ହୋଇଥାଏ, ଯିଏ ଅବହେଳା କରିବ ବା ଠିକ୍ ସମୟରେ ଉପସ୍ଥିତ ନ ହେବ, ତା'ର ସେବା କଟିଯିବ । ସବୁଦିନ ପାଇଁ ସେ ଠାକୁରଙ୍କ ସେବାରୁ ବଞ୍ଚିତ ହେବ । ତେଣୁ ସମସ୍ତ ସେବାକାରୀ ମନପ୍ରାଣ ଦେଇ ଖୁବ୍ ନିଷ୍ଠାର ସହିତ ତାଙ୍କର ସେବା କରନ୍ତି । ତା'ଛଡ଼ା ସେବ୍ୟଙ୍କ ସହିତ ସମ୍ବନ୍ଧ ସ୍ଥାପନ କରିବା ପାଇଁ ସେବାର ଏଇ ଯେଉଁ ସୁବର୍ଣ୍ଣ ସୁଯୋଗ ମିଳିଛି, ଏ କ'ଣ ସହଜରେ ମିଳେ ?

ଏଇଭଳି ଭାବରେ କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ ପାଳିମି ଗାଁର ଭକ୍ତ ଶ୍ରୀ ଗୁରୁଚରଣ ସାମଲଙ୍କୁ ସେବା ମିଳିଥିଲା, ସେ ଚନ୍ଦନ ଚାପରେ ହାର୍‌ମୋନିୟମ୍ ବଜାଇବେ । ସେ ମଧ୍ୟ ଏ ଦାୟିତ୍ୱଟିକୁ ଖୁବ୍ ଶ୍ରଦ୍ଧା ଓ ନିଷ୍ଠାର ସହିତ ପାଳନ କରୁଥିଲେ । ଘରେ ରୋଜଗାରକ୍ଷମ କହିଲେ ତାଙ୍କ ଛଡ଼ା ଆଉ କେହି ନାହିଁ । ନିପଟ ମଫସଲର ସେଇ ଧୋଇଆ ଅଞ୍ଚଳ, ଯେଉଁଠି ସ୍ୱାସ୍ଥ୍ୟ ସେବାର ସେଭଳି କୌଣସି ସୁବିଧା ନାହିଁ, ସେଠାରେ ଉଭୟ ହୋମିଓପାଥିକ୍ ଓ ଏଲୋପାଥି ଚିକିତ୍ସା କରନ୍ତି ଗୁରୁଚରଣ । ଯାହା ଦି' ପଇସା ମିଳେ ସେଥିରେ ଘରର ଗୁଜୁରାଣ ଚଳେ । ଆୟର ଅନ୍ୟ ପନ୍ଥା ନାହିଁ । ତଥାପି ଏକୋଇଶି ଦିନ କାଳ କାମ ଦାମ ବନ୍ଦ କରି ସେ ଆଶ୍ରମକୁ ଧାଇଁ ଯାଆନ୍ତି । ଚନ୍ଦନ ଯାତ୍ରା ସରିଲେ ଫେରିଆସନ୍ତି ଗାଁକୁ । ଠାକୁରଙ୍କ କୃପାରୁ ସବୁ ଠିକ୍ ଠାକ୍ ଚାଲିଥାଏ । ଏମିତି କିଛିବର୍ଷ ଗଲାପରେ ଠାକୁର ଥରେ କହିଲେ, ତୁମେ ଆଉ ଏକୋଇଶି ଦିନ ଯାକ ରହିବା ଦରକାର ନାହିଁ । ଘରେ ପିଲାମାନେ ହଇରାଣ ହେଉଥିବେ । ଭଉଁରୀକୁ ଆସିଲେ ବି ଚଳିବ । ହେଲେ ଚାପରେ ପୁଣି ସବୁଦିନ ହାର୍‌ମୋନିୟମ୍ ବଜେଇବ କିଏ ? ତେଣୁ ଚନ୍ଦନପୁରର ଜଗନ୍ନାଥ ଦାସ ନାମକ ବ୍ୟକ୍ତିଙ୍କୁ ଦରମା ଦେଇ ନିଯୁକ୍ତ କରାଗଲା ।

ଭଉଁରୀ ହେଉଛି ଉତ୍ସବର ଉଦ୍‌ଯାପନ ଦିବସ । ତେଣୁ ସେ ଦିନରେ ଜନସମାଗମ ଅଧିକ ହୁଏ । ଆଉ ଅନ୍ୟଦିନମାନଙ୍କ ତୁଳନାରେ ସେଦିନର କାର୍ଯ୍ୟକ୍ରମ ଓ ସାଜସଜ୍ଜା ମଧ୍ୟ ଅଧିକ । ଅନ୍ୟ ଦିନମାନଙ୍କରେ ଚାପ ତିନିଥର ବୁଲୁଥିଲା ବେଳେ ଭଉଁରୀ ଦିନ

ବୁଲେ ଏକୋଇଶି ଥର । ଦୂରଦୂରାନ୍ତର ଗୃହସ୍ଥ ଭକ୍ତ, ଯେଉଁମାନେ କୌଣସି ନା କୌଣସି ସେବାର ଦାୟିତ୍ୱ ନେଇଥାନ୍ତି, ସେମାନେ ଯଦି ଭଉଁରୀ ଦିନ ଅନୁପସ୍ଥିତ ରହିଲେ ତେବେ ସେବାରୁ ବଞ୍ଚିତ ହେବାଟା ନିଶ୍ଚିତ ।

ଠାକୁରଙ୍କ ନିର୍ଦ୍ଦେଶ ପରଠାରୁ ଗୁରୁଚରଣ ଏବେ ଆଉ ଏକୋଇଶି ଦିନଯାକ ରହିଲେ ନାହିଁ । କେବେ ଭଉଁରୀର ପାଞ୍ଚଦିନ, କେବେ ସାତଦିନ ବା କେବେ ଦିନେ ଦୁଇଦିନ ପୂର୍ବରୁ ଆସି ଉତ୍ସବରେ ଯୋଗ ଦିଅନ୍ତି । କେବଳ ହାର୍‌ମୋନିୟମ୍ ନୁହେଁ । ସେ ବେହେଲା ମଧ ଜାଣନ୍ତି । ସୁଲଳିତ କଣ୍ଠରେ ତାଙ୍କର "ଆସ ଆଶା ନ ଭାଙ୍ଗ ଜୀବଜୀବନ" ଭଜନ ଶୁଣିଲେ ଯେ କେହି ବି ଭାବ ବିହ୍ୱଳିତ ହୋଇଯାଏ । ଠାକୁରେ ଖୁବ୍ ଭଲ ପାଆନ୍ତି ତାଙ୍କର ଏଇ ପ୍ରିୟ ଭକ୍ତ ଗୁରୁଚରଣଙ୍କୁ । ଠାକୁରଙ୍କ ପ୍ରକଟ ଲୀଳାର ଅବସାନ ହେଲା ୧୯୬୩ ନଭେମ୍ବର ୨୭ ତାରିଖରେ । ଆଉ ତା'ପରେ ଆରମ୍ଭ ହେଲା ଅପ୍ରକଟ ଲୀଳାର ଅନନ୍ୟ ପର୍ବ ।

ସଠିକ୍ ମନେ ନାହିଁ ତାଙ୍କର । ୧୯୬୪ କିମ୍ବା ୧୯୬୫ ମସିହାର ଚନ୍ଦନଯାତ୍ରା । ସେତେବେଳକୁ ତାଙ୍କର ବ୍ୟବସାୟ ଥାଏ ଟୁରିଙ୍ଗ ସିନେମା । ଆଜିକାଲି ପରି ସିନେମା ହଲ୍, ଘରେ ଘରେ ଟେଲିଭିଜନ ବା ଭି.ସି.ଡ଼ି ପ୍ରଭୃତି ସେତେବେଳେ ନ ଥାଏ । ଗାଁ ଗହଳର ଅନେକ ଲୋକ ସିନେମା କ'ଣ ଜାଣି ନ ଥାନ୍ତି । ଦୁର୍ଭାଗ୍ୟ ହେଉ କି ସୌଭାଗ୍ୟ ହେଉ, କ୍ରମାଗତ ରାତି ଅନିଦ୍ରା ଯୋଗୁଁ ଏଥର ଚନ୍ଦନ ବେଳକୁ ଦେହ ଖରାପ ହେଲା ଗୁରୁଚରଣଙ୍କର । ଦେହରେ ଖଇଫୁଟା ଜ୍ୱର । ପାଟିକୁ ପାଣି ରୁଚିଲା ନାହିଁ । ସେ ଏତେ ଦୁର୍ବଳ ହୋଇଗଲେ ଯେ ବିଛଣାରୁ ଉଠିପାରିଲେ ନାହିଁ । ସେପଟେ ଭଉଁରୀ ନିକଟରୁ ନିକଟତର ହୋଇ ଆସୁଛି । କ'ଣ କରିବେ, କେମିତି ଆଶ୍ରମ ଯିବେ ଭାବିପାରିଲେ ନାହିଁ ସେ । କେତେ ବିକଳରେ ଡାକିଲେ ଠାକୁରଙ୍କୁ । "ପ୍ରଭୁ! ଏ ଦୀନହୀନ ଅକିଞ୍ଚନ କ'ଣ ଏଥର ତୁମ ସେବାରୁ ବଞ୍ଚିତ ହେବ? ତୁମେ କ'ଣ ଏଥର ଟିକିଏ କୃପା କରିବ ନାହିଁ ?"

କିନ୍ତୁ ପ୍ରଭୁ ଏଥର ଟିକିଏ କଠୋର ହୋଇ ଯାଇଥିଲେ ବୋଧହୁଏ । ଭଉଁରୀ ଆସିଗଲା ତଥାପି ଜ୍ୱର ଛାଡ଼ିଲାନି । ଗୁରୁଚରଣଙ୍କ ଭକ୍ତପ୍ରାଣ କାନ୍ଦି ଉଠିଲା । ରୋଗ ଶଯ୍ୟାରେ ପଡ଼ି ଛଟପଟ ହେଲା । କିନ୍ତୁ ଯାଇ ପାରିଲାନି ଶାନ୍ତିଧାମ । ମାନସପଟରେ କେବଳ ନାଚି ଉଠିଲା ତା'ର ଦୃଶ୍ୟରାଜି । ମନପକ୍ଷୀ ତାଙ୍କର ପଇଁତରା ମାରୁଥିଲା ଶାନ୍ତିଧାମର ଆକାଶରେ । ଦୁଃଖରେ ଭାଙ୍ଗିପଡ଼ିଲେ ସେ । ରୋଗ ଯନ୍ତ୍ରଣାଠାରୁ ବଳିପଡ଼ିଲା ଚନ୍ଦନକୁ ଆଶ୍ରମ ଯାଇ ନ ପାରିବାର ଯନ୍ତ୍ରଣା ।

ପ୍ରଭୁଙ୍କ ଉପରେ ଭାରି ଅଭିମାନ ହେଲା । "ହଉ ହେଲା । ତୁମକୁ କ'ଣ ଏକା

ରୁଷି ଆସେ ? କେଉଁଠି କ'ଣ ଗୋଟାଏ ଅପରାଧ ହୋଇଯାଇଛି ବୋଲି, ତୁମେ ଯଦି ମୋ ଅଳି ଶୁଣିଲ ନାହିଁ, ତୁମର ହୃଦୟ ଯଦି ଏତେ କଠୋର ହୋଇଗଲା, ତେବେ ମୋତେ କ'ଣ ରୁଷି ଆସେନା ? ମୁଁ କ'ଣ କଠୋର ହୋଇ ପାରିବିନି ? ଆଜି ତମର ଦିନେକୁ ମୋର ଦିନେ । ତମେ ଯଦି ମୋର ସେବା ଛଡ଼ାଇ ନେଇପାରିଲ ତେବେ ମୁଁ ମଧ୍ୟ ଆଜି ତୁମକୁ ଉପବାସ ରଖାଇଦେବି । ତୁମେ ତ ମୋ କଥା ଟିକିଏ ଭାବିଲ ନାହିଁ, ମୁଁ କାହିଁକି ତମକଥା ଭାବିବି ? ଭୋକରେ ଯେତେବେଳେ ପେଟର କରଡ଼ି ଜଳିବ, ସେତେବେଳେ ଯାଇ ବୁଝିବ ମୁଁ ଏଠି କେମିତି ଜଳୁଛି ?"

ଭଉଁରୀ ଦିନ ସକାଳୁ ଆରମ୍ଭ ହେଲା ଗୁରୁଚରଣଙ୍କର ନିର୍ଜଳା ଉପବାସ । ପଥ୍ୟ ନାହିଁ, ଔଷଧ ନାହିଁ କି ପାଣି ଟୋପାଏ ବି ନାହିଁ । ଆଖି ପାଣିରେ ତକିଆ ଭିଜିଗଲା । ଗୁରୁଚରଣରେ ଯା'ର ଅଗାଧ ବିଶ୍ୱାସ ସେ କ'ଣ ଏତେ ସହଜରେ ହାର୍ ମାନିଯିବ ?

ଏ ହେଉଛି ଭକ୍ତ ଭଗବାନଙ୍କର ଯୁଦ୍ଧ । ଯୁଦ୍ଧରେ ଯଦି ଭକ୍ତ ହାରିଯାଏ, ତେବେ ସେ ଯାଇ ପଡ଼ିବ ବିଷୟାରେ । ମାୟାର ଅଥଳ ସାଗରରେ ସେ ଆହୁରି ଆହୁରି ବୁଡ଼ିଯିବ । ଆଉ ଯଦି ଭଗବାନ୍ ହାରିଯାଆନ୍ତି ତେବେ ସେ ଭକ୍ତ ପାଖରେ ବନ୍ଧା ପଡ଼ିଯିବେ । ଭକ୍ତ ଜୋର୍ କରି ତାଙ୍କର ପାଦପଦ୍ମ ଦୁଇଟା ଛଡ଼ାଇ ନେବ । ଠାକୁରଙ୍କ ଭାଷାରେ–

ଭକତ ହାରିଲେ ବିଷୟା ମଧ୍ୟେ ପଡ଼ିବ ଯାଇ,
ହରି ହାରିଲେ ପଦ୍ମପାଦ ଭକ୍ତେ ନେବେ ଛଡ଼ାଇ ।

(କୋଇଲି ଶିକ୍ଷା)

ସତକୁ ସତ ଠାକୁରେ ହାରିଗଲେ ଭକ୍ତ ଗୁରୁଚରଣଙ୍କ ଭାବ ନିକଟରେ । ପ୍ରକଟ ଲୀଳା ସାଙ୍ଗ କରି ଯିଏ ଅଳ୍ପ କିଛିଦିନ ପୂର୍ବରୁ ଅପ୍ରକଟ ହୋଇ ଯାଇଥିଲେ, ତାଙ୍କୁ ପୁଣି ସ୍ଥୂଳ ଶରୀର ଧାରଣ କରିବାକୁ ପଡ଼ିଲା ଭକ୍ତ ପାଇଁ । କିନ୍ତୁ ଅଭିରାମ ରୂପରେ ନୁହେଁ, ଭକ୍ତ ରୂପରେ ।

ସମସ୍ତେ ଦେଖିଲେ ଚନ୍ଦନ ଚାପରେ ଗୁରୁଚରଣ ହାର୍‌ମୋନିୟମ୍ ବଜାଉଛନ୍ତି । ବେଶଭୂଷାରେ ଟିକିଏ ବି ତାରତମ୍ୟ ନାହିଁ । ସେଇ ଧୋତି, ସେଇ କାମିଜ୍, ଲୁଗାକୁଞ୍ଚର କାନି କାମିଜ୍‌ର ବାଁ ପଟ ପକେଟ୍‌ରେ ପଶିଛି । ମାଙ୍ଗୁଭଙ୍ଗା କେଶବିନ୍ୟାସ ସାଙ୍ଗକୁ ପାଟିରେ ଖିଲିପାନ । ସ୍ୱୟଂ କର୍ତ୍ତା ଯେତେବେଳେ ଅଭିନୟ କରୁଛନ୍ତି, ସେତେବେଳେ କ'ଣ ଆଉ କିଛି ବାହୁନିବାର ଅଛି ?

ଚନ୍ଦନଯାତ୍ରା ସରିଗଲା । ଆଠଦିନ ପରେ ଜ୍ୱର କମିଲା । ହେଲେ ମନରେ ଦୁଃଖ ରହିଗଲା ସବୁଦିନ ପାଇଁ । ଯେଉଁ ସେବା ଠାକୁର ନିଜେ ଯାଚି କରି ଦେଇଥିଲେ, ଗତ କିଛି ବର୍ଷ ହେଲା ଯେଉଁ ସେବା ସେ ମନପ୍ରାଣ ଢାଳି କରି ଆସୁଥିଲେ, ସେଇ ସେବା

ଆଜି ଚାଲିଗଲା । ଭଗବତ୍ ଗୋଷ୍ଠୀର ଯେଉଁ କଡ଼ା ନିୟମ, ସେଥିରେ ସେ କ'ଣ ସତରେ ତାଙ୍କର ସେବା ପୁଣି ଫେରି ପାଇବେ ?

କିଛିଟା ସୁସ୍ଥ ହେବା ପରେ କୌଣସି ଏକ କାମରେ ଗୁରୁଚରଣ ବାହାରିଲେ କୋରାପୁଟ, ଯେଉଁଠି ତାଙ୍କର ଭଉଣୀ ରହନ୍ତି । ଜଙ୍ଗଲ ଜାଗା । ଡାକ୍ତର ସୁବିଧା ନାହିଁ । ପୁଣି ବାଘ ଭୟ । ହେଲେ ଦେହର ଦୁର୍ବଳତା ନ ଯାଉଣୁ ପୁଣି ଆରମ୍ଭ ହୋଇଗଲା ଲାଳରକ୍ତ ଝାଡ଼ା । ଅଙ୍ଗ ଅବଶ ହୋଇଗଲା । ଉଠିବାକୁ ବଳ ପାଇଲା ନାହିଁ । ରାତିରେ ଶୋଇଛନ୍ତି । ସ୍ୱପ୍ନ ଦେଖିଲେ– ଏକ ବିରାଟ ନଦୀ ବହୁଛି । ଉଭୟ ପଟରେ ଭକ୍ତମାନଙ୍କର ବିପୁଳ ସମାଗମ । ସେ ପଟରେ ଠାକୁର ଦଣ୍ଡାୟମାନ । ଗୁରୁଚରଣ ଭାବିଲେ, ଠାକୁର ତ ଦେହ ଛାଡ଼ିଥିଲେ, ପୁଣି ଆସିଲେ କେଉଁଠୁ ? ହଁ ମ ଛାଡ଼ । ଠାକୁର ଯେତେବେଳେ ସମ୍ମୁଖରେ ଆବିର୍ଭାବ ହୋଇଛନ୍ତି, ଯାଏଁ ଟିକିଏ ଦର୍ଶନ କରି ଆସିବି । ଉରାନଈ ପାରି ହେବା ପାଇଁ ଶେଷକୁ ଆଶ୍ରା କଲେ କୂଳରେ ଥିବା ଗୋଟିଏ ଏକ ମଙ୍ଗିଆ ଡଙ୍ଗାକୁ । କିଛିବାଟ ଯାଇଛନ୍ତି କି ନାହିଁ, ନଈ ମଝିରେ ଡଙ୍ଗା ବୁଡ଼ିଗଲା । ଅକାତକାତ ପାଣି । ପହଁରିବାକୁ ଚେଷ୍ଟା କଲେ ସତ, କିନ୍ତୁ ପାଣି ସୁଅ ସାମ୍ନାରେ ଟେକି ପାରିଲେ ନାହିଁ । ଏତିକିବେଳେ ମନେପଡ଼ିଲା ଠାକୁରଙ୍କ ବାଣୀ– "ପହଁରି ନ ପାରି ବୁଡ଼ିଲେ ସେ ଜଳେ, ପଶିବୁ ଅଭୟ ଚରଣ କମଳେ ।" ତେଣୁ ଆଉ କିଛି ବିଚାର ନ କରି ସେ ସେ ଇ ଅଭୟ ପାଦପଦ୍ମକୁ ଚିନ୍ତା କରି ବୁଡ଼ ମାରିଲେ ନଦୀଜଳରେ । ଉଠି ଦେଖନ୍ତି ତ ସେ କୂଳରେ ପହଞ୍ଚି ଯାଇଛନ୍ତି । ସେଇ ଓଦା ସରସର ଲୁଗାରେ ଧାଇଁଗଲେ ଠାକୁରଙ୍କ ପାଖକୁ । ଦୁଇବାହୁରେ ଆଲିଙ୍ଗନ କଲେ ମହାବାହୁଙ୍କୁ । ଠାକୁର ଯାଇ ଗୋଟିଏ ପଥର ଉପରେ ବସିଲେ । ଅନ୍ୟମାନେ ତୁଳସୀ ଦେଉଥାନ୍ତି । ହେଲେ ଗୁରୁଚରଣ ତାଙ୍କୁ ଆଦୌ ଛାଡୁ ନ ଥାନ୍ତି । ନାମ ସଂକୀର୍ତ୍ତନ ଚାଲିଥାଏ । ଅଦୂରରେ ଛିଡ଼ା ହୋଇଥାନ୍ତି ତାଙ୍କର ପତ୍ନୀ ଓ ଭାଣିଜୀ । ସେ ସମସ୍ତଙ୍କୁ ନେଇ ଘରକୁ ଯିବା ପାଇଁ ଠାକୁର ନିର୍ଦ୍ଦେଶ ଦେଲେ । ସେତିକିବେଳେ ଭଉଁରୀ ସେବା ହରାଇଥିବାର ଦୁଃଖ ଜଣାଇଲେ ଗୁରୁଚରଣ ।

ଠାକୁର କହିଲେ– ଆରେ ନାଇଁ ନାଇଁ । ତୋ'ର କିଛି ହେବ ନାହିଁ । ତୋ ସେବା କେହି ନେଇପାରିବେ ନାହିଁ । ଏଥର ଠାକୁର ଉଠି ପଦ୍ମଫୁଲରେ ପାଦ ଦେଇ ଦେଇ ଚାଲିବାକୁ ଆରମ୍ଭ କଲେ । ବାବା ଜଣେ ଆସି ଠାକୁରଙ୍କୁ ପ୍ରଣାମ କଲେ । ଠାକୁର ପଚାରିଲେ– ଆଶ୍ରମ ଖବର ସବୁ କ'ଣ ?

ବାବା– ବନ୍ୟାରେ ସବୁ ଧୋଇ ଯାଇଛି ।

ବାବା ଗୁରୁଚରଣଙ୍କ କାନ୍ଧରେ ବ୍ୟାଗ୍‌ଟିଏ ଝୁଲାଇ ଦେଇ ଭୋଗ ବାଣ୍ଟିବାକୁ ନିର୍ଦ୍ଦେଶ ଦେଲେ । ସେ ଭୋଗ ବାଣ୍ଟୁ ବାଣ୍ଟୁ ଠାକୁର ଦୂରକୁ ଚାଲିଗଲେ ।

ସ୍ତ୍ରୀ ପିଲାଙ୍କୁ ସାଙ୍ଗରେ ଧରି ଗୁରୁଚରଣ ଗାଁକୁ ଫେରିଲେ । ଫେରିଲା ବେଳେ ଗୋଟିଏ ଗାଁରେ କୃଷ୍ଣବାବା (ଦୀକ୍ଷାଦାତା) ଶୋଇଥାନ୍ତି । ତାଙ୍କୁ ପ୍ରଣାମ କଲାବେଳେ ବାବା କହିଲେ– ଦେଖୁନ୍ତୁ, ମୋ ପାଦ କେମିତି ଫୁଲିଛି । ସେଇଥିପାଇଁ ପରା ମୁଁ ତୋ ଘରକୁ ଯାଇପାରୁନି ।

ବାବାଙ୍କ ପାଖରୁ ଫେରି ନିଜ ଗାଁ ମୁଣ୍ଡରେ ହେଲା ବେଳକୁ ନିଦ ଭାଙ୍ଗିଗଲା ଗୁରୁଚରଣଙ୍କର । ସ୍ୱପ୍ନ କୁଆଡ଼େ ଉଭେଇଗଲା । ଧଡ଼ପଡ଼ ହୋଇ ବିଛଣାରୁ ଉଠିପଡ଼ିଲେ ଗୁରୁଚରଣ । ଦେଖିଲେ ଦେହରୁ ଝାଳ ବୋହି ଯାଇଛି । ରୋଗର ଚିହ୍ନବର୍ଣ୍ଣ ଆଉ ନାହିଁ । ଫୁଲଚନ୍ଦନ ଓ ତୁଳସୀର ମହ ମହ ବାସ୍ନାରେ ଘର ମହକି ଯାଉଛି । ଦେହମୁଣ୍ଡ ବାସି ଉଠୁଛି । ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଯାଇଛନ୍ତି ।

କୃପାମୟ ପ୍ରଭୁ ଯେ ସଶରୀରେ ଆସିଥିଲେ– ଏହା ବୁଝିବା ପାଇଁ ତାଙ୍କର ଆଉ ବାକି ରହିଲା ନାହିଁ । ଲୀଳାମୟଙ୍କର ଲୀଳା ସ୍ମରଣ କରି ସେ ଆତ୍ମବିଭୋର ହୋଇ ଉଠିଲେ । ହୃଦୟର ଭାବୋଚ୍ଛ୍ୱାସକୁ ସେ ଆଉ ରୋକି ପାରିଲେନି । ଛୋଟ ପିଲାଟି ପରି ଭୋ ଭୋ ରଡ଼ି ଛାଡ଼ିଲେ ।

ତାଙ୍କ କାନ୍ଦ ଶୁଣି ଭଉଣୀ ଘରର ସମସ୍ତେ ଉଠି ପଡ଼ିଲେ । ଭଉଣୀ ଠାକୁରଙ୍କ ଶ୍ରୀଚରଣ ଆଶ୍ରିତା । ସେ ମଧ୍ୟ ଆସି ଅନୁଭବ କଲେ ଠାକୁରଙ୍କ ଶ୍ରୀଅଙ୍ଗ ସୁବାସର ଉପସ୍ଥିତି ।

ଏଥର କୋରାପୁଟରୁ ଗାଁକୁ ଫେରିଲେ ଗୁରୁଚରଣ । ରତଳାଙ୍ଗର କୈଳାସ ଚନ୍ଦ୍ର ରାୟ (ଭଗବାନ ବାବା) ତାଙ୍କ ଘରେ ଠାକୁରଙ୍କର ମେଳା କରୁଥାନ୍ତି । ଗୁରୁଚରଣ ମେଳାକୁ ଗଲେ । ତାଙ୍କର ସେଇଠି ଦେଖାହେଲା କୃଷ୍ଣ ବାବାଙ୍କ ସହିତ । ସ୍ୱପ୍ନ ବୃତ୍ତାନ୍ତର ସତ୍ୟତା ସେ ଅନୁଭବ କଲେ ସେଇଠି । ଯେତେବେଳେ ବାବା ତାଙ୍କ ପାଦ ଦେଖାଇ କହିଲେ ଭଲ ହେଲେ ତାଙ୍କ ଘରକୁ ଯିବେ ବୋଲି । କୃଷ୍ଣବାବାଙ୍କ ଛଡ଼ା ରଘୁବାବା ଓ କସ୍ତୁରୀ ବାବା ମଧ୍ୟ ସେଠାରେ ଉପସ୍ଥିତ ଥାଆନ୍ତି ।

"ସ୍ୱପ୍ନ କ'ଣ ସତ୍ୟ ହୁଏ ?" ଗୁରୁଚରଣ ପ୍ରଶ୍ନ କଲେ ରଘୁବାବାଙ୍କୁ ।

ବାବା କହିଲେ– ହଁ, ନ ହେବ କାହିଁକି ? ଯେଉଁ ସ୍ୱପ୍ନରେ ଆମେ ସାଧୁ ସନ୍ଥ, ବିଅଁ ବା ଗୁରୁଦେବଙ୍କ ଦର୍ଶନ କରୁ ତାହା ସର୍ବଦା ସତ୍ୟ । ଅନ୍ୟ ସମସ୍ତ ସ୍ୱପ୍ନ ମିଥ୍ୟା ହୋଇପାରେ ।

ମାତ୍ର ଏସବୁ ସ୍ୱପ୍ନ କେବେହେଲେ ମିଥ୍ୟା ନୁହେଁ ।

ତା'ପରେ କସ୍ତୁରୀବାବାଙ୍କୁ ପ୍ରଶ୍ନ କଲେ ଗୁରୁଚରଣ– ବାବା, ଆଶ୍ରମ ଖବର ସବୁ କ'ଣ ?

ବାବା– କ'ଣ କହିବ ପୁଅ ? ବନ୍ୟାରେ ଆଶ୍ରମର ସବୁ ଫସଲ ଧୋଇ ଯାଇଛି । କେବଳ ମାଧୁକରୀ କରି ଆଶ୍ରମ ଚଳାଇବା କଥା ।

ଗୁରୁଚରଣ ଦେଖିଲେ, ସ୍ୱପ୍ନରେ ସେ ଯାହା ସବୁ ଦେଖିଥିଲେ, ସେଥିରୁ ଦୁଇଟି କଥା ସତ୍ୟ ପ୍ରମାଣିତ ହୋଇ ସାରିଲାଣି । ଆଉ ବାକି ରହିଲା ତାଙ୍କର ଭଉଁରୀ ସେବା କଥାଟା । ସତରେ କ'ଣ ପ୍ରଭୁ ତାଙ୍କୁ ତାଙ୍କର ସେବାରୁ ବଞ୍ଚିତ କରିନାହାନ୍ତି ? କିନ୍ତୁ କେମିତି ? ସେ ତ ଅନୁପସ୍ଥିତ ଥିଲେ ଚନ୍ଦନ ଚାପରେ । ତେବେ... ?

ତୃତୀୟ ତଥା ଶେଷ କଥାଟିର ସତ୍ୟତା ଉଦ୍‌ଘାଟନ ପାଇଁ ମନ ତାଙ୍କର ବ୍ୟାକୁଳ ହୋଇ ଉଠିଲା । ଦୁର୍ଗାପୂଜାରେ ସେ ଧାଇଁଗଲେ ଆଶ୍ରମକୁ । ଭେଟ ହେଲେ ଚନ୍ଦନପୁରର ଜଗନ୍ନାଥ ଦାସ ।

ଜଗନ୍ନାଥ ପଚାରିଲେ– ଆଚ୍ଛା ଭାଇ ! ଭଉଁରୀ ଦିନ ଚାପରେ ତୁ ତ ହାର୍‌ମୋନିୟମ୍ ବଜାଉଥିଲୁ । କିନ୍ତୁ ଚାପରୁ ଆସିଲା ପରେ ତୁ କୁଆଡ଼େ ଗଲୁ କହିଲୁ ? ସେବାକାରୀଙ୍କୁ ଶିରିପା ଦେଲା ବେଳେ ରବିବାବା ତୋତେ ବହୁତ ଖୋଜିଲେ, ନ ପାଇବାରୁ ରାଗିଛନ୍ତି ।

ଅନ୍ୟ ବାବାମାନେ ମଧ ଠିକ୍ ସେଇ ଏକା ପ୍ରଶ୍ନ କଲେ ଗୁରୁଚରଣଙ୍କୁ । କ'ଣ କହିବେ, କ'ଣ ନାହିଁ– ସେ ଠିକ୍ କରିପାରିଲେ ନାହିଁ ।

କ'ଣ ଏମାନେ ସବୁ କହୁଛନ୍ତି ? ସେ ତ ଭଉଁରୀକୁ ଆସି ନାହାନ୍ତି । ଅଥଚ ସମସ୍ତେ କହୁଛନ୍ତି, ସେମାନେ ତାଙ୍କୁ ଚାପରେ ଦେଖିଚନ୍ତି । ତେବେ କ'ଣ ସତରେ ପ୍ରଭୁ ତାଙ୍କର ସେବା ରଖିବା ପାଇଁ ନିଜେ ଗୁରୁଚରଣ ସାଜି... ?

ଆଉ ଆଗକୁ ଭାବିପାରିଲେ ନାହିଁ ଗୁରୁଚରଣ । ବହିର୍ଭୂମି ଯିବା ଆଳରେ ଗୋଟିଏ ନିରୋଳା ମୁହୂର୍ତ୍ତ ଖୋଜି ପ୍ରଭୁଙ୍କ ଲୀଳା ସାଗରରେ ସେ ହଜାଇଦେଲେ ନିଜକୁ । ଅଜାଣତରେ ତାଙ୍କର ନୟନ ଯୁଗଳରୁ ବହିଆସିଲା ଆନନ୍ଦାଶ୍ରୁର ଶ୍ରାବଣୀ । ଭୟରେ ଆଉ ରବିବାବାଙ୍କୁ ଦେଖା କଲେ ନାହିଁ । ଏ ଲୀଳା କାହାଣୀର ପ୍ରଥମ ଶ୍ରୋତା ହେଲେ ଠାକୁରଙ୍କର ଆଉ ଜଣେ ଅନ୍ତରଙ୍ଗ ଭକ୍ତ ନୀଳନନା (ନୀଳମଣି ଷଡ଼ଙ୍ଗୀ) । ଆଉ ବକ୍ତା ?

ବକ୍ତା ଆଉ କିଏ ହେବ ଗୁରୁଚରଣଙ୍କ ଛଡ଼ା ?



# ପିଚ୍ଛୁଳି ଚୋର ନୀଳମଣି

କଥାରେ ଅଛି ନେଇ ଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ । ନୀତି ଦୃଷ୍ଟିରୁ ଚୋରି ଏକ ଘୃଣ୍ୟ କାର୍ଯ୍ୟ । ଯାହା ନିଜର ନୁହେଁ, ତା' ଉପରେ ଲୋଲୁପ ଦୃଷ୍ଟି ପକାଇ କଳେ ବଳେ କୌଶଳେ ତାକୁ ଆତ୍ମସାତ୍ କରିବା, ତାକୁ ଅପହରଣ କରିବା, ଏହି ନୀଚ କର୍ମର ବିସ୍ତୃତ ରୂପ । ପୁରୁଷାନୁକ୍ରମେ ହେଉ, ଦୈବଯୋଗେ ହେଉ ବା ନିଜର ଶ୍ରମଝାଳ, ଦେଇ ବ୍ୟକ୍ତି ତାହା ଅର୍ଜନ କରିଥାଉ, ତାହା ଜଣକର ଅଧିକାରଭୁକ୍ତ । ଅନ୍ୟ ଜଣେ ତାକୁ ଆଶା କରିବା ଅନୁଚିତ । ଶାସ୍ତ୍ରରେ ଅଛି– "ମାତୃବତ୍ ପରଦାରେଷୁ ପରଦ୍ରବ୍ୟେଷୁ ଲୋଷ୍ଟ୍ରବତ୍ ।" ଠାକୁରେ ଲେଖିଲେ–

"ଯାହାକୁ ଯାହା ଦତ୍ତ କରି ଅଛନ୍ତି ବାସୁଦେବ,
ପରଧନ ପରସ୍ତିରୀକୁ ଆଉ ନ କର ଲୋଭ ।"

କିନ୍ତୁ ତା' ସତ୍ତ୍ୱେ ବି ଚୋରି ଚାଲିଛି । ରାମାୟଣ ମହାଭାରତ ଯୁଗଠାରୁ ଆରମ୍ଭ କରି ଏକବିଂଶ ଶତାବ୍ଦୀର ଏ ଘୋର କଳିକାଳ ପର୍ଯ୍ୟନ୍ତ– ଚୋରି ଚାଲିଛି । ଚୋର ଧରା ପଡୁଛି, ମାଡ଼ ଖାଉଛି, ଜେଲ ଯାଉଛି, କେତେ ନିନ୍ଦା ଅପବାଦ ପାଉଛି, ହେଲେ ଅବସ୍ଥାର କିଛି ପରିବର୍ତ୍ତନ ହେଉନାହିଁ । ଯେଉଁ କଥାକୁ ସେହି କଥା । ନୂଆ ନୂଆ ଢଙ୍ଗରେ ତଥାପି ଚୋରି ଚାଲିଛି । ଯିଏ ଧରା ପଡ଼ିଗଲା ତା' କଥା ନିଆରା । କିନ୍ତୁ ଯିଏ ଧରା ପଡୁନି, ସିଏ ନିଜକୁ ସାଧୁ କହୁଛି । ନିଶରେ ହାତ ମାରି ଛାତି ଫୁଲାଇ ଚାଲୁଛି । ତା'ର ସମର୍ଥକ ଗୋଷ୍ଠୀ କହୁଛନ୍ତି କ'ଣ ନା ନେଇ ଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ ।

ମୁଁ ବେଳେବେଳେ ଭାବେ– ଏଇ ନେଇ ଆଣି ଥୋଇବାଟା କ'ଣ ? ସତର୍କତାର ସହିତ ଚୋରି କରି ଧରା ନ ପଡ଼ିବା ତ ? ନାଁ ଆଉ କ'ଣ ? କିନ୍ତୁ ମୁଁ ବୁଝିପାରେନି ତାହା କିଭଳି ସତର୍କତା ଓ ଚୋରି କରି ଧରା ନ ପଡ଼ିବ ବା କେମିତି ? ହଁ, ଚୋର ଥରେ ଦି'ଥର ବା ପାଞ୍ଚ ଦଶ ଥର ଧରା ନ ପଡ଼ି ଖସି ଯାଇପାରେ । କିନ୍ତୁ ସବୁଦିନେ ଯେ ସେ ଖସିଯିବ, ତା'ର କିଛି ମାନେ ନାହିଁ । ଚୋର ପାଇଁ ସବୁଦିନେ ଅନ୍ଧାର ରାତି ହେବ ନାହିଁ । ଦିନେ ନା ଦିନେ ନିଶ୍ଚୟ ଜହ୍ନରାତି ହେବ ଓ ସେଇଦିନ ହିଁ ସେ ନିଶ୍ଚୟ ଧରାପଡ଼ିବ ।

ତେଣୁ ଏଇ ଯେଉଁ ନେଇ ଆଣି ଥୋଇବା ବିଦ୍ୟା, ତାହା କେବଳ ଅଳ୍ପ କିଛିଦିନ ପାଇଁ ସିନା !

ଆଉ ବାକି ରହିଲା 'ଭଲ'କଥା । ଆଚ୍ଛା ଚୋରି ତ ଚୋରି । 'ଭଲ'ର ପ୍ରଶ୍ନ କେଉଁଠୁ ଆସିଲା । ଭଲ ଯଦି କୁହାଯିବ, ତେବେ ସାଧୁ ବୃତ୍ତିକୁ ସିନା କୁହାଯିବ । ଚୌର୍ଯ୍ୟବୃତ୍ତିକୁ କେମିତି କୁହାଯିବ ? ଗୁଣକୁ ପୂଜା, ଅବିଗୁଣକୁ ବାଇଦ ବଜା ।

ସେଥିପାଇଁ ସାଧୁ ପୂଜା ପାଆନ୍ତି ଆଉ ଚୋର ଖାଏ ମାଡ଼ । ତେଣୁ ଚୋରି ବିଦ୍ୟାକୁ କେବେହେଲେ ଭଲ ବୋଲି କୁହାଯାଇ ପାରିବ ନାହିଁ । ତେଣିକି ତାହା ଯେତେ କୁଶଳତାର ସହିତ ସମ୍ପାଦିତ ହୋଇ ଥାଉନା କାହିଁକି ?

ବର୍ତ୍ତମାନ କଥା ହେଲା ଚୋର କିଏ ? କାହାକୁ ଆମେ ଚୋର କହିବା ? କିନ୍ତୁ ଏ ପ୍ରଶ୍ନର ଉତ୍ତର ଖୋଜିବା ପୂର୍ବରୁ ଆମେ ଆଉ ଗୋଟିଏ ପ୍ରଶ୍ନ କରିବା ଉଚିତ୍– କିଏ ଚୋର ନୁହେଁ ? ହଁ, ଭଲ ପ୍ରଶ୍ନ ।

କାରଣ ଜୀବନରେ ଆଦୌ ଚୋରି କରି ନ ଥିବା ବ୍ୟକ୍ତି ବୋଧହୁଏ ଆମେ ଖୋଜିଲେ ପାଇବା ନାହିଁ । ପିଲାଦିନେ କାକୁଡ଼ି ପିଜୁଳି ଚୋରି କରିବା, ତେନ୍ତୁଳି ଆଚାର ଚୋରି କରିବା, ବାପାଙ୍କ ପକେଟରୁ ଚାରଣା ଆଠଣା ଚୋରି କରିବା, ଏସବୁ ତ ସାଧାରଣ କଥା ।

ଆଉ ଚୋର ନୁହେଁ କିଏ ସେ ? କିଛି ନ ହେଲେ ରୋଷେଇ ଘରେ ମା' ରଖିଥିବା ସ୍ୱାଦିଷ୍ଟ ଖାଦ୍ୟ ପଦାର୍ଥ ଲୁଚେଇ ଲୁଚେଇ ଖାଇ ନ ଥିବ, ଏମିତି କିଏ ଅଛି ? କିନ୍ତୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମଣିଷର ବିଚାର ବୁଦ୍ଧିରେ ପରିବର୍ତ୍ତନ ହୁଏ, ଆଚରଣ ଶୁଦ୍ଧ ହୁଏ । ଭଲ ଆଉ ମନ୍ଦ ମଧ୍ୟରେ ଥିବା ପ୍ରଭେଦ ସେ ଜାଣେ । ମନ୍ଦାଭ୍ୟାସ ତ୍ୟାଗ କରି 'ଭଲ'କୁ ନିଜର ଦୈନନ୍ଦିନ ଜୀବନରେ ପ୍ରୟୋଗ କରିବାକୁ ଯତ୍ନଶୀଳ ହୁଏ । ଏତିକିବେଳେ ଚୋରି ଭଳି ନୀଚକର୍ମରୁ ସେ ଦୂରେଇ ଯାଏ । ଅଜ୍ଞାନରେ କେତେବେଳେ କ'ଣ ଗୋଟାଏ ଭୁଲ କରି ଦେଇଥିଲା ବୋଲି ତାକୁ ସବୁଦିନେ ଚୋର କୁହାଯାଏ ନାହିଁ । ଚୋର କୁହାଯାଏ କେବଳ ସେହି ବ୍ୟକ୍ତିକୁ ଯାହାର କିଛି ପରିବର୍ତ୍ତନ ହୁଏ ନାହିଁ । ଲାଉ ଚୋରି, କଖାରୁ ଚୋରିରୁ ବଢ଼ିବଢ଼ି ଯିଏ ଟଙ୍କା ସୁନା ଚୋରିରେ ପହଞ୍ଚିଯାଏ ।

ହେଲେ ଯିଏ ଯେତେ ଚୋରି କଲେ ବି ଏ ବିଦ୍ୟାରେ ଦ୍ୱାପରର କୃଷ୍ଣଙ୍କୁ କେହି ବଳେଇ ଯାଇପାରିବେ ନାହିଁ । ଏ ବିଦ୍ୟାରେ ସେ ଏତେ ନିପୁଣ ଥିଲେ ଯେ, ଚୋର ତାଲିକାର ଅଗ୍ରଭାଗରେ ତାଙ୍କ ନାଁ ଥିଲା ।

"ବ୍ରଜେ ବସନ୍ତଂ ନବନୀତ ଚୌରଂ
ଗୋପାଙ୍ଗନାନାଂ ଚ ଦୁକୂଳ ଚୌରଂ

ଅନେକ ଜନ୍ମାର୍ଜିତ ପାପ ଚୌରଂ
ଚୌରାଗ୍ରଗଣ୍ୟଂ ପୁରୁଷଂ ନମାମି ।"

ଖାଲି ସେତିକି ନୁହେଁ । ତାଙ୍କ ସଂସ୍ପର୍ଶରେ ଆସିଥିବା ଗୋପଗାଈମାନେ ମଧ୍ୟ ଏ ବିଦ୍ୟାରେ ତାଙ୍କଠାରୁ ଆଉ ପାଦେ ଆଗେଇଗଲେ । ପରିଣାମରେ ଚୌରାଗ୍ରଗଣ୍ୟ ପୁରୁଷ କୃଷ୍ଣଙ୍କର ମନକୁ ସେମାନେ ଚୋରି କରିନେଲେ । ଆଉ ଭଗବାନଙ୍କର ଏତାଦୃଶ ଅସହାୟତା ଲକ୍ଷ୍ୟ କରି ମ୍ରିୟମାଣ ହୋଇପଡ଼ିଲା ଭକ୍ତ । ପ୍ରାଣପ୍ରିୟ ପ୍ରଭୁଙ୍କ ଉଦ୍ଦେଶ୍ୟରେ ସେ ଗାଇ ଉଠିଲା–

"ରତ୍ନାକର ସ୍ତବ ଗୃହଂ ଗୃହିଣୀ ଚ ପଦ୍ମା
ଦେୟଂ କିମସ୍ତି ଭବତେ ପୁରୁଷୋତ୍ତମାୟ
ଆଭୀର ବାମନୟନା ହୃତ ମାନସାୟ
ଦତ୍ତଂ ମନୋ ଯଦୁପତେ! ତ୍ୱମିଦଂ ଗୃହାଣ ।"

ମୁଁ ତୁମକୁ କ'ଣ ବା ଦେଇପାରିବି ପ୍ରଭୁ! ରତ୍ନାକର ତୁମର ଗୃହ ଏବଂ ଗୃହିଣୀ ହେଉଛନ୍ତି ସ୍ୱୟଂ ମା' କମଳିନୀ । ତୁମର ବା କ'ଣ ଅଭାବ ଅଛି? କେବଳ ଏତିକି ଜାଣେ ଯେ ଗୋପନାରୀମାନେ ତୁମର ମନ ଚୋରି କରି ନେଇଛନ୍ତି । ତେଣୁ ତୁମର ଏକମାତ୍ର ଅଭାବ ହେଲା ମନ । ମୋର ଏଇ ମନଟିକୁ ମୁଁ ତୁମକୁ ଦେଉଛି । ତୁମେ କୃପାକରି ଏହାକୁ ଗ୍ରହଣ କର ।

ଠାକୁର ଲେଖିଲେ–

"ସମୁଦ୍ରରେ ତୁମ୍ଭ ଘର ଗୃହିଣୀ କମଳା,
କି ଧନ ଦେଇ ତୋଷିବି ଆହେ ଚକାଡ଼ୋଳା
ଗୋପଗୋଈମାନେ ତୋର ତୋଷୁଥିଲେ ମନ
ତୋର ମନ ଜାଣି ସେବୁଥିଲେ ଅନୁକ୍ଷଣ ।
ସେପରି ଶକତି ଦେଇ ନାହିଁ ନାରାୟଣ,
କିପରି ପୂଜିବି ତୁମ୍ଭ ପଙ୍କଜ ଚରଣ ।
କେବଳ ମନ ମୋହର ନୁହିଁଇ ଆୟତ୍ତ,
ତକ୍ଷଣେ ନିଅ ମନକୁ କରୁଅଛି ଦତ୍ତ ।
କି ଦତ୍ତ କରିବି ମୁହିଁ ଆହେ ଯଦୁପତି
ଯନ୍ତ୍ରୀ ବିନା ଯନ୍ତ୍ର କେବେ ବାଜି ନ ପାରନ୍ତି ।"

କି ମଧୁର ସମ୍ପର୍କ ସତରେ ଭକ୍ତ ଆଉ ଭଗବାନଙ୍କ ମଧ୍ୟରେ! କେତେ ଆପଣାର ଭାବ ପରସ୍ପର ଭିତରେ! ତାକୁ ବୁଝିବା ଓ ବୁଝାଇବା ଅନ୍ୟମାନଙ୍କ ପକ୍ଷରେ ଅସମ୍ଭବ । ତାହା କେବଳ ଅନୁଭବ ସାପେକ୍ଷ । ଠାକୁରଙ୍କ ଭାଷାରେ–

"ତୋର ମୋର ଭାବ ନ ଜାଣେ କେହି,
ତୁ ମାତ୍ର ଜାଣଉ ଜାଣଇ ମୁହିଁ ।"

ଆଉ କିଏ ଜାଣିବ ସେ ଭାବର କଥା ? ଭକ୍ତ ଦେଲେ ଭଗବାନ ଖାଆନ୍ତି । ଭକ୍ତ ନ ଦେଲେ ସେ ଉପବାସ ରହନ୍ତି । ଭକ୍ତର ହୃଦ ସିଂହାସନରେ ବସି ସେ ମଣୋହି କରନ୍ତି ଷଡ଼ରସରେ ପ୍ରସ୍ତୁତ ଛପନ ଭୋଗ । ଭାବଗ୍ରାହୀଙ୍କ ଭାବସମୁଦ୍ରରେ ଉବୁଟୁବୁ ହୋଇ ଭକ୍ତ ଆତ୍ମହରା ହୁଏ । ଦେହ ସଂସାର ଭୁଲିଯାଏ । କାୟମନୋବାକ୍ୟରେ ତାଙ୍କରି ସେବା ହିଁ ହୁଏ ତା'ର ଏକମାତ୍ର କର୍ମ । ନେତ୍ର ଖୋଲିଲେ ସେ ଦେଖେ ତାଙ୍କୁ । ଆଉ ନେତ୍ର ବୁଜିଦେଲେ ତା' ହୃଦୟରେ ପ୍ରକାଶିତ ହୁଅନ୍ତି ସେଇ ପ୍ରଭୁ । ନିଜର ସୁଖ ଦୁଃଖ ପ୍ରତି ସେ ନିସ୍ପୃହ ହୋଇଯାଏ । ମୁହୂର୍ତ୍ତଟିଏ ବି ସେ ପ୍ରଭୁଙ୍କଠାରୁ ଅଲଗା ହେବାକୁ ଚାହେଁନା । ସାମାନ୍ୟ ବିସ୍ମରଣରେ ସେ ବିଚଳିତ ହୋଇଉଠେ । ଚଗଲା ମନକୁ ଶାସନ କରିବା ପାଇଁ ସେ ପ୍ରଭୁଙ୍କର ସହାୟତା ଲୋଡ଼େ । ଆଉ ନିବେଦନ କରେ – ପ୍ରଭୁ !

ଚଗଲା ମାନସ ସେ ପଦେ ନ ଗଲା
ତୁମ୍ଭେ ଯଦି କହ ମୋର କିସ ଗଲା ।
ଲଜ୍ଜା ନ ହୋଇବ ଯଦ୍ୟପି ତୁମ୍ଭଙ୍କୁ
ତେବେ କିଛି ନାହିଁ ମୋର କହିବାକୁ ।
× × ×
ତୁମ୍ଭ ମଙ୍ଗଳ କାମନା, ମୁହିଁ କରୁଥାଏ ସିନା ।"

ବାସ୍ତବିକ ପ୍ରଭୁ ପ୍ରେମରେ ପାଗଳ ଭକ୍ତ ହିଁ କେବଳ ଗାଇପାରେ ଏଭଳି ମର୍ମସ୍ପର୍ଶୀ ପଦାବଳୀ । ପ୍ରଭୁଙ୍କ ସୁଖ ହିଁ ତା'ର ସୁଖ । ପ୍ରଭୁଙ୍କ ମଙ୍ଗଳ ହିଁ ତା'ର ମଙ୍ଗଳ । ପ୍ରଭୁଙ୍କ ଆନନ୍ଦ ହିଁ ତା'ର ଆନନ୍ଦ । ତା'ର କୌଣସି ସ୍ୱତନ୍ତ୍ର ଇଚ୍ଛା ନାହିଁ । ପ୍ରଭୁଙ୍କ ଇଚ୍ଛା ହିଁ ତା'ର ଇଚ୍ଛା । ପ୍ରଭୁଙ୍କୁ ଭୋକ ଲାଗିଲେ ତାକୁ ବି ଭୋକ ଲାଗେ । ଆଉ ସେତେବେଳେ ଯଦି ପ୍ରଭୁଙ୍କୁ ଦେବା ପାଇଁ ତା' ପାଖରେ କିଛି ନ ଥାଏ, ତେବେ ଦରକାର ପଡ଼ିଲେ ସେ ଚୋରି କରେ । ସବୁ ବିଧି ନିଷେଧ ସେତେବେଳେ ତା' ପାଇଁ ମୂଲ୍ୟହୀନ ହୋଇଯାଏ । ଗାଳିମାଡ଼କୁ ସେ ଭ୍ରୂକ୍ଷେପ କରେନା । ନିନ୍ଦା ପ୍ରଶଂସାକୁ ସେ ହସି ହସି ସହିଯାଏ । ପ୍ରଭୁ ଯଦି ଚୋରଙ୍କ ସର୍ଦ୍ଦାର ପଦରେ ଅଧିଷ୍ଠିତ ହୋଇ ମଧ୍ୟ ଅବିଚଳିତ ରହିପାରିଲେ ତେବେ ସେ ବା ଦୁଃଖ କରିବ କାହିଁକି ? ସେ ତ ଆଉ ନିଜ ପାଇଁ ଚୋରି କରିନି ? ଚୋରି କରିଛି ପ୍ରଭୁଙ୍କ ପାଇଁ । ତେଣୁ ତାକୁ କେହି ଚୋର କହିଲେ, ସେ ଭାବେ ଏଇଟା ତା'ର ଆଉ ଗୋଟିଏ ଭୂଷଣ – ଦୂଷଣ ନୁହେଁ ।

ଠିକ୍ ଏଇମିତି ଏକ ପରିସ୍ଥିତିରେ ଚୋରି କରି ଚୋର ବୋଲାଇଥିଲେ ଠାକୁରଙ୍କ ପ୍ରିୟ ଭକ୍ତ ସ୍ୱର୍ଗତ ନୀଳମଣି ଷଡ଼ଙ୍ଗୀ ।

୧୯୭୯ ଦଶହରାରେ ଆମେ ଯେତେବେଳେ ଠାକୁରଙ୍କ ଦୀକ୍ଷା ନେବା ପାଇଁ ଆଶ୍ରମ ଯାଇଥିଲୁ ସେତିକିବେଳୁ ମଉସାଙ୍କ ସହିତ ଆମର ପରିଚୟ । ମୋ ଜାଣିବାରେ ନୂଆ ପୁରୁଣା ସବୁ ଭକ୍ତଙ୍କର ତାଙ୍କ ପ୍ରତି ଆକର୍ଷଣର ମୁଖ୍ୟ କାରଣ ହେଲା ତାଙ୍କ ମୁଖ ନିଃସୃତ ଠାକୁରଙ୍କର କଥା । ଯେମିତି ରସାଳ ସେମିତି ଭାବୋଦ୍ଦୀପକ । ସେଥର ଏକା ସାଙ୍ଗରେ ଡଙ୍ଗାରେ ଆଶ୍ରମରୁ ଡେଲାଙ୍ଗ ଫେରିଲା ବେଳର କଥା ଏବେ ବି ମନେ ପଡ଼ିଯାଏ । ଆଉ ସେଇ କଥା ଲୋଭରେ କଟକ ରହଣି କାଳରେ ମୁଁ ଦୁଇ ଦୁଇଥର ତାଙ୍କର ଚାଉଳିଆଗଞ୍ଜ ଘରକୁ ଯାଇ ଭେଟ ନ ପାଇ ଫେରିବାର ଦୁଃଖ ଏବେ ବି ଜୀବନ୍ତ ।

କେଉଁ ସୂତ୍ରରୁ ପ୍ରଥମ ସୂଚନା ପାଇଲି ମନେ ନାହିଁ । ତେବେ ଥରଟିଏ ସୁଯୋଗ ପାଇ ତାଙ୍କୁ ପଚାରିଥିଲି ପିଜୁଳି ଚୋରି କଥା । ଆଉ ଖୁବ୍ ଆଗ୍ରହରେ ସେ ମୋତେ ଶୁଣାଇଥିଲେ ତାଙ୍କର ଅନୁଭୂତି ।

୧୯୫୪ ମସିହାର କଥା । ବର୍ତ୍ତମାନର ଯାଜପୁର ଜିଲ୍ଲା ଅନ୍ତର୍ଗତ ବରୀ ଅଞ୍ଚଳର ଭୁରୁଙ୍ଗା ଗାଁ ହେଉଛି ତାଙ୍କ ଜନ୍ମସ୍ଥାନ । ଗାଁର ଆଉ ଜଣେ ଭକ୍ତ ଯୋଗୀନନା (ଯୋଗେନ୍ଦ୍ର ଷଡ଼ଙ୍ଗୀ) ଓ ସେ ବାହାରି ପଡ଼ିଲେ କରମଳା ଚନ୍ଦ୍ରଙ୍କ ଦର୍ଶନକୁ । ରେଳ ଯୋଗେ ଯାଇ ପୁରୀରେ ପହଞ୍ଚିଲେ । ନିତ୍ୟକର୍ମ ସାରି ଦିନ ପ୍ରାୟ ଏଗାରଟା ବେଳେ ପୁରୀ ଛାଡ଼ିଲେ । ସେତେବେଳେ ରାସ୍ତାଘାଟ କିମ୍ବା ଯାନବାହନର ସେମିତି କିଛି ସୁବିଧା ନ **ଥାଏ** । ରେଣ୍ଡା-ନୂଆଗାଁ ବାଟ ଦେଇ ତେଇଶି-ଚବିଶି ମାଇଲ୍ ବାଟ ଚାଲି ଚାଲି ଯିବାକୁ ହୁଏ ପୁରୀରୁ କରମଳା ।

ସେଦିନ ଥାଏ ପ୍ରଥମାଷ୍ଟମୀର ପୂର୍ବଦିନ । ନିଜର ବ୍ୟାଗ୍ ଦି'ଖଣ୍ଡ ଧରି ଯାତ୍ରା ଆରମ୍ଭ କଲେ ଦୁଇ ଭକ୍ତ । ଏକା ରାହାରେ ଏତେ ବାଟ ଚାଲିବାର ଅଭ୍ୟାସ ନାହିଁ । କଷ୍ଟ ଲାଗୁଛି ସତ । ହେଲେ ଲକ୍ଷ୍ୟ କିନ୍ତୁ ସ୍ଥିର ।

ଶାନ୍ତି ଆନନ୍ଦାଶ୍ରମରେ ଠାକୁରଙ୍କ ଶ୍ରୀଚରଣ ଦର୍ଶନ, ତାଙ୍କ ଅଭୟ କରର କୋମଳ ସ୍ପର୍ଶ ତାଙ୍କ ଭୁବନମୋହନ ଠାଣିର ଅପୂର୍ବ ଛଟା ଏବଂ ସର୍ବୋପରି ତାଙ୍କ ଶ୍ରୀମୁଖ ନିସୃତ ଅମୃତମୟୀ ବାଣୀର ଦୁର୍ବାର ଆକର୍ଷଣ ତାଙ୍କୁ ଟାଣି ଆଣିଛି କାହିଁ କେତେ ଦୂରରୁ । ଆଉ ଏବେ ଟିକିଏ କଷ୍ଟ ପଡ଼ିଗଲା ବୋଲି କ'ଣ ସେ ଡରିଯିବେ ? ନା, ଦୁନିଆ ଓଲଟ ପାଲଟ ହୋଇଯାଇପାରେ କିନ୍ତୁ କରମଳା ଆଡ଼କୁ ବଢ଼ିଥିବା ପାଦ ଆଉ ପଛକୁ ଫେରିପାରେନା । କାରଣ ତାହା ହେଉଛି ଏକ ଦୁର୍ବାର ଆକର୍ଷଣ । ସେ ଆକର୍ଷଣ ହେଉଛି ଚୁମ୍ବକ ପ୍ରତି

ଲୁହାର ଆକର୍ଷଣ । ସେ ଆକର୍ଷଣ ହେଉଛି ସାଗର ପ୍ରତି ନଦୀର ଆକର୍ଷଣ । ସେ ଆକର୍ଷଣ ହେଉଛି ଅଂଶୀ ପ୍ରତି ଅଂଶର ଆକର୍ଷଣ । ଆଉ ସେ ଆକର୍ଷଣ ହେଉଛି ଭଗବାନଙ୍କ ପ୍ରତି ଭକ୍ତର ଆକର୍ଷଣ । କୌଣସି ଶକ୍ତି ତା'ର ଗତିରୋଧ କରି ପାରିବନି । ତେଣୁ ପ୍ରତିକୂଳତାକୁ ଭ୍ରୂକ୍ଷେପ ନ କରି ଆଗେଇ ଚାଲିଲେ ଦୁଇଭକ୍ତ ।

ସୂର୍ଯ୍ୟଙ୍କର ତେଜ ପ୍ରଖର ନ ଥିଲେ ବି ମୁଣ୍ଡରେ ଗାମୁଛା ଖଣ୍ଡିଏ ଲେଖାଏଁ ଗୁଡ଼ା ହୋଇଛି । କେଉଁଠି ଗଛଟିଏ ପଡ଼ିଲେ ତା' ଛାଇରେ ଟିକେ ବସି ପଡୁଛନ୍ତି । ଥକ୍କା ମେଣ୍ଟିଲା ପରେ ପୁଣି ଚାଲୁଛନ୍ତି ।

ପ୍ରାୟ ଅଧାବାଟ ଯାଇଛନ୍ତି, ନୀଳମଣି ମଉସାଙ୍କ ରଥ ଆଉ ଚଳିଲାନି । କହିଲେ– ଯୋଗିଆନ୍ନା, ଠାକୁରଙ୍କୁ ଭାରି ଭୋକ ହେଲାଣି, କ'ଣ କରିବା ?

ଯୋଗୀନନା– ରହ, ଆଗକୁ ଗାଁ ଗଣ୍ଡା ପଡ଼ିଲେ ମୁଢ଼ି ଫୁଟି ଖୋଜିବା । ଆଉ ଏ ବିଲ ମଝିଟାରେ ... ?

ମନରେ ସାହସ ବାନ୍ଧି ପୁଣି ବସିବା ସ୍ଥାନରୁ ଉଠିପଡ଼ିଲେ ନୀଳମଣି ମଉସା । ହେଲେ ଗାଁ କାହିଁ ?

ମଉସାଙ୍କର ହଠାତ୍ ମନେ ପଡ଼ିଗଲା, ଯୋଗିଆନ୍ନା ତାଙ୍କ ବାଡ଼ିର ବଡ଼ ବଡ଼ ପିଜୁଳି ଠାକୁରଙ୍କ ପାଇଁ ଆଣିଛନ୍ତି । କହିଲେ– ଯୋଗିଆନ୍ନା, ଠାକୁରଙ୍କୁ ଭାରି ଭୋକ ହେଲାଣି । ଗାଁ ଗଣ୍ଡା ତ କିଛି ଦିଶୁନାହିଁ । କ'ଣ ଆଉ କରିବା ?

ଯୋଗୀନନା– ତୁ କହୁନୁ କ'ଣ କରିବା ? ଏଠି ବାଟ ମଝିଟାରେ କୋଉଠି କ'ଣ ମିଳିବ ଯେ ମୁଁ ତୋତେ ଦେବି ?

ମଉସା– ତମ ବ୍ୟାଗ୍‌ରେ ପରା ପିଜୁଳି ରଖିଛ ? ସେଇଥିରୁ ଦି'ଟା ଦେଲେ ମୁଁ ଠାକୁରଙ୍କୁ ଦିଅନ୍ତିନି ?

ଯୋଗୀନନା– ହଇରେ ! ତତେ ଆଉ କିଛି ଦିଶିଲାନି ? ସିଧା ନଜର ପଡ଼ିଗଲା ମୋ ବ୍ୟାଗ୍‌ର ପିଜୁଳି ଉପରେ ? ହଇରେ ! ତୁ କ'ଣ ଜାଣିନୁ ସେଇଟା ଠାକୁରଙ୍କ ଅହ୍ଲଣିଆ ପାଇଁ ଆଣିଛି ବୋଲି ? ତୁ ତାକୁ ଆଶା କରୁଛୁ, ମାରା ହୋଇ ଯିବନି ? ଛିଃ, କ'ଣ ତୋତେ ଆଉ କହନ୍ତି ଯେ ?

ମଉସା– କହୁଛି ପରା ଠାକୁରଙ୍କୁ ଭୋକ ହେଲାଣି ଦେବି ବୋଲି ।

ଯୋଗୀନନା– ନା ନା ତୁ ଯାହା କହ ପଛେ, ଠାକୁରଙ୍କ ଅହ୍ଲଣିଆ ପିଜୁଳି ମୁଁ ତୋତେ ଦେଇପାରିବିନି । ତେଣିକି ତୁ ଯାହା ଭାବୁଛୁ ଭାବ ।

ମଉସା ଦେଖିଲେ ଯୋଗୀନନା ସହଜରେ ପିଜୁଳି ଦେବେନି । ତେଣୁ କିଛି ବାଟ ପରେ ସେ ବ୍ୟାଗ୍‌ଟା ଥୋଇ ଦେଇ ଯେତେବେଳେ ପରିସ୍ରା ଗଲେ, ସେତିକିବେଳେ

ତରତରରେ ଦୁଇଟା ବଡ଼ ବଡ଼ ପିଜୁଳି ବାହାର କରି ଆଣିଲେ । ଦେଖିଲେ କାଳେ ଛଡ଼ାଇ ନେବେ, ସେଥିପାଇଁ ଦୁଇ ହାତରେ ଦୁଇଟା ଧରି ଠାକୁରଙ୍କୁ ସମର୍ପଣ କରିଦେଲେ । ଆଉ ତା'ପରେ ଦୁଇଟା ଯାକରୁ କଳେ କଳେ କାମୁଡ଼ି ନେଇ ଆନନ୍ଦରେ ପ୍ରସାଦ ସେବା କରିବାକୁ ଲାଗିଲେ ।

ଯୋଗୀନନ୍ଦା ମଉସାଙ୍କ ହାତରେ ପିଜୁଳି ଦେଖି କ୍ରୋଧରେ ଅଜ୍ଞାନ ହେଇଗଲେ । ତାଙ୍କ ପାଟିକୁ ଯାହା ଆସିଲା ବକିଗଲେ । ହଇରେ ! ତୋ ପେଟ କ'ଣ ଏମିତି ପୋଡ଼ିଗଲା ଯେ ତୁ ଆଉ ସମ୍ଭାଳି ପାରିଲୁନି ? ଶେଷକୁ ଠାକୁରଙ୍କ ଅଇଁଷିଆ ପିଜୁଳିକୁ ନାହିଁ କରିବା ସତ୍ତ୍ୱେ ଖାଇଦେଲୁ ? ବାଡ଼ିରେ ଫଳିଥିଲା ବୋଲି କେଡ଼େ ଶ୍ରଦ୍ଧାରେ ପ୍ରଥମ ଫଳ ଠାକୁରଙ୍କ ପାଇଁ ଆଣିଥିଲି । ତୁ ତାକୁ ମାରା କରିଦେଲୁ ? ସେ ଆଉ କ'ଣ ଠାକୁରଙ୍କ ସେବାରେ ଲାଗିବ ?

—କହିଲି ପରା ମୁଁ ଖାଇନି, ଠାକୁରଙ୍କୁ ଦେଇଛି ବୋଲି, ତମେ ଏମିତି ରାଗୁଛ କାହିଁକି କହିଲ ?

—ହଁ, ଯା ଯା କହିଲା କ'ଣ ନାଁ ଠାକୁରଙ୍କୁ ଦେଇଛି ।

ଯୋଗୀନନ୍ଦା ବାଟରେ ଗରଗର ହେଉଥାନ୍ତି । ଘଟଣାସ୍ଥଳରୁ କରମଳା ଯାଏଁ ପାଟି କେତେବେଳେ ବନ୍ଦ ନାହିଁ । ଦୁହେଁ ସାଙ୍ଗ ହୋଇ ଆସିଥିଲେ । ମା' ପେଟ ଭାଇଠୁ ବଳି ଆପଣାର ହେଉଛନ୍ତି ଗୁରୁଭାଇ ଯୋଗୀନନ୍ଦା । ହେଲେ ଏ ପିଜୁଳି ତାଙ୍କ ଦୁଇଜଣଙ୍କ ଭିତରେ କେମିତି ଗୋଟାଏ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଦେଲା ।

ପରିସ୍ଥିତି ଏମିତି ଯେ ଦୁହିଁଙ୍କ ଭିତରୁ କିଏ ଠିକ୍ କିଏ ଭୁଲ ତାହା କହିବା ମୁସ୍କିଲ । ଜଣେ ଭାବରାଜ୍ୟର ଉତ୍ତୁଙ୍ଗ ଶିଖରୀର କଥା କହିଲା ବେଳେ ଆଉ ଜଣେ ତା' କ୍ରୋଧର ଯଥାର୍ଥ ଉପଯୋଗ କରିଛି । ସେ ଯାହାହେଉ ଅବଶିଷ୍ଟ ଯାତ୍ରା ଦୁର୍ବିସହ ହୋଇପଡ଼ିଲା ଯୋଗୀନନ୍ଦାଙ୍କ ପାଇଁ । କିନ୍ତୁ ନୀଳମଣି ମଉସା ଥିଲେ ସମ୍ପୂର୍ଣ୍ଣ ସ୍ୱାଭାବିକ । କାରଣ ତାଙ୍କର ଅନ୍ତରାତ୍ମା କିଛି ଭୁଲ କରିଛି ବୋଲି ମାନିବାକୁ ପ୍ରସ୍ତୁତ ନ ଥିଲା । ଠାକୁରଙ୍କ ସମର୍ପଣ ସୂତ୍ରର କାର୍ଯ୍ୟକାରିତା ସମ୍ପର୍କରେ ଭୂରି ଭୂରି ଚାକ୍ଷୁଷ ପ୍ରମାଣ ଥିଲାବେଳେ ସେ ତାଙ୍କ ମନ ଊଣା କରିବେ କାହିଁକି ? ଯଦି ତାହା ହୁଏ ତେବେ କୁମୁଦିନୀ ମା'ର ଗରମ କ୍ଷୀର ସମର୍ପଣ, ନିରଞ୍ଜନ ପାତ୍ରଙ୍କ ବଣୁଆ ଫୁଲ ସମର୍ପଣ ଆଦି ସବୁକଥା ମିଛ ହୋଇଯିବନି କି ?

ଆଶ୍ରମରେ ପହଞ୍ଚିଲା ବେଳକୁ ଠାକୁର ବିଶ୍ରାମ କରୁଥାନ୍ତି । ତେଣୁ ଦୁହେଁ ଧୁଆ ଧୁଇ ପରେ ଅର୍ଜୁନ ବାବାଙ୍କ (ଆଶ୍ରମର ତୃତୀୟ ଆଚାର୍ଯ୍ୟ) ଘରେ ରହିଲେ । ସନ୍ଧ୍ୟା ପ୍ରାୟ ସାତଟା ବେଳକୁ ଠାକୁରଙ୍କ ଶ୍ରୀଚରଣ ଦର୍ଶନର ସୁଯୋଗ ମିଳିଲା ବୈଠକ ଘରେ (ବର୍ତ୍ତମାନର ସମାଧି ମନ୍ଦିର) ଦୁହେଁ ସାଷ୍ଟାଙ୍ଗ ପ୍ରଣାମ କଲେ । ପୁରୀଠାରୁ ଚାଲି ଚାଲି ଆସିଛନ୍ତି ଶୁଣି କହିଲେ– ବାଟରେ କିଛି ଅସୁବିଧା ହେଇନି ତ ?

ଇତି ମଧ୍ୟରେ ଯୋଗୀନନ୍ଦା ତାଙ୍କ ବ୍ୟାଗ୍ ଖୋଲି ଗାଁରୁ ଆଣିଥିବା ପିଚ୍ଚୁଳି ସବୁ ଠାକୁରଙ୍କ ଟେବୁଲ ଉପରେ ଥୋଇଲେ । ଠାକୁର ମୁରୁକି ମୁରୁକି ହସୁଥାନ୍ତି । ପିଚ୍ଚୁଳି ଦେଖି କହି ପକାଇଲେ– ବୁଝିଲ ଯୋଗୀ ! ତୁମେ ବାଟରେ ଯଦି ନୀଳମଣିକୁ ପିଚ୍ଚୁଳି ଦେଇ ନ ଥାନ୍ତ, ତେବେ ଠାକୁର ଏସବୁକୁ ବିଷବତ୍ ଦେଖିଥାନ୍ତେ । କେବେ ବି ଗ୍ରହଣ କରି ନ ଥାନ୍ତେ ।

– ମୋର ଅପରାଧ କ୍ଷମାକର ପ୍ରଭୁ ! ମୁଁ ଅଜ୍ଞାନ, ଜାଣି ପାରିଲିନି ।

– ଆଚ୍ଛା ଠାକୁରଙ୍କୁ ଦେବି ବୋଲି ନୀଳମଣି ତୁମକୁ କହି ନ ଥିଲା ?

– ହଁ, କହିଥିଲା ପ୍ରଭୁ !

– ତେବେ ଅବିଶ୍ୱାସ କରୁଥିଲ କାହିଁକି ? ଭକ୍ତ ମୁଖରେ ପରା ଠାକୁର ଭୋଜନ କରନ୍ତି ।

ଠାକୁର ଯେ ଯୋଗୀନନ୍ଦାଙ୍କ ପିଚ୍ଚୁଳି ଗ୍ରହଣ କରିଛନ୍ତି – ଏଇକଥା ଭାବି ନୀଳମଣି ମଉସା ନିରବରେ ଆନନ୍ଦାଶ୍ରୁ ଝରାଇଲା ବେଳେ ଯୋଗୀନନ୍ଦା ଠାକୁରଙ୍କ ଶ୍ରୀଚରଣରେ ପଡ଼ି ବାରମ୍ବାର କ୍ଷମାଭିକ୍ଷା କରୁଥିଲେ ।

ଘଟଣାର ଅଠର ବର୍ଷ ପରେ ଥରେ ଡାକ୍ତର ରେବତୀ ବାବୁଙ୍କ ମା (ବୁଢ଼ୀମା) ମଉସାଙ୍କୁ ପଚାରିଲେ – ଆରେ ତୁ ସେଇ ପିଚ୍ଚୁଳି ଚୋର ନା ?

ଆଉ ମଉସା ହସି ହସି କହିଲେ – ହଁ, ମୁଁ ସେଇ ପିଚ୍ଚୁଳି ଚୋର ।

ସବୁକଥା ଶୁଣିଲା ପରେ ବୁଢ଼ୀମା ସାଜିଲା ଏ ଲୀଳା କାହାଣୀର ପ୍ରଥମ ପ୍ରଚାରକ ।



# ତୁଳସୀ ଉପାଖ୍ୟାନ

ଅନେକ ଗଛର ଅନେକ ପତ୍ର ଅଛି । କିନ୍ତୁ ତା' ଭିତରୁ ମାତ୍ର ଦୁଇଟି ପତ୍ରର ମାହାତ୍ମ୍ୟ ସ୍ୱତନ୍ତ୍ର । ସେ ଦୁଇଟି ହେଲା ବେଲପତ୍ର ଆଉ ତୁଳସୀପତ୍ର । ଗୋଟିଏ ପ୍ରିୟ ଶିବଙ୍କର ଏବଂ ଅନ୍ୟଟି ପ୍ରିୟ ଗୋଲୋକ ବିହାରୀ ବିଷ୍ଣୁଙ୍କର । ତେଣୁ ଶିବପୂଜାର ପ୍ରଧାନ ସାମଗ୍ରୀ ବେଲପତ୍ର ଓ ବିଷ୍ଣୁପୂଜାର ପ୍ରଧାନ ସାମଗ୍ରୀ ହେଉଛି ତୁଳସୀ ପତ୍ର । ବିନା ତୁଳସୀରେ ବିଷ୍ଣୁ ପୂଜା ହୋଇପାରେନା । ଭଗବାନ ସ୍ୱୟଂ ତୁଳସୀକୁ ଏ ଗୌରବ ପ୍ରଦାନ କରିଛନ୍ତି । ଥରେ ଦ୍ୱାରକାନାଥ କୃଷ୍ଣଙ୍କୁ ନିକିତିର ଗୋଟିଏ ପାଖରେ ବସାଇ ଅନ୍ୟ ପାଖରେ ସମସ୍ତ ଧନରତ୍ନ ରଖି ଦେଖାଗଲା ଯେ ପ୍ରଭୁ ତଳୁ ଟିକିଏ ବି ଉଠିଲେ ନାହିଁ । ଶେଷରେ ଗୋଟିଏ ତୁଳସୀ ପତ୍ରଦ୍ୱାରା ହିଁ ଘଟଣାର ସମାଧାନ ହେଲା । ଠାକୁର ଲେଖିଲେ – "ତୁଳରେ ହୁଅନ୍ତେ ବେଶି ତେଣୁ ତା' ନାମ ତୁଳସୀ ।"

ଏ ଯେଉଁ ତୁଳସୀ କୃଷ୍ଣଙ୍କଠାରୁ ମଧ୍ୟ ଓଜନରେ ବେଶି ହେଲା, ତାହା କ'ଣ ଗୋଟିଏ ସାମାନ୍ୟ ପତ୍ର ? ନା, ସେ ପତ୍ର ସାମାନ୍ୟ ନୁହେଁ । ଠାକୁରଙ୍କ ଭାଷାରେ – "ତା' ନାମ ମନ ତୁଳସୀ ।" ସେ ପତ୍ର ତୁଳସୀ ନୁହେଁ – ମନ ତୁଳସୀ । ଥରେ ଆଶ୍ରମରେ ମା' ରମା (ମୋ ବଡ଼ବୋଉ) ଠାକୁରଙ୍କ ଉଦ୍ଦେଶ୍ୟରେ ତୁଳସୀ ଚୟନ କରୁଥାଏ । ଠିକ୍ ଏତିକି ବେଳେ ଠାକୁର ଆସି ତା'ରି ପାଖରେ ହାଜର । ପଚାରିଲେ – "କ'ଣ ମା !ଶାଗ ପତ୍ରଟେ ଛିଣ୍ଡାଇଦେଲୁ ?" ମା' ରମା ଏକାଥରକେ ଅବାକ୍ । ହଁ, ଶାଗ ନ କହିବେ କାହିଁକି ? କଥାଟା ତ ସେମିତି ହେଇଛି । ଅନ୍ୟମନସ୍କ ଭାବେ ତ ସେ ତୁଳସୀ ଚୟନ କରିଛି । ମନ ଆଉ ତୁଳସୀ ସହିତ ଯୋଗ ହେଲା କେତେବେଳେ ?

ଏ ସେଇ ତୁଳସୀ ଉପାଖ୍ୟାନ । ନରରୂପୀ ନାରାୟଣ – ଏଇ ଜ୍ଞାନରେ, ଏଇ ବିଶ୍ୱାସରେ ଭକ୍ତମାନେ ତେଣୁ ଠାକୁରଙ୍କୁ ପ୍ରତ୍ୟହ ତୁଳସୀ ପିନ୍ଧାନ୍ତି ।

ସେଥର ଗଞ୍ଜାମ ଜିଲ୍ଲା ଲୋଚାପଡ଼ାର ଭକ୍ତ ଗଣପତି ସାହୁ, ଯିଏ 'କଳି ଭାଗବତ' ମକଦ୍ଦମାରେ ଠାକୁରଙ୍କୁ ଜାମିନ୍‌ରେ ଆଣିଥିଲେ – ସେ ଆସିଥାନ୍ତି । ରହୁଥାନ୍ତି ଧର୍ମଶାଳାରେ । ସକାଳ ପୂଜା ଆଳତୀ ଆଉ ଅଳ୍ପ ସମୟ ବାକି ଥାଏ । ଠାକୁର ବସିଥାନ୍ତି

ଚଉକିରେ । ଆଶ୍ରମର ଅନ୍ତେବାସୀ ସନ୍ନ୍ୟାସୀ, ସନ୍ନ୍ୟାସିନୀ, ବ୍ରହ୍ମଚାରୀ ତଥା ଭକ୍ତମାନେ ଜଣ ପରେ ଜଣେ ଆସି ଠାକୁରଙ୍କୁ ତୁଳସୀ ଦେଉଥାନ୍ତି । ଠାକୁରେ ହଠାତ୍ ଚଉକିରୁ ଉଠି ଚାଲିବାକୁ ଆରମ୍ଭ କଲେ । ସବୁଦିନେ ଖେଚୁଡ଼ି ଧୂପ ପରେ ଠାକୁର ପ୍ରାୟ ଟିକିଏ ବୁଲି ବାହାରନ୍ତି.... କେତେବେଳେ କରମଳା ତ କେତେବେଳେ ଭୋଇପଡ଼ା ଆଡ଼େ । କେତେବେଳେ କାହାକୁ ଟିକିଏ ଦର୍ଶନ ଦେଇ କୃତାର୍ଥ କରିବା ପାଇଁ ତ କେତେବେଳେ କାହାକୁ ଗୋପନରେ କିଛି ଆବଶ୍ୟକୀୟ ଦ୍ରବ୍ୟ ନେଇ ଦେଇ ଆସିବା ପାଇଁ । କ୍ଷେତ୍ରାଧିପତି ଯଦି କ୍ଷେତ୍ରବାସୀଙ୍କ ଭଲ ମନ୍ଦ ନ ବୁଝିବେ, ତା'ହେଲେ ବୁଝିବ କିଏ ? ଏକଥା ପ୍ରାୟ ସମସ୍ତେ ଜାଣନ୍ତି । କିନ୍ତୁ ଆଜି ହଠାତ୍ ପୂଜା ଆଳତୀ ପୂର୍ବରୁ ଠାକୁର ଭୋଇପଡ଼ା ଆଡ଼େ ଯିବାର ଦେଖି ନିକଟରେ ଥିବା କିଛି ସେବକ, ସନ୍ନ୍ୟାସୀ ଓ ଭକ୍ତ ତାଙ୍କର ଅନୁଗମନ କଲେ । ସେମାନଙ୍କ ମଧ୍ୟରେ ଥାନ୍ତି ବାରିପଦାର ଭକ୍ତ ନିଧିବାବୁ । କେହି କିଛି ବୁଝିପାରୁ ନ ଥାନ୍ତି । ଯାଉ ଯାଉ ଠାକୁରେ ମୁହାଁଇଲେ ଧର୍ମଶାଳା ଆଡ଼କୁ । ଏମାନେ ମଧ୍ୟ ଚାଲିଥାନ୍ତି ତାଙ୍କ ପଛେ ପଛେ । ଉତ୍ସୁକତା ବଢ଼ି ଚାଲିଥାଏ ସମସ୍ତଙ୍କର । ଠାକୁରେ ପ୍ରବେଶ କଲେ ଗୋଟିଏ କୋଠରୀରେ, ଯେଉଁଠି ସ୍ନାନାଦି ନିତ୍ୟକର୍ମ ସାରି ବସିଥିଲେ ଭକ୍ତ ଗଣପତି... ମୁଦ୍ରିତ ନୟନରେ । ଠାକୁରେ ଉଭା ହେଲେ ତାଙ୍କ ସମ୍ମୁଖରେ । କିଛି କ୍ଷଣ ପରେ ଆଖି ଖୋଲିଲେ ଗଣପତି । ଆସନରୁ ଉଠି ଅର୍ପଣ କଲେ ହାତରେ ଧରିଥିବା ତୁଳସୀ । ଲୋଟିପଡ଼ିଲେ ଶ୍ରୀଚରଣ ତଳେ । ସହାସ୍ୟ ବଦନରେ ଲେଉଟି ଆସିଲେ ବିଶ୍ୱ ଚିନ୍ତାମଣି ଆଳତୀ ମନ୍ଦିରକୁ ।

ଠାକୁର ଲେଖିଲେ – "ମାନସିକେ ମନ ପ୍ରସନ୍ନ ନ ହୁଏ ସାକ୍ଷାତ ହେବାକୁ କେତେ ମାତର"... ତେବେ କ'ଣ ମାନସିକ ପୂଜାରେ ବସିଥିଲେ ଗଣପତି ! ଆଉ ତାଙ୍କ ମନର ପ୍ରସନ୍ନତା ପାଇଁ କ'ଣ ଠାକୁରଙ୍କର ଏ ସାକ୍ଷାତ ଦର୍ଶନର ବ୍ୟବସ୍ଥା ! ... କିଏ କହିବ ? କିଏ ଜାଣେ ଯେ କହିବ ଭକ୍ତ ଭଗବାନଙ୍କର ଏ ନିଗୂଢ଼ ସମ୍ବନ୍ଧର କଥା ? ଜାଣିଥିଲେ ଜାଣିଥିବେ ସେଇ ଭାବୁକ ଭକ୍ତ ଗଣପତି ଏବଂ ତାଙ୍କର ଭାବକୁ ଗ୍ରହଣ କରିଥିବା ଭାବଗ୍ରାହୀ ଠାକୁର, ଯିଏ ଉଠି ଆସିଥିଲେ ନିଜ ବସିବା ସ୍ଥାନରୁ । ସେଦିନର ଏ ଲୀଳାରେ ନ ଥିଲା ପରିପାଟୀ । ନ ଥିଲା ଭାବାଙ୍କୁରର ପ୍ରକାଶ... ବୋଧହୁଏ ଏ ଲୀଳାରସକୁ ଏକାନ୍ତ ଗୋପନୀୟ ଭାବରେ ଆସ୍ୱାଦନ କରିବାକୁ ଚାହୁଁଥିଲେ ଅନ୍ତରଙ୍ଗ ଭକ୍ତ ଗଣପତି ଏବଂ ତାଙ୍କର ଏଇ ଇଚ୍ଛାକୁ ପୂରଣ କରିଥିଲେ ଅନ୍ତର୍ଯ୍ୟାମୀ ଠାକୁର ।

ଚାଣକ୍ୟ ନୀତି କହେ – ରାଜଦ୍ୱାରେ ଶ୍ମଶାନେ ଚ ଯଃ ତିଷ୍ଠତି ସଃ ବାନ୍ଧବ । ପ୍ରବଳ ପରାକ୍ରମୀ ବ୍ରିଟିଶ୍ ଶାସନ ବିରୋଧରେ ମସୀ ଚାଳନା କରି ରାଜରୋଷର ଶିକାର ହୋଇଥିବା ଶ୍ରୀ ଶ୍ରୀ ଠାକୁରଙ୍କୁ ରାଜଦ୍ରୋହର ସଙ୍ଗୀନ ଅଭିଯୋଗରୁ ମୁକୁଳାଇ ତାଙ୍କୁ

ଢାମିନ୍‌ରେ ଆଣିବାର ଦୁଃସାହସ କରିଥିବା ଏବଂ ବେପାରୀରୁ ଶାସକ ସାଜିଥିବା ଦେଶ ଲୁଣ୍ଠନକାରୀଙ୍କ ଅଦାଲତରେ ସେ ବାବଦ ସମସ୍ତ ଅର୍ଥରାଶି ପଇଠ କରିଥିବା ଭକ୍ତ ଗଣପତି ସାହୁ ଏବଂ ତାଙ୍କ ଭାଇ ବାପାଣି ସାହୁ ତେବେ କେଉଁ ଶ୍ରେଣୀର ଭକ୍ତ ?... କ'ଣ ସାଧାରଣ ଭକ୍ତ ? ...ନା, ଠାକୁରେ ସିନା ଆମର ବନ୍ଧୁ... ସିଏ ଠାକୁରଙ୍କର ବନ୍ଧୁ । ...ଗୁଆ ଦିଆନିଆ ବନ୍ଧୁଠାରୁ ଢେର ଊର୍ଦ୍ଧ୍ୱରେ ସେ ବନ୍ଧୁତା... ସେ ଭାବ ଟିକେ ନିଆରା ।

ଏ ତ ଗଲା ଠାକୁରଙ୍କ ପ୍ରକଟ ବେଳର କଥା । ଏବେ ଆସନ୍ତୁ ଶୁଣିବା ଅପ୍ରକଟ ପରର ଗୋଟିଏ ଘଟଣା ।

ବେଶି ଦିନର କଥା ନୁହେଁ । ଅଳ୍ପ କିଛି ବର୍ଷ ତଳର କଥା ହେବ । ବର୍ତ୍ତମାନର ଯାଜପୁର ଜିଲ୍ଲା ଅନ୍ତର୍ଗତ ବଳରାମପୁର ତଳଗଡ଼ର ଭକ୍ତ ମା'ଟିଏ । ନାଁ ବସନ୍ତ । ପ୍ରତିଦିନ ବଡ଼ିଭୋର୍‌ରୁ ସ୍ନାନ କରିବାକୁ ଯାଏ ଗାଁ ପୁଷ୍କରିଣୀକୁ । ଫେରିବା ବାଟରେ ଜଣଙ୍କ ତୁଳସୀ ଚଉଁରାରେ ଖୁବ୍ ସୁନ୍ଦର ମଞ୍ଜରୀ ହୋଇଥାଏ । ଠାକୁରଙ୍କ ପୂଜା ପାଇଁ ସେଇଠୁ କିଛି ତୁଳସୀ ମଞ୍ଜରୀ ହାତରେ ନେଇଆସେ ।

ସବୁଦିନ ସେ ଅନ୍ଧାରରେ ଯାଏ, ଆସେ । କିନ୍ତୁ ଦିନକର ତା'ର ମନ କ'ଣ ହେଲା କେଜାଣି, ସ୍ନାନ କରିବାକୁ ଗଲାବେଳେ ହାତରେ ଗୋଟିଏ ଲଣ୍ଠନ ଧରି ଚାଲିଲା । ଫେରିଲା ବେଳେ ତୁଳସୀ ଚଉଁରା ପାଖରେ ପହଞ୍ଚି ଦେଖେ ତ ଗଛ ଚାରିପାଖରେ କଣ୍ଟାଡାଳ ଘେରା ହେଇଚି । ଚାହିଁଥିଲେ କଣ୍ଟାକୁ ଆଡ଼େଇ ଦେଇ ସେ ତୁଳସୀ ଚୟନ କରି ପାରିଥାନ୍ତା । କିନ୍ତୁ ତାହା କଲା ନାହିଁ । ସେ ବୁଝିପାରିଲା – ଏହା ନିଶ୍ଚୟ ଗୃହକର୍ତ୍ତ୍ରୀଙ୍କର ଏକ ସୁଚିନ୍ତିତ ଯୋଜନା । ତା' ନ ହେଲେ ଗୃହକର୍ତ୍ତାଙ୍କୁ ଏ ତୁଳସୀ ଚଉଁରା ଦେଖିବାକୁ ବେଳ କାହିଁ? ତା'ଛଡ଼ା ତୁଳସୀ ଯଦି ଠାକୁରଙ୍କ ସେବାରେ ନ ଲାଗିଲା, ତା' ଜୀବନ ନିରର୍ଥକ ନୁହେଁ କି ?

ସେ ଯାହାହେଉ ମା' ବସନ୍ତ ବୁଝିଲା ଶ୍ରଦ୍ଧା ବିରହିତ ଦ୍ରବ୍ୟ କେବେହେଲେ ପ୍ରଭୁ ଗ୍ରହଣ କରିବେ ନାହିଁ । ପ୍ରଭୁ ସେବାରେ ବିନିଯୁକ୍ତ ବୃକ୍ଷର ରୋପଣକାରୀ ନିଜର ଶ୍ରମ ସାର୍ଥକ ମନେ କରିବା ପରିବର୍ତ୍ତେ ଯଦି କାର୍ପଣ୍ୟ ଦେଖାଇଲା, ତା'ହେଲେ ତା' ଜିନିଷ ତା' ଘରେ ଥାଉ । ବିନା ତୁଳସୀରେ କ'ଣ ଠାକୁରଙ୍କ ପୂଜା ହୋଇପାରିବ ନାହିଁ? ମନେ ମନେ ସବୁକଥା ଠାକୁରଙ୍କୁ ଜଣାଇ ଦେଇ ଫେରି ଆସିଲା ମା' ବସନ୍ତ । ଏଇଥିପାଇଁ ଯେ ଠାକୁର ଆଜି ତା' ହାତରେ ଲଣ୍ଠନ ଧରାଇଛନ୍ତି, ଏକଥା ବୁଝିବାକୁ ତା'ର ଆଉ ବାକି ରହିଲା ନାହିଁ ।

ଦିନେ ଦୁଇଦିନ ପରେ ସେ କ'ଣ ଗୋଟାଏ କାମରେ ଦିନବେଳେ ସେ ପଟେ ଯାଇଥାଏ । ହଠାତ୍ ମନେ ପଡ଼ିଗଲା ସେ କଣ୍ଟା ଡାଳ କଥା । ଚାହିଁ ଦେଖିଲା ନିୟମିତ

ତୁଳସୀ ଚୋରି ସତ୍ତ୍ୱେ ଯେଉଁ ଗଛ ଛନ ଛନ ହୋଇ ବଢୁଥିଲା, କଣ୍ଟା ଘେରରେ ସୁରକ୍ଷିତ ଥାଇ ମଧ ଆଜି ସେ ମୃତ । ଦିନ ଦୁଇଟାରେ ଏଡ଼େ ସୁନ୍ଦର ଗଛଟାର ଏତାଦୃଶ ଦୁରାବସ୍ଥା ଦେଖି ସେ ସହି ପାରିଲାନି । ବେଶି ନ ହେଲେ କିଛି ଦିନ ଠାକୁରଙ୍କ ସେବା କରିଥିଲା ତ ! ଲୀଳାମୟଙ୍କର ବିଚିତ୍ର ଲୀଳା ସ୍ମରଣ କରୁ କରୁ ତା' ଆଖିରୁ ଦୁଇ ଧାର ଅଶ୍ରୁ ଗଡ଼ି ପଡ଼ିଲା ।



# ଗାଈ ଖାଇଗଲା ଘର ନକ୍ସା

ଉଣେଇଶି ଶହ ବୟାନବେର ଏକ ଶୀତୁଆ ସକାଳ । ଖରା ଟାଣ ହୋଇ ନ ଥାଏ । ପୂର୍ବ ନିର୍ଦ୍ଧାରିତ ଯୋଜନା ଅନୁସାରେ ଆମେ ପହଞ୍ଚିଲୁ ସୁନ୍ଦରଗଡ଼ ସହର ଉପକଣ୍ଠରେ ନୂଆ କରି ଗଢ଼ି ଉଠୁଥିବା ସେଇ ବସ୍ତି ଅଞ୍ଚଳରେ ।

ଗାଁ ଛାଡ଼ି, ସହରରେ ଜମି କିଣି ବାସିନ୍ଦା ହେବାକୁ ମୁଁ ଆଦୌ ପସନ୍ଦ କରୁ ନ ଥିଲି । ତେଣୁ ସେଭଳି ଚିନ୍ତା ମୋର କଳ୍ପନା ରାଜ୍ୟରେ କେବେ ବି ସ୍ଥାନ ପାଉ ନ ଥିଲା । କିନ୍ତୁ ଘଟଣା ପ୍ରବାହରେ ଦିନେ ଜଣେ ଅବସରପ୍ରାପ୍ତ ବିଭାଗୀୟ କର୍ମଚାରୀଙ୍କ ସହିତ କଥାବାର୍ତ୍ତା ହେଉ ହେଉ ଖଣ୍ଡିଏ ଜମିର ବନ୍ଦୋବସ୍ତ ହୋଇଗଲା । ଆଉ ଉଣେଇଶି ଶହ ଅଶୀ ମସିହାରେ ସେଇ ଅଞ୍ଚଳରେ କିଣା ହୋଇଥିଲା ସେ ଜମି ଖଣ୍ଡିକ ।

ଜମି କିଣା ହେଲା ସିନା, କିନ୍ତୁ ପଡ଼ିଆ ପଡ଼ିଲା ଦୀର୍ଘ ବାରବର୍ଷ । ଯେତେବେଳେ ଘର କରିବା କଥା ଉଠେ, ବନ୍ଧୁମାନେ କହନ୍ତି– ତମେ ଘର କରିଥିଲେ, ଏତେବେଳକୁ ଘରଭଡ଼ାରୁ ଘରର ଦାମ୍ ଉଠି ସାରନ୍ତାଣି । କିନ୍ତୁ ମୁଁ କହେ– ଯଦି ଖଣ୍ଡିଏ ଭଲ ଘର ହେବ, ତେବେ ଆଗ ଗାଁରେ ହେବ । ତେଣିକି ବଳିଲେ ବାହାରେ ହେବ, ନ ହେଲେ ନାହିଁ । ଜାଗା ବିକ୍ରି ହେବ ଅଧିକ ଦାମ୍‌ରେ । କ'ଣ ପଚି ଯାଉଛି ? ତା' ଛଡ଼ା ଏ ସ୍ୱଳ୍ପ ବେତନରେ ଏତେକଥା କରି ହେଉଛି କେତେକେ ?

ଇଏ ହେଉଛି ସେଇ ଜାଗା, ଯେଉଁଠି ଖଣ୍ଡିଏ ନୂଆଘର ତୋଳିବାର ସ୍ୱପ୍ନ ନେଇ ଆମେ ପହଞ୍ଚିଲୁ ଲେ ଆଉଟ୍ କରିବା ପାଇଁ । ଆମେ, ମାନେ ପି.ଡବ୍ଲୁ.ଡ଼ି.ର ଜଣେ ଡ୍ରାଫ୍‌ଟମ୍ୟାନ୍, ଜଣେ ରାଜମିସ୍ତ୍ରୀ, ଜଣେ ମୂଲିଆ ଓ ଆମେ ତିନିଭାଇ । ଜମିର ପ୍ରଥମ ମୁଣ୍ଡରେ ବ୍ୟାଗ୍ ଇତ୍ୟାଦି ଥୋଇ ଆମେ ଗଲୁ ଜମିର ଶେଷମୁଣ୍ଡ ଆଡ଼କୁ । ଉଦ୍ଦେଶ୍ୟ, ଜାଗାର ଅବସ୍ଥିତି ଭଲ ଭାବରେ ଦେଖିଲା ପରେ ନକ୍ସା ଅନୁସାରେ ନିଅଁର ମାପଚୁପ ହେବ । ଯାହା ଫଳରେ ଭବିଷ୍ୟତକୁ ଆଉ କିଛି ସମସ୍ୟା ରହିବ ନାହିଁ । କିଛି ସମୟ ବୁଲାବୁଲି କରି ଆମେ ପୁଣି ଜମିର ପ୍ରଥମ ମୁଣ୍ଡକୁ ଫେରିଲୁ, ଯେଉଁଠି ଆମର ଜିନିଷପତ୍ର ଥିଲା ।

କିନ୍ତୁ ଏ କ'ଣ ? ବ୍ୟାଗ୍ ଭିତରୁ ନକ୍ସାଟା ଗଲା କୁଆଡ଼େ ? ସମସ୍ତେ ଅବାକ୍ । ବ୍ୟାଗ୍‌ର ଅନ୍ୟ ସବୁ ଜିନିଷ ଯେମିତି ଥିଲା, ଠିକ୍ ସେମିତି ଅଛି । ଅଥଚ ଘରର ନକ୍ସା ! ! ! କେହି କିଛି ବୁଝି ପାରିଲୁନି ।

ରବିବାର ସାପ୍ତାହିକ ଛୁଟି ଥିବାରୁ ସମସ୍ତଙ୍କ ସୁବିଧା ଦୃଷ୍ଟିରୁ ଏହି ଦିନଟିକୁ ଆମେ ସ୍ଥିର କରିଥିଲୁ ଲେ-ଆଉଟ୍ ପାଇଁ । ହେଲେ ଆଶ୍ଚର୍ଯ୍ୟର କଥା ଯେ ସବୁଠୁ ଗୁରୁତ୍ୱପୂର୍ଣ୍ଣ କାଗଜ ଯାହା ଉପରେ ମାପଚୁପ ହେବ, ତାହା ନାହିଁ । ଯଦିଓ ଆମେ କିଛି ଦୂରରେ କଥାବାର୍ତ୍ତାରେ ମଜି ଯାଇଥିଲୁ, ତଥାପି ଭଲ ଭାବରେ ଖିଆଲ୍ ଅଛି ଯେ ବ୍ୟାଗ ପାଖକୁ ଆଉ କେହି ଆସିନାହାନ୍ତି ।

ଅନ୍ୟମାନଙ୍କ ଅପେକ୍ଷା ମୁଁ ଟିକିଏ ଅଧିକ ବ୍ୟସ୍ତ ହୋଇପଡ଼ିଲି । ଆଉ ହେବାଟା ବି ସ୍ୱାଭାବିକ । କାରଣ ଏତେ ଲୋକଙ୍କୁ ପୁଣି ଏକାଠି କରି କାମ କରାଇବା ଥିଲା ଏକ କାଠିକର ପାଠ ।

ଆମର ବ୍ୟସ୍ତତାକୁ ଲକ୍ଷ୍ୟ କରୁଥିଲା ଅଦୂରରେ ଥିବା ଉପର ଘର ଝରକା ନିକଟରେ ବସିଥିବା ଜଣେ କଲେଜ ଛାତ୍ର । ପଚାରିଲା, କ'ଣ ଖୋଜୁଛନ୍ତି କି ?

– ଏଇ ବ୍ୟାଗରେ ଲମ୍ବା କାଗଜରେ ଗୁଡ଼ା ହୋଇଥିବା ଗୋଟିଏ ନକ୍ସା ଥିଲା । ତା'ର କିଛି ଅଂଶ ମଧ୍ୟ ବ୍ୟାଗ୍ ଉପରକୁ ଦେଖା ଯାଉଥିଲା । କିନ୍ତୁ କୁଆଡ଼େ ଯେ ଗଲା, କିଏ ତାକୁ ନେଲା ଜାଣିପାରୁନୁ । ତମେ ଜାଣିଛ କି ?

– ହଁ, ହଁ । ଆପଣମାନେ ସେ ପଛପଟେ ଥିଲାବେଳେ ଦଳେ ଗାଈ ସେ ପାଖ ଦେଇ ଯାଉଥିଲେ । ତା' ଭିତରୁ ଗୋଟିଏ ଗାଈ କ'ଣ ଗୋଟାଏ କାଗଜ ଚୋବାଇ ଚୋବାଇ ଯାଉଥିଲା । ସେ ଗାଈ... ଆଉ ଖାଇ ଦେଇନି ତ ?

ପିଲାଟିର କଥାରୁ ଏବେ ସ୍ପଷ୍ଟ ହୋଇଗଲା ଯେ ନକ୍ସା ନିଶ୍ଚୟ ଗାଈର ଗର୍ଭସ୍ଥ ହୋଇଯାଇଛି ।

ମୋ ପାଖରେ ନକ୍ସାର ଆଉ ନକଲ ନ ଥାଏ । କ'ଣ କରିବି ? ସମସ୍ତଙ୍କୁ ଆଉ କିଛି ସମୟ ସେଠାରେ ଅପେକ୍ଷା କରିବାକୁ କହି ମୁଁ ଧାଇଁଲି ମ୍ୟୁନିସିପାଲିଟିରେ ଥିବା ମୋର ଜଣେ ଚିହ୍ନାଲୋକ ପାଖକୁ । କାଳେ ତାଙ୍କ ଅଫିସ୍‌ରେ ଦାଖଲ ହୋଇଥିବା ନକ୍ସାର ଗୋଟିଏ ନକଲ ମିଳିଯିବ ! ଏଇ ଆଶା ନେଇ ଗଲି ସିନା, ହେଲେ କିଛି କାମ ଦେଲାନି । ଜଗୁଆଳି ଅଫିସ୍ ବନ୍ଦ କରି ନଈ ଆରପାରିରେ ଥିବା ତା' ଗାଁକୁ ଚାଲି ଯାଇଥିଲା । ତେଣୁ ବାଧ୍ୟ ହୋଇ ପରବର୍ତ୍ତୀ ବୁଧବାରକୁ ପୁଣି ଦିନ ସ୍ଥିର କଲୁ ଲେ-ଆଉଟ୍ କରିବା ପାଇଁ ।

ଯା ଭିତରେ ଯେଉଁ ଦୁଇଦିନ ସମୟ ମିଳିଲା, ସେଥିରେ ନକ୍ସାର ଆଉ ଗୋଟିଏ ନକଲ ମ୍ୟୁନିସିପାଲିଟି ଅଫିସ୍‌ରୁ ସଂଗ୍ରହ କଲି । ଆଉ ସବୁଠାରୁ ବଡ଼କଥା ହେଉଛି ଯେ ବୁଧବାର ସକାଳୁ ହରେକୃଷ୍ଣ ବାବା ଆସି ଆମ ବସାରେ ପହଞ୍ଚିଲେ, ଯାହାଙ୍କ ଉପସ୍ଥିତିରେ ଘରର ମାପଚୁପ ହେଲା । ବାବାଙ୍କ ପରାମର୍ଶ ଅନୁସାରେ ନକ୍ସାରେ ଯେଉଁ ସାମାନ୍ୟ ପରିବର୍ତ୍ତନ ଘଟିଲା, ସେଥିରେ ଘରର ମେଜିଆ (ପ୍ଲିନ୍‌ଥ୍ ଏରିଆ) ପୂର୍ବାପେକ୍ଷା ପ୍ରାୟ ଶହେ ବର୍ଗଫୁଟ ବଢ଼ିଗଲା ।

"ବିଶ୍ୱବିଧାତା ହେ ତୁମେ କି ନ କରି ପାର ହରି ?" ଯଦିଓ ବାବାଙ୍କୁ ଏ ବିଷୟରେ ଆମେ ଆଗରୁ ଖବର ଦେଇ ନ ଥିଲୁ କିମ୍ବା ଜଣାଇ ନ ଥିଲୁ, ତଥାପି ମନ ଭାବୁଥିଲା, ବାବା ଟିକେ ଏତିକି ବେଳକୁ ଆସି ପହଞ୍ଚନ୍ତେ କି !

ଅନ୍ତର୍ଯ୍ୟାମୀ ଠାକୁର ମନକଥା ଜାଣି ସେଥିପାଇଁ ବ୍ୟବସ୍ଥା କଲେ । ସବୁକଥା ପ୍ରସ୍ତୁତ ଥିଲେ ବି ପ୍ରଥମ ଦିନ କାମ ବନ୍ଦ କରାଇଲେ ଏଭଳି ଭାବରେ, ଯାହା କେହି କେବେ କଳ୍ପନା କରିପାରିବ ନାହିଁ । ଘରର ନକ୍ସା କାଗଜକୁ ଗାଈର ଖାଦ୍ୟ ବନେଇଦେଲେ ଏବଂ ସବୁ ବିକଳ୍ପ ରାସ୍ତା ମଧ୍ୟ ବନ୍ଦ କରିଦେଲେ, କେବଳ ତାଙ୍କ ଇଚ୍ଛା ପୂରଣ କରିବା ପାଇଁ । ସତରେ ପ୍ରଭୁ ! ତୁମର ଲୀଳା କି ବିଚିତ୍ର ।

× × ×

ନିଅଁ ଖୋଳା ହେଲା ପରେ ଶୁଭ ଦେବାର ସମୟ ଉପନୀତ ହେଲା । କିନ୍ତୁ ସାହସ ପାଇଲା ନାହିଁ କୌଣସି ବ୍ରାହ୍ମଣଙ୍କୁ ଡାକି ବୈଦିକ ରୀତିରେ ପୂଜାପାଠ କରି ଗୃହର ଶୁଭାରମ୍ଭ କରିବା ପାଇଁ । କାରଣ ତାଙ୍କ ତାଲିକା ଅନୁସାରେ ଏକ ଲମ୍ବା ଚଉଡ଼ା ଖର୍ଚ୍ଚ ବହନ କରିବାର ସାମର୍ଥ୍ୟ ମୋର ନ ଥିଲା । ଶେଷକୁ ସ୍ଥିର କଲି କାହାରିକୁ ନ ଡାକି ମୁଁ ନିଜେ ଠାକୁରଙ୍କୁ ବସାଇ ପୂଜା କରିବି ଓ ଅଳ୍ପରେ କାମ ବଢ଼ାଇଦେବି ଏବଂ ତାହା ହିଁ ହେଲା । ଠାକୁରଙ୍କ ପୂଜା ଅର୍ଚ୍ଚନା ପରେ ଗୁରୁ ଗାୟତ୍ରୀ ମନ୍ତ୍ର ପାଠ କରି ମୁଁ ନିଜେ ଗୁଆଘିଅରେ ହୋମ କଲି । ପୂଜା କରିଥିବା ଖଣ୍ଡିଏ ଇଟାରେ ଠାକୁରଙ୍କ ଫୁଲ ତୁଳସୀ ଖଣ୍ଡିଏ ନୂଆ କପଡ଼ାରେ ବାନ୍ଧି ତାକୁ ଯଥାସ୍ଥାନରେ ସ୍ଥାପନ କଲି ।

ପରଦିନଠାରୁ ପୂରା ଦମ୍‌ରେ ଘରକାମ ଆଗେଇ ଚାଲିଲା ସମସ୍ତ ବାଧାବିଘ୍ନ ସତ୍ତ୍ୱେ ।

ଘରକାମ ତ ଏପର୍ଯ୍ୟନ୍ତ ସରି ନାହିଁ । ତଥାପି ଚଳିବା ଭଳି ସୁବିଧା ହୋଇ ଯାଇଥିବାରୁ ସରିଛି କହିଲେ ଭୁଲ ହେବ ନାହିଁ । ହେଲେ ସେତିକି କାମ ସରିବାକୁ ପ୍ରାୟ ବର୍ଷେ ଦେଢ଼ବର୍ଷ ଲାଗିଗଲା । ଘରକାମ ସରି ନାହିଁ, ଏଣେ ଘର ପାଇଁ କରିଥିବା ଋଣ ବୋଝ ସମ୍ଭାଳିବା ମୁସ୍କିଲ – ଏଇ ଭାବନାରେ ପ୍ରସ୍ତୁତି ଚାଲିଲା ।

ବାପା ଓ ସାନଭାଇ ବୈଦିକ ରୀତିରେ ପ୍ରତିଷ୍ଠା ପାଇଁ ଯୋଜନା କରୁଥିବା ବେଳେ ମୁଁ ମନେ ମନେ ଠାକୁରଙ୍କୁ ଡାକୁଥାଏ । ଆମ ଆଶ୍ରମରୁ କେହି ବାବା ଆସି ପହଞ୍ଚନ୍ତେ କି ? ସତକୁ ସତ ତାହା ହିଁ ହେଲା । ପୂର୍ବତନ ଆଚାର୍ଯ୍ୟ ଅର୍ଜୁନ ବାବା ହଠାତ୍ ଆସି ସୁନ୍ଦରଗଡ଼ରେ ପହଞ୍ଚିଲେ ଏବଂ ଏକଥା ତାଙ୍କୁ ଜଣାଇବାରୁ ସେ ମଧ୍ୟ ସମ୍ମତି ଦେଲେ ।

ଆମ ଘରର ଅଧେ ଲୋକ ଛୁଟିରେ ଗାଁକୁ ଯାଇଥାନ୍ତି । ସେମାନଙ୍କୁ ଅପେକ୍ଷା ନ ରଖି, ବନ୍ଧୁବାନ୍ଧବ ସାଙ୍ଗସାଥୀ କାହାରିକୁ ନ ଡାକି ରଥଯାତ୍ରା ଦିନ ଘର ପ୍ରତିଷ୍ଠା ହେଲା ଏବଂ ତା'ର ପୁରୋଧା ହେଲେ ପୂଜ୍ୟ ଅର୍ଜୁନ ବାବା ।

ଏସବୁ କଥା ମନେପଡ଼ିଲେ ଏବେ ବି ଆଶ୍ଚର୍ଯ୍ୟ ଲାଗେ । ଠାକୁରେ ତାଙ୍କର ଆଶ୍ରିତ ଜନ ପାଇଁ କ'ଣ ନ କରି ପାରନ୍ତି ସତରେ ! ସବୁ ଅସମ୍ଭବ ସମ୍ଭବ ହୋଇଯାଏ । ସବୁ ପ୍ରତିକୂଳ ଅନୁକୂଳ ହୋଇଯାଏ । ସବୁ ସମସ୍ୟା ସମାଧାନ ହୋଇଯାଏ । କିନ୍ତୁ ତଥାପି ଏ ଚଗଲା ମନ ତାଙ୍କ ପାଦପଦ୍ମରେ ଲାଗେନା । ମକରନ୍ଦ ପାନ କରିବା ଛାଡ଼ି ବିଷୟା ରସରେ ମଜ୍ଜିଯାଏ । ତାକୁ ଟିକିଏ ସଦ୍‌ବୁଦ୍ଧି ଦିଅ ପ୍ରଭୁ !

ଶେଷରେ ତୁମରି ଲେଖାରୁ ଦି'ଧାଡ଼ି ପଢ଼ି ତୁମକୁ ଜଣାଉଛି ପ୍ରଭୁ !

"ଚଗଲା ମାନସ ସେ ପଦେ ନ ଗଲା
ତୁମ୍ଭେ ଯଦି କହ ମୋର କିସ ଗଲା ?
ଲଜ୍ୟା ନ ହୋଇବ ଯଦ୍ୟପି ତୁମ୍ଭଙ୍କୁ,
ତେବେ କିଛି ନାହିଁ ମୋର କହିବାକୁ ।
ମୁହିଁ ଭାସୁଥିଲେ ବିପଦ ସାଗରେ,
ତୁମ୍ଭେ ଯଦି ଥିବ ମନ ସରାଗରେ ।
ଏ ଭାଗ୍ୟରୁ ବଳି ଭାଗ୍ୟ ମୋର ନାହିଁ,
ତୁମ୍ଭ ଆନନ୍ଦ ମୁଁ ସର୍ବଦା ବାଞ୍ଛଇ ।



# ବେତଣ୍ଡା ମଠର ବିତଣ୍ଡା କଥା

କହି ଜାଣିଲେ କଥା ସୁନ୍ଦର, ନାଇ ଜାଣିଲେ ମଥା ସୁନ୍ଦର –ଏ କଥା ପଦକ କିଏ, କେବେ, କେଉଁଠି ଓ କେଉଁ ପ୍ରସଙ୍ଗରେ ପ୍ରଥମେ କହିଥିଲା କେଜାଣି; ଖାଣ୍ଟି କଥାଟିଏ । କହିବା ହେଉ ବା ନାଇବା ହେଉ, ତା'ର ଅସଲ ସୂତ୍ରଟି ହେଉଛି 'ଜାଣିବା' । ଜାଣିଲେ ସୁନ୍ଦର, ନ ଜାଣିଲେ ଅସୁନ୍ଦର । ଯିଏ ଜାଣେ, ତା' ହାତରେ ନ ହେବା କାମ ହୋଇଯାଏ । ଆଉ ଯିଏ ନ ଜାଣେ, ହେବା କାମ ମଧ ତା' ଦେଇ ହୁଏନା । ଶାସ୍ତ୍ରରେ ଅଛି–

ଜିହ୍ୱାଗ୍ରେ ବସତେ ଲକ୍ଷ୍ମୀ ଜିହ୍ୱାଗ୍ରେ ମିତ୍ର ବାନ୍ଧବା ।
ଜିହ୍ୱାଗ୍ରେ ବନ୍ଧନଂ ପ୍ରାପ୍ତଂ ଜିହ୍ୱାଗ୍ରେ ମରଣଂ ଧ୍ରୁବମ୍ ॥

ମିଠାକଥା ପଦେ ଶୁଣିବାକୁ କିଏ ବା ଭଲ ନ ପାଏ ? କିନ୍ତୁ ଏଇ ମିଠାକଥା ପଦେ ସମସ୍ତଙ୍କୁ କହି ଆସେନା । ଫଳରେ କେଉଁଠି 'ମହାଭାରତ' ସୃଷ୍ଟି ହୁଏ ତ, କେଉଁଠି ରାମାୟଣ । କଥାର ଧାରା ଠିକ୍ ରହିଲେ ବିଷ ଅମୃତ ହୋଇଯାଏ । ଶତ୍ରୁ ମିତ୍ର ପାଲଟିଯାଏ । ପର ଆପଣା ହୋଇଯାଏ । ଆଉ ତା'ର ବିପରୀତରେ ସବୁକିଛି ଓଲଟ ପାଲଟ ହୋଇଯାଏ ।

ହେଲେ ସବୁ ଜିନିଷର ବ୍ୟତିକ୍ରମ ଭଳି ଏଥିରେ ବି ଗୋଟାଏ ବ୍ୟତିକ୍ରମ ଅଛି । ତାହା ହେଲା, ଏଭଳି କିଛି ଲୋକ ଅଛନ୍ତି, ଯେଉଁମାନେ କି ମିଠାକଥା ବା ସିଧାସଳଖ କଥାର ଅର୍ଥ ବୁଝନ୍ତି ନାହିଁ । ସେମାନେ ଅର୍ଥକୁ ଅନର୍ଥ ବା କଦର୍ଥ କରନ୍ତି । ଏମାନଙ୍କୁ ବୁଝାଇବାକୁ ହେଲେ ଦରକାର ପଡ଼େ ତାଙ୍କରି ଭାଷା । 'ଯେସାକୁ ତେଷା, ହାରାମଜାଦାକୁ ଟାଙ୍ଗିଆ ଫଶା' । ତେଣିକି ସେ କଥା ଯୁକ୍ତିଯୁକ୍ତ ହେଉ ବା ବିତଣ୍ଡା । ସେଥିରେ କିଛି ଯାଏ ଆସେ ନାହିଁ ।

ସେଥିପାଇଁ ଇଚ୍ଛା ନ ଥିଲେ ବି ବେଳେବେଳେ ଭକ୍ତକୁ ବିତଣ୍ଡା କଥାର ଆଶ୍ରୟ ନେବାକୁ ପଡ଼େ, ଯେମିତି ପଡ଼ିଥିଲା ଠାକୁରଙ୍କ ପ୍ରିୟଭକ୍ତ ଗୋବିନ୍ଦଙ୍କୁ ।

ଗଡ଼ ମଧୁପୁର ଜମିଦାରୀର ମଠଟିଏ । ନାଁ ବେତଣ୍ଡା ମଠ । ମଠରେ ପୂଜା ପାଆନ୍ତି ପ୍ରଭୁ ଜଗନ୍ନାଥ । ଭାଇ ଭଉଣୀ କେହି ନାହାନ୍ତି... ପୂରାପୂରି ଏକା । ଭାରି ମନୁଆ ଠାକୁର

ସତରେ । ଯେତେବେଳେ ଯାହା ମନ ହେଲା । କେଉଁଠି ଭାଇ ବଳରାମ, ଭଉଣୀ ସୁଭଦ୍ରା ଓ ସୁଦର୍ଶନଙ୍କୁ ଧରି ଚତୁର୍ଦ୍ଧା ମୂର୍ତ୍ତି ତ କେଉଁଠି ଦଧିବାମନ ବା ପତିତପାବନ ରୂପରେ ଏକା ଏକା ବିଦ୍ୟମାନ । କିଏ କହିବ ତାଙ୍କୁ? ସେ ତ ଇଚ୍ଛାମୟ । ରଥଯାତ୍ରା ଆସିଲା । ଭାଇ ଭଉଣୀଙ୍କୁ ଆଗରେ ପଠାଇଦେଇ ନିଜେ ରହିବେ ପଛକୁ । ଗହଳି ଲଗେଇ ହଲିଝୁଲି ଆସିବେ ଯେ, ଗୁଣ୍ଡିଚା ମନ୍ଦିରରେ ପହଞ୍ଚୁ ପହଞ୍ଚୁ କେବେ ରାତି ଘଡ଼ିଏ ତ କେବେ ତା' ପରଦିନ । ହେଲେ ସବୁରି ଭିତରେ କିନ୍ତୁ ଗୋଟିଏ କଥା ସାର । ଭକ୍ତକୁ ବଡ଼ କରି ଥୋଇବେ । ତା' ମାନ କେତେବେଳେ ହେଲେ ତଳେ ପଡ଼ିବାକୁ ଦେବେ ନାହିଁ ।

ମଧୁବନର ଭକ୍ତ ଧନୀ ପଣ୍ଡାଙ୍କ ସୁଯୋଗ୍ୟ ଦାୟାଦ– ଗୋବିନ୍ଦ । ସେ ହେଉଛନ୍ତି ଏ ମଠର ପୂଜାରୀ ।

ପୁରୀ ଜଗନ୍ନାଥଙ୍କ ମୂର୍ତ୍ତିଠାରୁ ଟିକିଏ ସାନ ହେବେ ଏ ଠାକୁର । ଅନ୍ୟାନ୍ୟ ବେଶଭୂଷା ତ ହୁଅନ୍ତି । ତା'ଛଡ଼ା ଧୋତିଯୋଡ଼ର ଗୋଟିଏ ଧଳା ଚାଦର ଫୁଲହାର ପରି ଠାକୁରଙ୍କ ବେକରେ ପଡ଼ିଥାଏ । ଗୋବିନ୍ଦ ଠାକୁର ଅଭିରାମଙ୍କର ଗୋଟିଏ ଅଧା ପ୍ରତିମୂର୍ତ୍ତି ସେଇଠି ଲୁଚାଇ ରଖି ପୂଜା କରୁଥାନ୍ତି । ଏକଥା କେହି ଜାଣନ୍ତି ନାହିଁ ।

ଦିନକର କଥା । ଦିନ ପ୍ରାୟ ବାରଟା ପାଖାପାଖି ହେବ । ଗୋବିନ୍ଦ ଠାକୁରଙ୍କ ମଧ୍ୟାହ୍ନ ନୀତି ସାରି ଠାକୁରଙ୍କୁ ପହଡ଼ ଦେଇ ସାରିଲେଣି । ଠିକ୍ ଏତିକିବେଳେ ଜଣେ ଭାରୁଆ ଆମ୍ବ ଭାରଟିଏ ଆଣି ମଠରେ ପହଞ୍ଚିଲା । ମଧୁପୁର ରାଜାଙ୍କ ଘରୁ ସେ ଆମ୍ବ ଭାରଟି ଆସିଥାଏ । ଭାରୁଆ କହିଲା– ନନା! ଏ ଆମ୍ବ ଟିକେ ଠାକୁରଙ୍କୁ ଭୋଗ ଲଗାଇଦିଅ । ତା'ପରେ ଯାଇ ଯାହାକୁ ଯେମିତି ବଣ୍ଟାଯିବ ।

ଗୋବିନ୍ଦ ଦେଖିଲେ, ଠାକୁରେ ତାଙ୍କର ଭୋଗାଙ୍ଗରୁ ଯୋଗାଙ୍ଗକୁ ଗଲେଣି । କ'ଣ କରିବେ? ପ୍ରକାଶ୍ୟରେ କହିଲେ– ଠାକୁର ପରା ଶୋଇଲେଣି । ଆଉ ଭୋଗ ଲଗାଇବି କେମିତି?

ଭାରୁଆ ଅବା ଏ ଗୁରୁଘର ପାଠ କ'ଣ ବୁଝିବ? ସେ କହିଲା– ମଲା ତମେ ଟିକେ ପହଡ଼ ଖୋଲି ଦେଇ ଭୋଗ ଲଗାଇ ଦେଉନା ।

ଗୋବିନ୍ଦ ଦେଖିଲେ ଲୋକଟି ତାଙ୍କ ଭାଷା ବୁଝି ପାରୁ ନାହିଁ । ତେଣୁ ସେ ବୁଝିପାରିବା ଭଳି ଭାଷାରେ ତାକୁ କହିଲେ– ଯା କହିଦେବ, ଠାକୁର ଖାଇବାକୁ ମନା କଲେ । ଭାରୁଆ ଯାଇ ରାଜାଙ୍କୁ ଠିକ୍ ସେଇକଥା କହିଲା ।

ରାଜ୍ୟ ଚାଲିଗଲେ ବି ରାଜାଙ୍କ ପ୍ରଭାବ ସେମିତି କିଛି ଊଣା ହୋଇ ନ ଥାଏ । ତେଣୁ ରାଜାଙ୍କୁ କଥାଟା ଭଲ ଲାଗିଲା ନାହିଁ । ସେ ଅନୁଭବ କଲେ, ଯେମିତି ତାଙ୍କ ସ୍ୱାଭିମାନରେ ଆଞ୍ଚ ଆସିଛି ।

ଠାକୁର କ'ଣ ସତରେ ଖାଇବାକୁ ମନାକଲେ ? ଏ ପୂଜାରୀ ନନା କ'ଣ ସତରେ ଠାକୁରଙ୍କ ସହିତ କଥାବାର୍ତ୍ତା ହେଉଛି ନା ଏମିତି ଖାମ୍‌ଖିଆଲିରେ କହିଦେଲା ? ଆଜି ରାଜୁତି ଚାଲିଗଲା ବୋଲି କାଲି ଯିଏ ମୁଣ୍ଡ ଟେକି ଚାହୁଁ ନ ଥିଲା, ସିଏ ପୁଣି ଏମିତି ରୋକ୍‌ଠୋକ୍ ମନା କରିଦେବ ? –ଏମିତି ନାନା ଆଡୁ ନାନା ପ୍ରଶ୍ନ ଆସି ରାଜାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା ।

କହିବା ହିସାବରେ କଥାଟା କହିଦେଲେ ସିନା, ହେଲେ ଭାରୁଆ ଫେରିଯିବା ପରେ ଗୋବିନ୍ଦଙ୍କୁ ମଧ୍ୟ ଭଲ ଲାଗିଲା ନାହିଁ । ଭାବିଲେ ଏମିତି ସିଧାସଳଖ କଥାଟା ନ କହିଥିଲେ କ'ଣ ଚଳି ନ ଥାନ୍ତା ? ଅନ୍ୟ କିଛି ଉପାୟରେ କ'ଣ ଘଟଣାର ମୋଡ଼ ବଦଳାଯାଇ ପାରି ନ ଥାନ୍ତା ? ହଁ, ହେଇଥାନ୍ତା । ଟିକିଏ ବିଚାରପୂର୍ବକ ଯଦି ଭାରୁଆକୁ ଦୁଇ ତିନି ଘଣ୍ଟା ଅଟକାଇ ଦିଆଯାଇଥା'ନ୍ତା, ତେବେ ସବୁକଥା ସୁରୁଖୁରୁରେ ତୁଟି ଯାଇଥାନ୍ତା । ଠାକୁରଙ୍କ ପହଡ଼ ଖୋଲା ହେବା ପରେ ଆମ୍ବ ବି ଭୋଗ ଲାଗି ଯାଇଥାନ୍ତା, ରାଜା ମଧ୍ୟ ଖୁସି ହୋଇଥାନ୍ତେ । ହେଲେ ସେ କ'ଣ କରିବେ ? ଭାରୁଆ ତ ସବୁ ଗୋଳମାଳ କରିଦେଲା । ଲୋକ ପୁଣି ଏତେ ଅଧୈର୍ଯ୍ୟ ହୁଅନ୍ତି । ଇଏ ନିଶ୍ଚୟ ସେଇ ଗୋଷ୍ଠୀର, ଯେଉଁମାନେ ଧରି ଆଣିବାକୁ କହିଲେ ବାନ୍ଧି ଆଣନ୍ତି । ନ ହେଲେ... ।

ଭାବନାର ଖିଅ ଲମ୍ବି ଚାଲିଥାଏ ଗୋବିନ୍ଦଙ୍କର– ମଠଠାରୁ ରାଜଉଆସ ପର୍ଯ୍ୟନ୍ତ । ଆଉ ସେ ପଟେ ସେହି ଟାଣଖରାରେ ରାଜା ସାହେବ, ରାଣୀ ମା' ଓ କିଛି ପାଖଲୋକ ବାହାରି ପଡ଼ିଲେ ମଠକୁ ସାଙ୍ଗରେ ଭାରୁଆକୁ ଧରି ।

ବଡ଼ ବିଚିତ୍ର ଲୀଳା ସତରେ ପ୍ରଭୁଙ୍କର । ସେ କେତେବେଳେ ଯେ କ'ଣ କରିବାକୁ ଚାହାନ୍ତି, ତାହା କେବଳ ତାଙ୍କୁ ହିଁ ଜଣା । ଠାକୁରଙ୍କର ଭାଷାରେ– "ତୁମ୍ଭ ଲୀଳା ସିନା ତୁମ୍ଭଙ୍କୁ ଗୋଚର, କିଏ ସେ ଜାଣିବ ବିଶ୍ୱ ଚରାଚର ।" ପ୍ରବଳ ଗ୍ରୀଷ୍ମ ପ୍ରବାହରେ ମୁହଁ କାନ ପୋଡ଼ି ଯାଉଛି । ରାଜା ସାହେବ ସିନା କେତେବେଳେ ଆବଶ୍ୟକ ପଡ଼ିଲେ ଖରାରେ ବାହାରକୁ ବାହାରନ୍ତି । କିନ୍ତୁ ଯେଉଁ ରାଣୀ ମା'ଙ୍କୁ ଚନ୍ଦ୍ର ସୂର୍ଯ୍ୟ ଦେଖିନାହାନ୍ତି କହିଲେ ଚଳେ, ଯିଏ ରାଜ ଉଆସରୁ ଦିନେ ପାଦ କାଢ଼ି ନାହାନ୍ତି, ସିଏ ବି ଆଜି ଚାଲିଛନ୍ତି ମଠକୁ । ଗୋରା ତକ ତକ ମୁହଁ ତାଙ୍କର ନାଲି ପଡ଼ିଯାଇଛି । ରାଜାଙ୍କର ସିନା ଅଭିମାନ ଅଛି, କିନ୍ତୁ ନାହିଁ ରାଣୀମା'ଙ୍କର । ଘଟଣାର ସତ୍ୟତା କ'ଣ, କେବଳ ସେତିକି ଜାଣିବାର ଆଗ୍ରହ ନେଇ ସେ ଧାଇଁ ଆସିଛନ୍ତି ଏ ଉଦୁଉଦିଆ ଖରାବେଳଟାରେ ।

ଆମ୍ବଭାର ସେଇମିତି ମଠ ବାରଣ୍ଡାରେ ଥୁଆ ହୋଇଛି । ଏଥିରେ ଗୋବିନ୍ଦ ଆଉ ବିଶ୍ରାମ କରିବେ କ'ଣ ? ସିଏ ଗଲା ଭାରକୁ ଜଗି ସେଇଠି ବସିଛନ୍ତି । ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଲା ରାସ୍ତା ଆଡ଼କୁ । ରାଜା ସାହେବ ସଦଳବଳେ ମଠର ଦ୍ୱାରଦେଶରେ ଉପନୀତ ।

ଧଡ଼ପଡ଼ ହୋଇ ଉଠିଗଲେ ତାଙ୍କୁ ସ୍ୱାଗତ କରିବାକୁ । ଆଉ ଅନୁମାନ କରି ନେଇଗଲେ ଯେ ପରିସ୍ଥିତି ନିଶ୍ଚୟ ଗମ୍ଭୀର ।

ରାଜା ପଚାରିଲେ– ଆଚ୍ଛା ନନା ! ତମେ ଏମିତି କ'ଣ କହିଲ ? ସତରେ କ'ଣ ଠାକୁର ଆମ୍ବ ଖାଇବାକୁ ମନା କଲେ ?

ଗୋବିନ୍ଦ– ହଁ ମଣିମା ହଁ । ଆମ୍ବଗୁଡ଼ାକ ପରା ସବୁ ପୋକରା !

ଠାକୁର କେମିତି ଖାଇବେ ? ସେଇଥିପାଇଁ ମନା କଲେ ।

ଏକଥା ଶୁଣି ରାଜା ଆହୁରି ଖପ୍ପା । ଭାବିଲେ ଏ ନନା ନିଶ୍ଚୟ ମିଛ କହୁଛି । ଭୋଗ ନ ଲଗାଇ, ଠାକୁର ଆମ୍ବ ଖାଇବାକୁ ମନାକଲେ ବୋଲି ଯେମିତି ଖାମ୍‌ଖିଆଲି ଭାବରେ କହିଥିଲା, ସେମିତି ସେଥିରୁ ବଞ୍ଚିବା ପାଇଁ ଇଏ ନିଶ୍ଚୟ ଆଉ ଗୋଟାଏ ଫନ୍ଦି, କ'ଣ ନା ଆମ୍ବଗୁଡ଼ାକ ସବୁ ପୋକରା । ଆରେ ବାଃ ! ଇଏ ତ ଗଛର ପ୍ରଥମ ଫଳ ନୁହେଁ । ଗତବର୍ଷ ବି ଫଳିଥିଲା । ବଗିଚାରେ ଯେତେ ଆମ୍ବ ଅଛି, ଇଏ ସବୁଠୁ ମିଠା । ହେଲେ ଗୋଟାଏ ବି ପୋକ ନାହିଁ । ଆଉ ନନା କହୁଛି କ'ଣ ନା ସବୁ ପୋକରା । ହଉ ! ଏଥର ସବୁ ସତକଥା ବାହାରି ପଡ଼ିବ ଯେ ?

ମନର ଭାବନାକୁ ମନ ଭିତରେ ଚାପିରଖି ରାଜା ପୁଣି ପଚାରିଲେ– କ'ଣ ନନା ! ସତରେ କ'ଣ ସବୁ ଆମ୍ବ ପୋକରା ?

ଏଥର ଆହୁରି ଦୃଢ଼ତା ସହିତ ଗୋବିନ୍ଦ ଉତ୍ତର ଦେଲେ– ହଁ ମଣିମା ? ସବୁଯାକ ପୋକରା । ଆପଣ ଯଦି ପରୀକ୍ଷା କରିବାକୁ ଚାହୁଁଛନ୍ତି, ତେବେ ପନିକି ଆଣି କାଟୁ ନାହାନ୍ତି ।

ଗୋବିନ୍ଦଙ୍କର ଦୃଢ଼ୋକ୍ତିରେ ରାଜାଙ୍କର ବିଶ୍ୱାସ ଯେମିତି ଦୋହଲି ଯାଉଥିଲା । ରାଜାଙ୍କ ନିର୍ଦ୍ଦେଶରେ ପନିକି ମଗାଗଲା । ଭାରୁଆ ସମେତ ତିନି ଜଣ ତିନିଟା ପନିକି ଧରି ଆମ୍ବ କାଟିବାକୁ ଆରମ୍ଭ କଲେ । ଗୋବିନ୍ଦ ଏକ ଲୟରେ ଚିନ୍ତା କରୁଥାନ୍ତି ପ୍ରଭୁ ଭକ୍ତବତ୍ସଳ କରମଳାଚନ୍ଦ୍ର ଅଭିନ୍ନ ସୁନ୍ଦରଙ୍କୁ– ପ୍ରଭୁ ! ତୁମେ ପରା ତୁମରି ଶ୍ରୀହସ୍ତରେ ଲେଖିଛ "ଭକ୍ତ ବାକ୍ୟ ନ କରେ ଆନ ।" ମୁଁ ତ ତୁମରି ସେବକ । ତୁମରି ପ୍ରଦତ୍ତ ସାଧନ ସୂତ୍ର ଅନୁସାରେ ମୁଁ ତ ଭୋଗ ଲଗାଇବାକୁ ମନା କରିଛି । ଯୋଗାଙ୍ଗରେ କେମିତି ଦେଇଥାନ୍ତି ଯେ ? ଏ ଭାରୁଆ, ଏକବୁଝା ରାଜା– ଏ ସମସ୍ତଙ୍କୁ ମୁଁ ଆଉ କି ଭାଷାରେ ବୁଝାଇଥାନ୍ତି ଯେ ? ଏଣିକି ତୁମ ଇଚ୍ଛା ଯାହା ତାହା କର ।

ପୁରୀ ଶ୍ରୀମନ୍ଦିର ବଡ଼ପଣ୍ଡାଙ୍କ ବାକ୍ୟକୁ ସତ୍ୟ ପ୍ରମାଣିତ କରିବା ପାଇଁ ମହାପ୍ରଭୁ ଜଗନ୍ନାଥ ଯେପରି କେଶ ଧାରଣ କରିଥିଲେ, ସେହିପରି ଭକ୍ତ ଗୋବିନ୍ଦଙ୍କ ବାକ୍ୟକୁ ସତ୍ୟ ପ୍ରମାଣିତ କଲେ ଭକ୍ତବତ୍ସଳ ପ୍ରଭୁ କରମଳା ଚନ୍ଦ୍ର ।

ଭାରକଯାକ ଆମ୍ବ ଗୋଟାକ ପରେ ଗୋଟିଏ କଟା ହୋଇ ସମସ୍ତଙ୍କ ସମ୍ମୁଖରେ ଜମା ହେଲା । ହେଲେ ଗୋଟିଏ ବି ଭଲ ବାହାରିଲା ନାହିଁ ଦେବ ଭୋଗ୍ୟ ପାଇଁ ।

ରାଜା ରାଣୀ ସମସ୍ତେ ଅବାକ୍ । ଏ ଲୀଳା ସନ୍ଦର୍ଶନରେ ଗୋବିନ୍ଦ ମଧ୍ୟ ମୂକ ପାଲଟି ଗଲେ । ପ୍ରଭୁଙ୍କ କୃପାର କଳନା କରି ନ ପାରି ସେ କେବଳ ଢାଳୁଥିଲେ ଅଶ୍ରୁର ଅର୍ଘ୍ୟ ତାଙ୍କର ପଦ ବନ୍ଦନା ପାଇଁ ।

× × ×

ଆଉଥରେ ଗୋବିନ୍ଦ ଆସିଥାନ୍ତି କରମଲା ଠାକୁରଙ୍କ ଦର୍ଶନକୁ । ଦିନେ ମଠର ଟ୍ରଷ୍ଟି ତାଙ୍କର ଅନୁପସ୍ଥିତିରେ ଆସି ମଠରେ ପହଞ୍ଚିଲେ । ଠାକୁର ଦର୍ଶନ କଲାବେଳକୁ ତାଙ୍କର ନଜର ପଡ଼ିଲା ଜଗନ୍ନାଥଙ୍କ ବକ୍ଷସ୍ଥଳରେ କ'ଣ ଗୋଟାଏ ଧଳା ଧଳା ଦିଶୁଛି । ପାଖକୁ ଯାଇ ଦେଖିଲେ– ଭକ୍ତ-ହୃଦ-ପଦକ ଠାକୁର ଅଭିରାମ, ଜଗନ୍ନାଥଙ୍କ ହୃଦପଦକ ଭାବରେ ରହି ପୂଜା ପାଉଛନ୍ତି ।

ଠାକୁରଙ୍କୁ ସାଧାରଣ ମନୁଷ୍ୟ ଜ୍ଞାନ କରୁଥିବା ଟ୍ରଷ୍ଟି ଏହା ସହିପାରିଲେ ନାହିଁ । ସଙ୍ଗେ ସଙ୍ଗେ ନିର୍ଦ୍ଦେଶ ଦେଲେ– ତୁରନ୍ତ ଏ ଫଟୋ ଏଠାରୁ ବାହାର କରି ଫିଙ୍ଗିଦିଅ ।

ନିର୍ଦ୍ଦେଶ ଅନୁସାରେ ଠାକୁରଙ୍କ ପ୍ରତିମୂର୍ତ୍ତି ସେଠାରୁ କାଢ଼ି ନିଆଗଲା ସିନା, ଫିଙ୍ଗିଦେବାକୁ କାହାରି ମନ ବଳିଲା ନାହିଁ । ରଖିଦିଆଗଲା ଗୋଟିଏ ବହି ଭିତରେ ଗୋବିନ୍ଦଙ୍କ ଫେରିବା ପର୍ଯ୍ୟନ୍ତ ।

ଏଣେ ଆଶ୍ରମରେ ଠାକୁରେ ପଚାରୁଛନ୍ତି– ଗୋବିନ୍ଦ ! ତୁ ସେ ମଠରେ କେତେ ଟଙ୍କା ପାଉଛୁ ?

ଗୋବିନ୍ଦ – ପନ୍ଦର ଟଙ୍କା ।

ଠାକୁର – ମୁଁ ପଚିଶି ଟଙ୍କା ଦେବି । ତୁ ସେଠୁ ଛାଡ଼ିକି ପଳାଇଆସ । ଏଠି ଲକ୍ଷ୍ମୀ ନାରାୟଣଙ୍କ ପୂଜା କରିବୁ । ଆଉ ଯଦି ସେମାନେ ତୋତେ ନ ଛାଡ଼ନ୍ତି, ତେବେ ତୁ କହିବୁ– ମୁଁ ମୋ ଠାକୁରଙ୍କୁ ଯେଉଁଠି ଯେମିତି ରଖି ପୂଜା କରୁଥିଲି, ଯଦି ସେଇମିତି ପୂଜା କରିବି, ତେବେ ରହିବି । ନ ହେଲେ ନାହିଁ ।

ଆଶ୍ରମରୁ ଫେରି ଗୋବିନ୍ଦ ଯେତେବେଳେ ଦେଖିଲେ ସତକୁ ସତ ଠାକୁରେ ଆଉ ତାଙ୍କ ସ୍ଥାନରେ ନାହାନ୍ତି, ସେ ବାହାରିଲେ ପଳାଇ ଆସିବାକୁ । ଗାଁ ଲୋକେ କିନ୍ତୁ ଛାଡ଼ିବାକୁ ନାରାଜ ।

ଗୋବିନ୍ଦ କହିଲେ– ଦେଖ, ତମେମାନେ ମୋ ଠାକୁରଙ୍କର ଅପମାନ କରିଛ । ମୁଁ ଆଉ ମୁହୂର୍ତ୍ତଟିଏ ବି ରହିବାକୁ ଚାହେଁନା । ଯଦି ତମେମାନେ କହୁଛ, ତେବେ ଗୋଟିଏ

ସର୍ତ୍ତରେ ମୁଁ ରହିବି । ଆଉ ସେ ସର୍ତ୍ତ ହେଲା, ଠାକୁରେ ମୋର ପୂର୍ବରୁ ଯେପରି ଯେଉଁଠି ରହି ପୂଜା ପାଉଥିଲେ, ଯଦି ସେମିତି ପୂଜା ପାଇବେ ତେବେ ରହିବି । ନ ହେଲେ ମୁଁ ଚାଲିଲି ।

କଥାଟା ସଙ୍ଗେ ସଙ୍ଗେ ରାଷ୍ଟ୍ର ହୋଇଗଲା ଗାଁ ସାରା । ଯିଏ ଶୁଣିଲା ସେ ଦୁଃଖିତ ହେଲା । କାରଣ ଗୋବିନ୍ଦ କେବଳ ମଠର ଜଣେ ଦରମାଖିଆ ପୂଜାରୀ ନ ଥିଲେ । ସେ ଥିଲେ ସେ ଅଞ୍ଚଳରେ ସମସ୍ତଙ୍କର ଜଣେ ଆପଣାର ଲୋକ ।

ଗ୍ରାମବାସୀଙ୍କ ଦାବି ଅନୁସାରେ ଟ୍ରଷ୍ଟ ବୋର୍ଡ୍‌ର ଜରୁରୀ ବୈଠକ ଡକାଗଲା ଏ କଥାର ବିଚାର ପାଇଁ । ଠାକୁରଙ୍କର କଥାନୁସାରେ ଗୋବିନ୍ଦ ବାଢ଼ିଥିବା ସର୍ତ୍ତ ସର୍ବସମ୍ମତି କ୍ରମେ ପୂରଣ ହେଲା ।

ଠାକୁରେ ତାଙ୍କ ପୂର୍ବସ୍ଥାନରେ ରହି ପୁଣି ପୂଜା ପାଇଲେ । ଆଉ ମଠ ଛାଡ଼ି ଚାଲି ଆସୁଥିବା ଗୋବିନ୍ଦ ପୁଣି କିଛି ବର୍ଷ ଅଟକିଗଲେ ସେଇଠି ।

ଧନ୍ୟ ପ୍ରଭୁ ! ଧନ୍ୟ ତୁମର ଲୀଳା । ଏଇଭଳି ନିତ୍ୟ ନୂତନ ଲୀଳା କରିବା ପାଇଁ ତ ତୁମେ ଏ ଧରାଧାମକୁ ଆସିଥିଲ ।



# ଚିଠି : ସେଇ ପ୍ରଥମ, ସେଇ ଶେଷ

ଆଜିକାଲି ପରି ସେତେବେଳେ ଟେଲିଫୋନ୍ ବା ମୋବାଇଲ୍‌ର ପ୍ରଚଳନ ନ ଥିଲା । ଯୋଗଯୋଗର ଏକମାତ୍ର ମାଧ୍ୟମ ଥିଲା ଚିଠି । କର୍ମମୟ ଜୀବନର ଜଞ୍ଜାଳ ଭିତରୁ ମଣିଷ କିଛି ସମୟ ବାହାର କରୁଥିଲା ଚିଠି ଲେଖିବା ପାଇଁ । ଏଇ ଚିଠି ମାଧ୍ୟମରେ ଦୂରଦୂରାନ୍ତରେ ଥିବା ବନ୍ଧୁ ପ୍ରିୟଜନ ତଥା ଆପଣାର ଲୋକଙ୍କ ସହିତ ସେ ସମ୍ପର୍କ ସ୍ଥାପନ କରୁଥିଲା । ସାଧାରଣ କଥା ପାଇଁ ଯେ କୌଣସି ସମୟରେ ଚିଠିଖଣ୍ଡିଏ ଲେଖାଯାଇ ପାରୁଥିଲା ବେଳେ କୌଣସି ବିଶେଷ କଥା ପାଇଁ ଖୋଜା ପଡୁଥିଲା ଏକ ବିଶେଷ ମୁହୂର୍ତ୍ତର ।

ଚିଠି ଖଣ୍ଡିଏ ଲେଖି ଡାକରେ ପକାଇଲା ପରେ ମଧ୍ୟ ଉତ୍କଣ୍ଠାର ଶେଷ ହେଉ ନ ଥିଲା । ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନରେ ଚିଠି ଖଣ୍ଡିଏ ପହଞ୍ଚିବାକୁ ଅତି କମ୍‌ରେ ତିନି ଚାରିଦିନ ସମୟ ଲାଗୁଥିଲା ବେଳେ ସ୍ଥଳ ବିଶେଷରେ ଏହା ଆଠ ଦଶଦିନ ମଧ୍ୟ ନେଉଥିଲା । ଚିଠି ପହଞ୍ଚିଲା କି ନାହିଁ ବୋଲି ପ୍ରେରକ ଯେତିକି ଚିନ୍ତା କରୁଥିଲା, ପ୍ରାପକ ମଧ୍ୟ ସେତିକି ଉତ୍କଣ୍ଠାର ସହିତ ଅପେକ୍ଷା କରୁଥିଲା ଚିଠିକୁ । ବେଳେବେଳେ ଡାକବାଲାକୁ ଚାହିଁ ଚାହିଁ ଆଖିରୁ ପାଣି ମରୁ ନ ଥିଲା, ଟିକିଏ ବିଳମ୍ବ ହେଲେ ଆପଣାର ଲୋକଠାରୁ ଚିଠି ଖଣ୍ଡିଏ ଆସିବାରେ ।

ଚିଠିଦ୍ୱାରା ଏକ ଭାବଗତ ସମ୍ପର୍କ ସ୍ଥାପିତ ହେଉଥିଲା ମଣିଷର ହୃଦୟରେ । ଚିଠିର ଉତ୍ତର ଆସିବାରେ ସମୟ ଲାଗୁଥିଲା ପ୍ରାୟ ପନ୍ଦର ଦିନରୁ ଏକମାସ ଭିତରେ । ଆଉ ତା'ର ପ୍ରତୀକ୍ଷାରେ ଯେଉଁ ଆବେଗ ଥିଲା, ଯେଉଁ ଆନନ୍ଦ ବା ଅଶ୍ରୁ ଥିଲା, ତାହା ହୁଏତ ବୁଝିପାରିବନି ଆଜିର ମୋବାଇଲ୍ ଯୁଗର ନବ୍ୟ ସଭ୍ୟ ମଣିଷ, ଯିଏ କେବେ ଖଣ୍ଡିଏ ଚିଠି ଲେଖିବାର ଆବଶ୍ୟକତା ଅନୁଭବ କରିନାହିଁ ବା ପାଇବାର ଆଶା ମଧ୍ୟ କରି ନାହିଁ ।

ସବୁ ବୟସର ଲୋକଙ୍କ ଭିତରେ ଚିଠି ଆଦାନ ପ୍ରଦାନ ହେଉଥିଲା । ଚିଠି ଆଣୁଥିଲା ସମ୍ବାଦ, ଚିଠି ଦେଉଥିଲା ଉପଦେଶ । ଚିଠି ଜଣାଉଥିଲା ଅଭିନନ୍ଦନ । ଚିଠି ଦେଖାଉଥିଲା ବାଟ– ସଙ୍କଟର ସମାଧାନ । ଚିଠି ମିଳନ ଘଟାଉଥିଲା ଦୁଇଟି ହୃଦୟର -

ପୁଣି ଭାଙ୍ଗି ଚୁରମାର୍ କରି ଦେଉଥିଲା ସୁନାର ସଂସାର । କେତେ ହସଲୁହର ସାକ୍ଷୀ ଥିଲା ଏଇ ଚିଠି –କେତେ ସ୍ୱପ୍ନର ପିରାମିଡ୍ ଗଢୁଥିଲା ଏଇ ଚିଠି । ସୁତରାଂ ଏଥି ପୂର୍ବର ସମାଜରେ ଚିଠିର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଚିଠି କେବେ ବି ଲେଖାଯାଉ ନ ଥିଲା ତା' ପାଖକୁ, ଯିଏ ନିକଟରେ ଥିଲା । ସବୁ ଚିଠିର ମୂଲ୍ୟ ମଧ୍ୟ ସମାନ ନ ଥି ଲା । କିଏ ଆସୁ ଆସୁ ଚିରି ଫିଙ୍ଗା ଯାଉଥିଲା ତ କିଏ ସାଇତା ହୋଇ ରଖାଯାଉଥିଲା ଯୁଗ ଯୁଗ ପାଇଁ ଅମୂଲ୍ୟ ସମ୍ପଦ ଭାବରେ । ଯେମିତି ସଂଗୃହିତ ହୋଇଛି ଆମର ଶ୍ରୀଗୁରୁ ଭଣ୍ଡାର ଦ୍ୱାରା ପ୍ରକାଶିତ ପୁସ୍ତକ "ଶ୍ରୀ ଶ୍ରୀ ଠାକୁରଙ୍କ ଚିଠି"ରେ ।

ସଙ୍କଳିତ ପୁସ୍ତକର ପଞ୍ଚାଅଶୀତମ ଚିଠିଖଣ୍ଡିକ ହେଉଛି ଭକ୍ତ ଶ୍ରୀ ପଞ୍ଚାନନ ପାଣିଗ୍ରାହୀଙ୍କ ନିକଟକୁ ଠାକୁରଙ୍କର ଏକମାତ୍ର ଚିଠି, ଯାହା ଅବତାରଣା କରେ ଠାକୁରଙ୍କର ଐଶୀଲୀଳାର ଏକ ଅଭୁଲା କାହାଣୀ । ଶ୍ରୀ ପାଣିଗ୍ରାହୀ କହନ୍ତି–

ଠାକୁରେ ଦେହ ଛାଡ଼ିବାର ଦୁଇମାସ ପୂର୍ବର ଘଟଣା । ତା ୧୩।୯।୧୯୬୩ ସନ୍ଧ୍ୟାରେ କାମରୁ ଫେରି ସବୁଦିନ ପରି ମୁଁ ଗଲି ଠାକୁରଘରକୁ ପ୍ରଣାମ କରିବା ପାଇଁ । ଘରୁ ବାହାରକୁ ଯିବାବେଳେ ଓ ବାହାରୁ ଘରକୁ ଫେରିଲା ବେଳେ ଏହା ଥିଲା ମୋର ନିତିଦିନିଆ ଅଭ୍ୟାସ । କିନ୍ତୁ ସେଦିନ ଠାକୁର ଘର କବାଟ ଖୋଲି ଦେଲା ପରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସାତଟି ଝିଅ ମଧ୍ୟରୁ ବାମନ ଝିଅଟିକୁ ତା' ମାଆ ହାତଗୋଡ଼ ବାନ୍ଧି ସେହି ଘରେ ପକାଇ ଦେଇଥିଲା । କଇଁ କଇଁ ହୋଇ ସେ କାନ୍ଦୁଥିଲା । ମୋତେ ଦେଖିଲା ପରେ ତା'ର କୋହ ଆହୁରି ବଢ଼ିଗଲା । ଦଉଡ଼ି ଖୋଲି ମୁଁ ତାକୁ ବନ୍ଧନ ମୁକ୍ତ କଲି । ତା'ର ଆଖିରୁ ଲୁହ ପୋଛିଦେଲି । ପିଠି ଆଉଁସି ଦେଇ ମୁଁ ତାକୁ ବୋଧ ଦେଲି । ଘଟଣା ପଛର କାରଣ ଯାହା ଥାଉନା କାହିଁକି, ମୁଁ ନିଜକୁ ଦୋଷମୁକ୍ତ କରିପାରିଲି ନାହିଁ କୌଣସି ପ୍ରକାରେ । ମୋ ଆଖିରେ ବି ଲୁହ ଜକେଇ ଆସିଲା ।

ଠାକୁରଙ୍କ ନିକଟରେ ଜଣାଇଲି– ଠାକୁରେ ! ମୁଁ ନିଶ୍ଚୟ ଗୋଟାଏ ପାପୀ । ତା' ନ ହେଲେ ମୁଁ ବହୁ କୁଟୁମ୍ବୀ ହେଲି କାହିଁକି ? ତୁମେ ତ କହିଛ, ଯେ ପାପୀ, କଳି ଯୁଗରେ ସେ ବହୁ କୁଟୁମ୍ବୀ ହେବ... ବହୁ ଗୋଧନର ଅଧିକାରୀ ହେବ । ତେଣୁ ମୁଁ ଯେହେତୁ ବହୁ କୁଟୁମ୍ବୀ, ମୁଁ ନିଶ୍ଚୟ ଗୋଟାଏ ପାପୀ । ଏ ପାପର ବୋଝ ବୋହି ଆଉ କେତେଦିନ ଚାଲିବି ? ଯାଉଛି ଏ ଜୀବନ ହାରିଦେବି ।

ପୁଣି ମନକୁ ଆସିଲା, "ମୁଁ ପାପୀ ନୁହେଁ, ମୁଁ ବହୁତ ଭାଗ୍ୟବାନ୍ । ଭାଗ୍ୟବାନ୍ ବୋଲି ତ ମୁଁ ଆପଣଙ୍କୁ ଗୁରୁ ରୂପରେ ପାଇଛି । ପାପୀ ହୋଇଥିଲେ କ'ଣ ମୁଁ ସ୍ୱୟଂ ନାରାୟଣଙ୍କୁ ଗୁରୁ ରୂପରେ ପାଇ ତାଙ୍କଠାରୁ ଦୀକ୍ଷା ନେବାର ସୁଯୋଗ ପାଇଥାନ୍ତି ?"

ସଂକଳ୍ପ ଆଉ ବିକଳ୍ପର ଲୁଚକାଳି ଖେଳ ଭିତରେ ପର ମୁହୂର୍ତ୍ତରେ ମନ ପୁଣି ନିଶ୍ଚୟ କରିନେଲା– "ମୁଁ ପାପୀ, ସେଥିପାଇଁ ମୁଁ ବହୁକୁଟୁମ୍ବୀ । ଅଭାବ ଅନଟନ ମୋର ଚିର ସହଚର । ପରିବାରର ସଠିକ୍ ଯତ୍ନ ନେଇପାରୁ ନ ଥିବାରୁ ଏ ଯେତେ ପ୍ରକାର ଅଶାନ୍ତି । ସୁତରାଂ ଜୀବନର ପରିସମାପ୍ତିରେ ହିଁ ଏ ଅଶାନ୍ତିରୁ ମୁକ୍ତି ମିଳିବ ।"

ମୁଁ ସ୍ଥିର କରିନେଲି, ସେହି ରାତିରେ ସମସ୍ତେ ଶୋଇଯିବା ପରେ ରେଳ ଧାରଣାରେ ଶୋଇ ଆତ୍ମହତ୍ୟା କରିବି ରାତି ତିନିଟା କୋଡ଼ିଏ ମିନିଟ୍‌ରେ । ପ୍ୟାଣ୍ଟ ସାର୍ଟ ପିନ୍ଧିଲି । ଦେଖିଲି, ଘଣ୍ଟାରେ ମାତ୍ର ନଅଟା ବାଜିଛି । ଏତେ ଶୀଘ୍ର ଯଦି ଷ୍ଟେସନକୁ ଯାଏ , ତା'ହେଲେ ସମସ୍ତେ ତ ଚିହ୍ନା । ପଚାରିବେ, ପାଣିଗ୍ରାହୀ ବାବୁ! ଆପଣ ଏତେବେଳେ କୁଆଡ଼େ ? କ'ଣ କୁଆଡ଼େ ଯିବାର ଅଛି ନା' କ'ଣ ?" ନା ନା ଏତେ କୈଫିୟତ୍ ଦେଇ ପାରିବିନି ଏତେ ଲୋକଙ୍କୁ । ବରଂ ଷ୍ଟେସନ୍‌କୁ ନ ଯାଇ ଗାଡ଼ି ବେଳକୁ ସିଧା ରେଳ ଧାରଣା ପାଖକୁ ଚାଲିଯିବାଟା ଠିକ୍ ହେବ । ନା ଥିବ କାହାରି ପ୍ରଶ୍ନବାଣ ନା କିଛି ଝଞ୍ଝଟ୍ ।

ହେଲେ ମନଟା ଖୁବ୍ ଅସ୍ଥିର ହେଉଥିଲା । ପ୍ୟାଣ୍ଟ ସାର୍ଟ ପିନ୍ଧି ଘରେ ଅପେକ୍ଷା କରି ରହିଲି ଗାଡ଼ି ବେଳକୁ । କାନ୍ଥକୁ ଆଉଜି ବସିଥାଏ । ଆଖିରେ ଟିକିଏ ବି ପଲକ ପଡୁ ନ ଥାଏ । ଲାଗୁଥାଏ ଗୋଟିଏ ମୁହୂର୍ତ୍ତ ଯେମିତି ଗୋଟାଏ ଯୁଗ । ହାତଘଣ୍ଟାକୁ ଅନାଉଥାଏ ବାରମ୍ବାର, କେତେବେଳେ ତିନିଟା ବାଜିବ । ନଅରୁ ଦଶ, ଦଶରୁ ଏଗାର, ଏଗାରରୁ ବା'ର ଆଉ ତା'ପରେ ବାରରୁ ଯେତେବେଳେ ଗୋଟାଏ ବାଜିଲା, ସେତେବେଳେ ମନର ବେଗ ବହୁତ ବଢ଼ି ଯାଇଥିଲା । ରେଳଧାରଣା ଛଡ଼ା ଆଉ କିଛି ଦେଖାଯାଉ ନ ଥିଲା ଆଖିକୁ । ବାସ୍... ତା'ପରେ ଆରମ୍ଭ ହୋଇଗଲା ଠାକୁରଙ୍କ ମାୟାର ଖେଳ । ଗାଡ଼ି ବେଳ ହେବାକୁ ଆଉ ଅଳ୍ପ ସମୟ ବାକି ଅଛି, ମୋହ ନିଦ୍ରା ଘୋଟି ଆସିଲା ମୋତେ । କାନ୍ଥକୁ ଆଉଜି ବସିଥିବା ଅବସ୍ଥାରେ ମୁଁ ଗଭୀର ନିଦ୍ରାରେ ଅଭିଭୂତ ହେଲି । ଆଉ ନିଦ ଭାଙ୍ଗିଲା ବେଳକୁ ଦେଖିଲି ପୂର୍ବ ଆକାଶରେ ସୂର୍ଯ୍ୟ ଦେବତାଙ୍କର ସୁନେଲି କିରଣ ।

କାଳରାତ୍ରି ଅପସାରିତ ହୋଇ ସାରିଥିଲା ସେତେବେଳକୁ । ମୁଁ ଚମକି ପଡ଼ିଲି, ଘର ଲୋକେ କେହି ମୋତେ ଏ ଅବସ୍ଥାରେ ଦେଖି ନାହାନ୍ତି ତ ?

ପ୍ରଭୁ ମୋର କିନ୍ତୁ ଏ ଲଜ୍ଜାଜନକ ପରିସ୍ଥିତିରୁ ମୋତେ ବଞ୍ଚାଇ ଦେଇଥିଲେ । ମୁଁ ଆଶ୍ୱସ୍ତ ହେଲି, ଯେତେବେଳେ ମୁଁ ଜାଣିଲି ଯେ କେବଳ ମୁଁ ନୁହେଁ, ଆମ ଘରର ସମସ୍ତଙ୍କୁ ନିଦ୍ରା ଦେବୀ ଆଚ୍ଛନ୍ନ କରି ରଖିଛନ୍ତି ତାଙ୍କର କଳାଶାଢ଼ୀର ପଣତକାନିରେ । କେହି ଜଣେ ବି ଶଯ୍ୟାତ୍ୟାଗ କରି ନ ଥିଲେ ମୋ ପୂର୍ବରୁ ।

ସ୍ନାନାଦି ନିତ୍ୟକର୍ମ ସାରି ମୁଁ ପଶିଗଲି ଠାକୁର ଘରକୁ । ଲାଗିପଡ଼ିଲି ନିତ୍ୟ ନୈମିତ୍ତିକ ସେବାପୂଜାରେ । ଏତିକିବେଳେ ପ୍ରାୟ ସଢ଼େ ସାତଟାରେ ସେହି ଠାକୁର ଘରେ ଥିବା

ଭିତରେ ହିଁ ପୋଷ୍ଟମ୍ୟାନ୍ ଆସି ଦେଇଗଲା ଖଣ୍ଡିଏ ଅନ୍ତର୍ଦ୍ଦେଶୀୟ ପତ୍ର ବାମନ ଝିଅ ହାତରେ । ଆଉ ଚିଠିଟି ଆସିଥିଲା ମୋର ପରମାରାଧ୍ୟ ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସ ଦେବଙ୍କଠାରୁ ।

ମୁଁ ତ ଠାକୁରଙ୍କ ପାଖକୁ କେବେ ଚିଠି ଦେଇ ନାହିଁ ବା ତା'ର ଆବଶ୍ୟକତା ଅନୁଭବ କରିନାହିଁ । କାରଣ ମୁଁ ମାସକୁ ଚାରିଥର ଆଶ୍ରମ ଯାଏ ଠାକୁରଙ୍କ ଦର୍ଶନ ପାଇଁ । ଏପରିକି ଅଫିସ୍ କାମରେ କଟକ ଭୁବନେଶ୍ୱର ଯିବାକୁ ପଡ଼ିଲେ, ସମୟ ବାହାର କରି ମୁଁ ଚାଲିଯାଏ ଠାକୁରଙ୍କ ଦର୍ଶନକୁ । ଠାକୁର ମଧ୍ୟ କେବେ ମୋ ପାଖକୁ ଚିଠି ଦିଅନ୍ତି ନାହିଁ । ଏଭଳି ପରିସ୍ଥିତିରେ ଠାକୁରଙ୍କ ପତ୍ର ଖଣ୍ଡିକ ମୋ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କଲା ।

କନକ ଚନ୍ଦ୍ର ପଟ୍ଟନାୟକ ନାମକ ଜଣେ ଭକ୍ତ ନିଜର ଠିକଣା ଲେଖି ସେ ଅନ୍ତର୍ଦ୍ଦେଶୀୟ ପତ୍ର ଖଣ୍ଡିକ ଠାକୁରଙ୍କୁ ଦେଇଥିଲେ, ତାଙ୍କ ନିକଟକୁ ପତ୍ର ଦେବାକୁ । ଠାକୁରେ ତାଙ୍କର ନାମ ଓ ଠିକଣା କାଟି ଦେଇ ଇଂରାଜୀରେ ଲେଖିଥିଲେ ମୋର ନାମ ଓ ଠିକଣା । ଚିଠିଟି ଲେଖା ହୋଇଥିଲା ଶାନ୍ତି ଧାମରେ ତା ୧୪ ।୯ ।୧୯୬୩ ରିଖରେ ଓ ମୋ ପାଖରେ ମଧ୍ୟ ପହଞ୍ଚିଥିଲା ଜଟଣିରେ ସେହି ତା ୧୪ ।୯ ।୧୯୬୩ ରିଖରେ । ମୁଁ ଆଶ୍ଚର୍ଯ୍ୟ ହେଲି । ମୁଁ ବୁଝିପାରିଲି ନାହିଁ ଏହା କିପରି ସମ୍ଭବ । ଶାନ୍ତିଧାମରୁ ଜଟଣି ବହୁତ ଦୂର । ଯାତାୟାତ ପାଇଁ ଯାନବାହନର ସେମିତି କିଛି ସୁବିଧା ମଧ୍ୟ ନାହିଁ । ଚିଠିଖଣ୍ଡିଏ ଆସିବାକୁ ଅତି କମ୍‌ରେ ତିନି ଚାରିଦିନ ସମୟ ଦରକାର । ପୁଣି ପତ୍ରବାହକ ପୋଷ୍ଟମ୍ୟାନ୍ କାନ୍ଧରେ ପୋଷ୍ଟବ୍ୟାଗ୍ ପକାଇ ଗାଁ ଦାଣ୍ଡରେ ଧପଡ଼ି ଚାଲିଲା ବେଳେ ଯେଉଁ ଝୁମ୍‌ଝୁମ୍ ଶବ୍ଦ ହୁଏ, ତାହା ଖଣ୍ଡେ ଦୂରରୁ ସୂଚାଇଦିଏ ତା'ର ଆଗମନୀ ବାର୍ତ୍ତା । ତା'ଛଡ଼ା ପୋଷ୍ଟମ୍ୟାନ୍‌ର ଆସିବା ସମୟ ହେଉଛି ଦିନ ନଅଟା କି ଦଶଟା ।

ଚିଠିରେ ଠାକୁରେ ଲେଖିଥିଲେ, "ଶ୍ରୀମାନ୍ ପଞ୍ଚାନନ ମୋର । ଠାକୁରଙ୍କର କୃପାଦୃଷ୍ଟିରେ ତ ସର୍ବଦା ମୋର ପଞ୍ଚାନନ ମଙ୍ଗଳରେ ରହିବାର କଥା । ତଥାପି ଗୃହ ଜଞ୍ଜାଳରେ ବହୁତ ଝଡ଼ଝଞ୍ଜା ମଧ୍ୟ ଥାଏ । ତେବେ ସେଥିପାଇଁ ବିବ୍ରତ ହେବ ନାହିଁ । ଇତି । ଗୋଟିଏ ଟନ୍ କିମ୍ବା ୨ ଟନ୍ ଟିଣ ଦର୍କାର କରୁଥିଲା । ତା'ର ପର୍‌ମିଟ ପାଇଁ କ'ଣ ସୁବିଧା ହୋଇପାରିବ କି ? ଯଦି ହୋଇପାରିବ ତେବେ ଚେଷ୍ଟା କରିବ । । ଇତି ।

ତୁମର ହିତୈଷୀ,

ଅଭିରାମ ପରମହଂସ ।"

ଚିଠିଟି ପଢ଼ିଲା ପରେ ଆଖିରେ ମୋର ଲୁହ ଜକେଇ ଆସିଲା । ଭାବିଲି, ଏ ଟିଣ କଥା ବୁଝିବାଟା ଗୋଟେ ବାହାନା । ଅସଲ କଥା ହେଉଛି ପଞ୍ଚାନନକୁ ବାଟକୁ

ଆଣିବା । ଆତ୍ମହତ୍ୟା ଭଳି ଜଘନ୍ୟ ପାପକର୍ମ ଆଡ଼କୁ ତା' ମନ ଯେଭଳି ଆଉ ଥରେ ନ ଯାଏ, ସେଥିପାଇଁ ତାକୁ ବୁଝାଇବା ।

ମୁଁ ତ ଘର ପରିବାର ବା ସଂସାରର କୌଣସି କଥା କେବେ ଠାକୁରଙ୍କୁ ଜଣାଏ ନାହିଁ । ତେଣୁ ପରବର୍ତ୍ତୀ ସମୟରେ ଯେତେବେଳେ ମୁଁ ଆଶ୍ରମ ଗଲି, ଠାକୁରଙ୍କ ଚିଠି ବା ତା' ସମ୍ପର୍କୀୟ କୌଣସି କଥା ମୁଁ କିଛି କହିଲି ନାହିଁ । ମନକଥା ମନରେ ରହିଲା । କିନ୍ତୁ ଠାକୁରେ ସେଥର ପଚାରିଥିଲେ, "ପିଲାମାନେ କେମିତି ଅଛନ୍ତି ?"

ମୁଁ ଉତ୍ତର ଦେଇଥିଲି, "ଠାକୁରେ ଯେମିତି ରଖିଛନ୍ତି ସେମିତି ଅଛନ୍ତି ।"

କଥା ସେତିକିରେ ରହିଲା । ସେ ଆଉ କିଛି ପଚାରି ନାହାନ୍ତି କିମ୍ବା ମୁଁ ମଧ୍ୟ କିଛି କହି ନାହିଁ ।

ଅନତି ଦୂରରେ ଛିଡ଼ା ହୋଇ ମୁଁ କେବଳ ଭାବୁଥିଲି ସେଇ ଚିଠି ଆଉ ତାକୁ ଆଣି ଆସିଥିବା ପୋଷ୍ଟମ୍ୟାନ୍‌ର କଥା ।



# ଦୁର୍ଗାମାଧବ ସ୍ତବର ମାହାତ୍ମ୍ୟ– ଏକ ଅନନ୍ୟ ଅନୁଭୂତି

ଠାକୁରଙ୍କ ଭକ୍ତ ଶ୍ରୀ କସ୍ତୁରୀ ଚରଣ ଦାସ... ଘର କେନ୍ଦ୍ରାପଡ଼ା ଜିଲ୍ଲା ଅନ୍ତର୍ଗତ ଗ୍ରାମ ଜରିଆବାଡ଼... ସ୍ୱାଧୀନତା ସଂଗ୍ରାମୀ... ଦୋଳବାବାଙ୍କ ଜନ୍ମସ୍ଥାନ ତନାର ଗାଁରେ ଗୋଟିଏ ଚାଉଳକଳ ପକାଇଥାନ୍ତି । ସେହି କଳଘରେ ରହନ୍ତି... ନିତ୍ୟ ନୈମିତ୍ତିକ ସାଧନ ଭଜନ ମଧ୍ୟ ଚାଲିଥାଏ ସେଇଠି । ସେ ହେଉଛନ୍ତି ବାବାଙ୍କ ଆଧ୍ୟାତ୍ମିକ ଜୀବନର ପ୍ରଥମ ପଥ ପ୍ରଦର୍ଶକ । ସେତେବେଳେ ବାବା ହାଇସ୍କୁଲରେ ପଢୁଥାନ୍ତି । ସନ୍ଧ୍ୟାରେ ପାଠପଢ଼ା ଓ ଟିଉସନ ଇତ୍ୟାଦି ସାରି ରାତି ପ୍ରାୟ ନଅଟା ପାଖାପାଖି ଯାଆନ୍ତି ଗାଁ ମୁଣ୍ଡର ସେଇ କଳଘରକୁ । ଗାଁର ଆଉ କିଛି ପିଲା ମଧ୍ୟ ଯାଆନ୍ତି । ରାତିରେ କସ୍ତୁରୀବାବୁ ଠାକୁରଙ୍କ ପୂଜା କରନ୍ତି । ସମସ୍ତେ ପୂଜାରେ ଯୋଗ ଦିଅନ୍ତି । କିଛି ଧର୍ମାଲୋଚନା ମଧ୍ୟ ହୁଏ । ତା'ପରେ ବିଶ୍ରାମ ନିଅନ୍ତି ସମସ୍ତେ । ତାଙ୍କରି ପରାମର୍ଶରେ ବାବା ମୁଖସ୍ଥ କରନ୍ତି ଶ୍ରୀମଦ୍ ଭଗବତ୍ ଗୀତାର ଦ୍ୱାଦଶ ଅଧ୍ୟାୟ ଓ ଦୁର୍ଗାମାଧବ ସ୍ତବର କ'ଠାରୁ ଠ' ପର୍ଯ୍ୟନ୍ତ ପଦାବଳୀ । କସ୍ତୁରୀ ବାବୁ କହନ୍ତି, ଦୁର୍ଗାମାଧବ ସ୍ତବପାଠରେ ସମସ୍ତ ଆପଦ ବିପଦର ଖଣ୍ଡନ ହୁଏ ।

ସେଦିନ ରାତିରେ ଖାଇପିଇ ସାରି ବାହାରିଲା ବେଳକୁ ଆକାଶରେ ମେଘ ଉଠାଇଥାଏ । ଅନ୍ଧାରରେ ଗାଁ ଦାଣ୍ଡ ଦେଇ ଗଲାବେଳକୁ ବାଟରେ ପଡ଼େ ଗାଁ ମଠ । ମଠର ପୂଜାରୀ ତଥା ଗାଁର ଅନ୍ୟ ଲୋକମାନଙ୍କ କହିବା ଅନୁସାରେ ଦୁଇଟି ତମ୍ବା ବର୍ଣ୍ଣର ନାଗ ପ୍ରତ୍ୟହ ରାତିରେ ପାଣିନଳା ବାଟ ଦେଇ ମଠରୁ ବାହାରି ରାସ୍ତାର ଅପର ପାର୍ଶ୍ୱରେ ଥିବା ଖଳାବାଡ଼ି ଆଡ଼କୁ ଯାଆନ୍ତି ଓ ଫେରନ୍ତି । ହେଲେ ସେମାନେ କେବେ କାହାରି କ୍ଷତି କରୁ ନ ଥିବାରୁ, ଲୋକମାନେ ସେମାନଙ୍କୁ ଅନେକ ବାର ଦେଖିଥିଲେ ହେଁ ମାରନ୍ତି ନାହିଁ । ଦୁର୍ଗାମାଧବ ସ୍ତବର କିୟଦଂଶ ମୁଖସ୍ଥ ଥିବାରୁ ବାବାଙ୍କର ସେମାନଙ୍କ ପ୍ରତି ମଧ୍ୟ ଭୟ ନ ଥାଏ । କିନ୍ତୁ ଭୟ ଥାଏ ବେଙ୍ଗକୁ, କାଳେ ଅନ୍ଧାରରେ ମାଡ଼ିହୋଇ ଯିବ ପରା । ସେଥିପାଇଁ ହାତରେ ଧରିଲେ ଗୋଟିଏ ଦୁଇସେଲିଆ ଟର୍ଚ୍ଚ ଲାଇଟ୍, ଯାହାର ବେଟେରୀ ପ୍ରାୟ ସରି ସରି ଆସିଥାଏ । ସୁଇଚ୍ ଟିପିଲେ ଯେଉଁ କ୍ଷୀଣ ଆଲୋକ ସେଥିରୁ ବାହାରେ ତାହା ଜଳିବା ନ ଜଳିବା ସଙ୍ଗେ ସମାନ । ତଥାପି ବାଆକୁ ବତା ଭଳି ଟର୍ଚ୍ଚଟି ହାତରେ ଧରି ବାହାରି ପଡ଼ିଲେ ବାବା ।

କିନ୍ତୁ ଦଇବ ଯୋଗ ଏଭଳି ଯେ ବେଙ୍ଗ ମାଡ଼ିବେ କ'ଣ, ସେଇ ନାଗ ଭିତରୁ ଗୋଟିକ ଉପରେ ପାଦ ପଡ଼ିଗଲା ବାବାଙ୍କର । ଘରୁ ବାହାରିଲା ବେଳଠାରୁ ତ ପାଠ ଚାଲିଥାଏ ଦୁର୍ଗାମାଧବ ସ୍ତବ ଅଖଣ୍ଡ ବିଶ୍ୱାସର ସହିତ । ପାଦ ପଡ଼ିଯିବା ମାତ୍ରେ ସାଏଁ କରି ପାଦରେ ଗୁଡ଼ାଇ ହୋଇଗଲା ନାଗଟି । ସ୍ତବପାଠରେ ଥିବା ଅଖଣ୍ଡ ବିଶ୍ୱାସ କିନ୍ତୁ ଆଣି ଦେଇଥିଲା ନିରୁଦ୍‌ବିଗ୍ନତା । ମୁହୂର୍ତ୍ତେ ଅଟକି ଯାଇ ପାଦଟିକୁ କିଛି ସମୟ ଟେକି ଧରିଲେ ବାବା । ଧୀରେ ଧୀରେ ଗୋଡ଼ରୁ ଖସିଯାଇ ତା' ନିଜ ବାଟରେ ଚାଲିଗଲା ନାଗ । କିନ୍ତୁ ସେ ଚାଲିଯିବା ପରେ ଗୋଡ଼ର ଗୋଟିଏ ସ୍ଥାନ ରୁଗୁ ରୁଗୁ ହୋଇ ପୋଡ଼ିବାକୁ ଆରମ୍ଭ କଲା ଯଦିଓ ତା' ଭିତରେ କାମୁଡ଼ିଥିବାର କୌଣସି ସୂଚନା ନ ଥିଲା ତାଙ୍କ ପାଖରେ । କଳଘରେ ପହଞ୍ଚିଲା ବେଳକୁ ଠାକୁରଙ୍କ ପୂଜା ଆରମ୍ଭ ହୋଇ ଯାଇଥାଏ । ବାବା ଟର୍ଚ୍ଚ ମାରି କେଉଁଠି କ'ଣ ହେଲା ବୋଲି ଦେଖିଲା ବେଳକୁ ନଜର ପଡ଼ିଲା କସ୍ତୁରୀ ବାବୁଙ୍କର । ସମସ୍ତେ ଧାଇଁ ଆସି ଦେଖିଲେ, ପୋଡୁଥିବା ଜାଗାରେ ଘମିରରେ ନଖ ବାଜିଗଲେ ଯେମିତି ହୁଏ, ସେଇମିତି ଟିକିଏ ଲାଲ ଦେଖାଯାଉଛି । ଦନ୍ତାଘାତର ଆଶଙ୍କା କରି ଠାକୁରଙ୍କ ମସ୍ତକରୁ ସଦ୍ୟ କଢ଼ା ଯାଇଥିବା ଗୋଟିଏ ତୁଳସୀ ମଞ୍ଜରୀ ଆଣି ବାବାଙ୍କ ହାତରେ ଦେଲେ କସ୍ତୁରୀ ବାବୁ । କହିଲେ, ନିଅ ପାଇଦିଅ । କିନ୍ତୁ ବାବା ଏକବାର ଅରାଜି । କହିଲେ, ସାପ କାମୁଡ଼ିବା ପରି ତ ତାଙ୍କୁ ଜଣା ପଡୁ ନାହିଁ । ଆଉ ଯଦିବା କାମୁଡ଼ିଥାଏ ତେବେ ଏଥିପାଇଁ ଠାକୁରଙ୍କ ତୁଳସୀ ପ୍ରସାଦକୁ ସେ ବ୍ୟବହାର କରିପାରିବେ ନାହିଁ । ଫଳ ତେଣିକି ଯାହା ହେଉନା କାହିଁକି ? ବାବାଙ୍କର ଏ ପ୍ରକାର ଜିଦ୍‌ରେ କସ୍ତୁରୀବାବୁ ଟିକିଏ ଅସନ୍ତୋଷ ହେଲା ଭଳି ମନେ ହେଲା ଯଦିଓ ପ୍ରକାଶ୍ୟରେ ସେ କିଛି କହିଲେ ନାହିଁ ।

ଠାକୁରଙ୍କ ପୂଜା ସରିଲା । ବାବାଙ୍କ ପହୁଡ଼ ଗୀତ "କଳାହାତୀରେ, କେତେ ହେଲାଣି ରାତି...." ଗାନରେ ପହୁଡ଼ ଗଲେ ଠାକୁର । ତା'ପରେ ନିଜ ନିଜ ବିଛଣାରେ ଅବସନ୍ନ ଶରୀରଗୁଡ଼ିକୁ ଲୋଟାଇଦେଲେ ଅନ୍ୟମାନେ । ନିଦ୍ରାଦେବୀ ମଧ୍ୟ କ୍ଷଣକ ମଧ୍ୟରେ ଆଚ୍ଛନ୍ନ କରିନେଲେ ସମସ୍ତଙ୍କୁ ନିଜର କଳା ପଣତରେ ।

ରାତ୍ରିର ମଧ୍ୟମ ପ୍ରହର – ବାବା ସ୍ୱପ୍ନ ଦେଖୁଛନ୍ତି । ସାନବାପାଙ୍କର ସେଇ ବଖୁରିକିଆ ଘର, ଯେଉଁଠି ଠାକୁରଙ୍କର ଗୋଟିଏ ପ୍ରତିମୂର୍ତ୍ତି ଝାବଲ ଭିତରେ ରଖି ବାବା ପୂଜା କରନ୍ତି । ସାନବାପା ଶୁଦ୍ଧପୂତ ଭାବରେ ଅତି ପ୍ରସନ୍ନ ଚିତ୍ତରେ ଘଣ୍ଟି ବଜାଇ ଠାକୁରଙ୍କର ପୂଜା କରୁଛନ୍ତି । ଆଶ୍ଚର୍ଯ୍ୟ ହୋଇଗଲେ ବାବା, ଲଙ୍କାରେ ହରି ଶବ୍ଦ ଶୁଣିଲା ପରି । ଯିଏ ତାଙ୍କ ଜୀବନ କାଳରେ କେବେ ଦିନଟିଏ ବି ମନ୍ଦିର ଦୁଆର ମାଡ଼ି ନାହାନ୍ତି, ପୂଜାପାଠ ଧର୍ମକର୍ମଠାରୁ ବହୁ ଦୂରରେ, ସେ ପୁଣି ଆଜି ଠାକୁର ପୂଜା କରୁଛନ୍ତି !! ନିଜ ଆଖିକୁ ବିଶ୍ୱାସ

କରିପାରିଲେନି ବାବା ! ଠାକୁରଙ୍କୁ ପ୍ରଣାମ କରି ଉଠିଲା ବେଳକୁ ସାନବାପା କହିଲେ, କିଏ ଦୋଳ କିରେ ! ନେ ନେ ଏଇ ଠାକୁରଙ୍କ ତୁଳସୀ । ବାବାଙ୍କ ପାଟିରେ ଆଣି ଗେଞ୍ଜିଦେଲେ ଏକ ସଦ୍ୟ ତୁଳସୀ । ଚଟ୍‌କରି ନିଦ ଭାଙ୍ଗିଗଲା ବାବାଙ୍କର । ଦେଖିଲେ ସତକୁ ସତ ପାଟିରେ ଠାକୁରଙ୍କ ତୁଳସୀ । ଚନ୍ଦନ ଲାଗିଛି, ଠିକ୍ ଯେମିତି ଦେଇଥିଲେ କଣ୍ଟୁରୀବାବୁ ଶୋଇବା ପୂର୍ବରୁ ଏବଂ ଯାହାକୁ ପ୍ରତ୍ୟାଖ୍ୟାନ କରିଥିଲେ ବାବା । ନିଜକୁ ଆଉ ସମ୍ଭାଳି ପାରିଲେ ନାହିଁ ବାବା । ଭୋ' କରି କାନ୍ଦି ଉଠିଲେ ସମସ୍ତଙ୍କ ନିଦ୍ରା ଭଙ୍ଗ କରି । କ'ଣ ହେଲା ବୋଲି ସମସ୍ତେ ଧାଇଁ ଆସିଲେ ବାବାଙ୍କ ପାଖକୁ । ରାତି ସେତେବେଳକୁ ପ୍ରାୟ ଦୁଇଟା ଅଢ଼େଇଟା ହେବ ।

ସ୍ୱପ୍ନ ବୃତ୍ତାନ୍ତ ଶୁଣିଲା ପରେ ଓ ପାଟିରେ ଠାକୁରଙ୍କ ତୁଳସୀ ଦେଖିଲା ପରେ ବୁଝାଇଲେ କଣ୍ଟୁରୀବାବୁ ।

"ବୁଝିଲ ଦୋଳ ! ଇଏ କାହାର ଲୀଳା ? ସବୁ ସେଇ କରୁଣାମୟ ଠାକୁରଙ୍କର ଲୀଳା । ସେ ହିଁ ଆଜି ତୁମ ସାନବାପାଙ୍କ ରୂପରେ ଆସି ତୁମ ମୁଖରେ ଏ ତୁଳସୀ ପ୍ରସାଦ ଦେଇ ଯାଇଛନ୍ତି । ତୁମେ ଜାଣ କି ନ ଜାଣ, ମାନ କି ନ ମାନ, ତୁମକୁ ନିଶ୍ଚୟ ଦନ୍ତାଘାତ ହୋଇଛି ଏବଂ ସେହି ବିପଦରୁ ଉଦ୍ଧାର କରିବା ପାଇଁ ଠାକୁରେ ସ୍ୱୟଂ ପ୍ରଦାନ କରିଛନ୍ତି ଏହି ତୁଳସୀ ପ୍ରସାଦ ।"

ସକାଳେ ଘରକୁ ଫେରିବା ବାଟରେ ବାବା ପୁଣି ଶୁଣିବାକୁ ପାଇଲେ ମଠର ପୂଜାରୀଙ୍କଠାରୁ । ସେ କହୁଛନ୍ତି ଜଣେ ଲୋକ ଆଗରେ, "ଜାଣିଲନା, କାଲି ରାତିରେ ଗୋଟିଏ ନାଗ କ'ଣ ହେଲା କେଜାଣି ମରି କରି ଶୋଇଛି ମଠ ଅଗଣାରେ । ଆଜି ଦେଖିଲି, କେବଳ ଗୋଟିଏ ନାଗ ହିଁ ଯାଉଥିଲା ନଳାବାଟରେ ।

ଏବେ ବାବାଙ୍କର ଆଉ ବୁଝିବାକୁ ବାକି ରହିଲାନି ଯେ ଦୁର୍ଗାମାଧବ ସ୍ତବପାଠ ସମୟରେ ଦଂଶନ କରିଥିବାରୁ ନାଗର ଏ ବିଷମୟ ପରିଣତି । ଏ କଠୋର ଦଣ୍ଡ ବିଧାନ ।

ସତରେ ଠାକୁରଙ୍କର ଏ ଅମୋଘ ଅସ୍ତ୍ରଟି କ'ଣ ନ କରିପାରେ ? କଣ୍ଟୁରୀ ବାବୁଙ୍କ ଭାଷାରେ ସବୁ ଆପଦ ବିପଦରୁ ଉଦ୍ଧାର କରେ ଏ ସ୍ତବ । ଲୋଡ଼ା କେବଳ ଅଟଳ ବିଶ୍ୱାସ ।

ଏଇ ବିଶ୍ୱାସ ଟିକକ ଆମର ଦୃଢ଼ କର ପ୍ରଭୁ । ଆଉ କିଛି ଲୋଡ଼ା ନାହିଁ । ଧନ, ଜନ, ବୈଭବ ନା ଆଉ କିଛି । ପ୍ରମାଣ କରେ ଭାଗବତ –

"ମୂଳଟି ଅଟଇ ବିଶ୍ୱାସ, କହଇ ଜଗନ୍ନାଥ ଦାସ ।"



# ଶ୍ରୀକୃଷ୍ଣଙ୍କ ସେବା ବିହୀନେ...

୧୯୭୮ ମସିହାର ଘଟଣା । ଆଚାର୍ଯ୍ୟ ବୈକୁଣ୍ଠ ବାବାଙ୍କୁ ଛାଡ଼ିଦେଲେ ଆଉ କାହାର ବାଣୀ ଯଦି କୋମଳ ଆଉ ମଧୁର ଥିଲା, ତେବେ ସେ ହେଉଛନ୍ତି ଶାନ୍ତି ଆନନ୍ଦାଶ୍ରମର ଅନ୍ୟତମ ନିର୍ମାତା ପୂଜ୍ୟପାଦ କଣ୍ଟୁରୀ ବାବା । "କୋମଳ ମଧୁର ବଚନ, କହି ତୋଷିବ ଜନମନ" – ଭାଗବତର ଏ ବାଣୀ ଅକ୍ଷରେ ଅକ୍ଷରେ ପାଳିତ ହୋଇଥିଲା ତାଙ୍କ ଜୀବନରେ । ବୈକୁଣ୍ଠବାବା ଠାକୁରଙ୍କ ପ୍ରଥମ ସନ୍ନ୍ୟାସୀ ହେଲାବେଳେ ଠାକୁରଙ୍କର ପ୍ରଥମ ଶିଷ୍ୟ ହେବାର ଗୌରବ ଅର୍ଜନ କରିଥିଲେ କଣ୍ଟୁରୀ ବାବା । ଖାଲି ସେତିକି ନୁହେଁ, ବାବାଙ୍କ ଦେହ ପରି ତାଙ୍କ ଦେହ ମଧ ଥିଲା ଖୁବ୍ ନରମ । ସତେ ଯେମିତି ସଦ୍ୟ ଛିଡ଼ା ଯାଇଥିବା ଦୁଧଛେନା ।

ଯିଏ କାହାକୁ କେବେ କୌଣସି କଡ଼ା କଥା କହନ୍ତି ନାହିଁ, ସିଏ କାହାରି କଡ଼ା କଥା ମଧ ସହିପାରନ୍ତି ନାହିଁ । ସେହିପରି ଉତ୍ତମ ବ୍ୟବହାର ସମ୍ପନ୍ନ ବ୍ୟକ୍ତି ମଧ କାହାରି ଦୁର୍ବ୍ୟବହାର ସହିପାରନ୍ତି ନାହିଁ । ସାମାନ୍ୟ କଡ଼ାକଥା ବା ବ୍ୟବହାରରେ ସାମାନ୍ୟ ତ୍ରୁଟି ତାଙ୍କର କୋମଳ ପ୍ରାଣରେ ବହୁତ ଆଘାତ ଦେଇଥାଏ । କାହାକୁ କିଛି ନ କହିଲେ ବି ମନେ ମନେ ସିଏ ଭାଙ୍ଗି ପଡ଼ନ୍ତି । ଦୁର୍ବଳ ହୋଇଯାଆନ୍ତି ।

ସେହିଭଳି ଏକ ଘଟଣା ଘଟିଲା କଣ୍ଟୁରୀବାବାଙ୍କ ଶେଷ ଜୀବନରେ । ତାଙ୍କର ସମ୍ପୂର୍ଣ୍ଣ ଜୀବନ ଥିଲା ଠାକୁରଙ୍କ ପାଇଁ ସମର୍ପିତ । ଦୈନନ୍ଦିନ ଜୀବନଚର୍ଯ୍ୟା ମଧ ଥିଲା ଖୁବ୍ ଶୃଙ୍ଖଳିତ । ଘଣ୍ଟା ପଛେ ଭୁଲ ହୋଇଯିବ. କିନ୍ତୁ ରାତି ଦୁଇଟା ବାଜିଗଲା ଅଥଚ ବାବା ଶଯ୍ୟାତ୍ୟାଗ କରିନାହାନ୍ତି, ଏହା କେବେ ବି ଘଟିନି । ମୁଖ ପଖାଳିଲା ପରେ ଧ୍ୟାନରେ ବସିବେ ଦୁଇ ଘଣ୍ଟା, ଭୋର୍ ଚାରିଟା ପର୍ଯ୍ୟନ୍ତ । ତା'ପରେ ବହିର୍ଭୂମି, ସ୍ନାନାଦି ନିତ୍ୟକର୍ମ ସମାପନାନ୍ତେ ପୁଣି ଅଧଘଣ୍ଟାଏ ଧ୍ୟାନ । ବାର୍ଦ୍ଧକ୍ୟର ପ୍ରଭାବରେ ଦୃଷ୍ଟିଶକ୍ତି ଯେତେବେଳେ କମି ଆସିଲା, ସେତେବେଳେ ଚଳପ୍ରଚଳ ମଧ କମିଗଲା । ତଥାପି ଆଖିରେ ଗୋଟାଏ ମୋଟାକାଚର ଚଷମା ପିନ୍ଧି, ହାତରେ ବାଡ଼ି ଖଣ୍ଡିଏ ଧରି ସେହି ଅବସ୍ଥାରେ ବି ସେ ସକାଳ ଛଅଟା ବେଳକୁ ଚାଲିଯାଆନ୍ତି ଗୋଶାଳା ପର୍ଯ୍ୟନ୍ତ ଗୋରୁଗାଈଙ୍କ ଭଲମନ୍ଦ ବୁଝିବା ପାଇଁ ।

ସମାଧି ମନ୍ଦିର ବାରଣ୍ଡା କୋଣ ହେଉଛି ବାବାଙ୍କର ସବୁଦିନିଆ ବସିବା ସ୍ଥାନ । ପ୍ରାତଃକାଳରେ ମନ୍ଦିରର ପହଡ଼ ଖୋଲିବା ପରେ ଏବଂ ସନ୍ଧ୍ୟାରେ, ବର୍ତ୍ତମାନର ଆଚାର୍ଯ୍ୟ ବଳରାମ ବାବା ମୁଗୁନି ପଥରର ଗୋଟିଏ ମୋଟା ଗ୍ଲାସରେ ପ୍ରାୟ ଦୁଇକପ୍ ଭଳି ଚା' ଆଣି ଦେଇ ଯା'ନ୍ତି ବାବାଙ୍କୁ । ଚା' ପିଇ ସାରିଲା ପରେ ସାମନାରେ କେହି ଯାଉଥିଲେ ବାବା ପଚାରନ୍ତି– କିଏ ଯାଉଛ ? ଉତ୍ତର ପାଇଲା ପରେ ଖୁବ୍ ଧୀର ଭାବରେ କହନ୍ତି– ଏ ଗ୍ଲାସଟା ଟିକେ ନେଇ ବଳରାମ ବାବାଙ୍କୁ ଦେଇ ପାରିବ? କେହି ବାବାଜୀ ବା ବ୍ରହ୍ମଚାରୀ ଥିଲେ ନେଇଯା'ନ୍ତି । କିନ୍ତୁ କେବେ ବି ସେ ଆଦେଶ ଦେବା ଭଳି ଭାଷାରେ ବା ଭଙ୍ଗୀରେ କଥା କହନ୍ତି ନାହିଁ । ଯଦିଓ ତାଙ୍କର ସେ ଅଧିକାର ଥିଲା ।

ମନ୍ଦିର ପାଖକୁ ଲାଗି ଏବେ ଯେଉଁଠି ଅହ୍ଲଣିଆ ଭଣ୍ଡାର ଅଛି, ସେଇଠି ଗୋଟିଏ ଘର ଥିଲା । ଆଗରୁ ବାବା ରହୁଥିଲେ ସେଇଠି ଗୋବର୍ଦ୍ଧନ ବାବାଙ୍କ ସହିତ । ଗୋବର୍ଦ୍ଧନ ବାବା ଦେହ ରକ୍ଷା କଲା ପରେ ଏକା ରହିଲେ । କିନ୍ତୁ ପରେ ଯେତେବେଳେ ଦେହ ବେଶି ଦୁର୍ବଳ ହେଲା, ଝାଡ଼ା ପରିସ୍ରା ଯିବାର ସୁବିଧା ଦୃଷ୍ଟିରୁ ତାଙ୍କୁ ରଖାଗଲା ସେତେବେଳର ରବିବାବାଙ୍କ ଘରପାଖ ଆଚାର୍ଯ୍ୟ (ମୟୂରଭଞ୍ଜର ପୂର୍ଣ୍ଣଚନ୍ଦ୍ର ଆଚାର୍ଯ୍ୟ) ଘରେ । ସେ ଧାଡ଼ିର ସମସ୍ତ ଘରର ସଦର ଦରଜା ଚନ୍ଦନ ପୋଖରୀ ହୁଡ଼ା ଆଡ଼କୁ ମୁହଁ କରିଥିବା ବେଳେ ପଛପଟର ବଡ଼ ଖୋଲା ଝରକାଗୁଡ଼ିକ ଥାଏ ଆଶ୍ରମର ଅଗଣା ଆଡ଼କୁ । ତେଣୁ ଦୁଇପଟକୁ ବାଟ ଥିଲେ ବି ସାମ୍ନା ପଟ ଅପେକ୍ଷା ବେଶି କାରବାର ହୁଏ ପଛପଟରେ ।

ଦିନେ ରାତିରେ ବାବା ଘର ଭିତରେ ଶୋଇଥାନ୍ତି । ଠାକୁରଙ୍କ ଥାଳ ଉଠିଲା ପରେ ସମସ୍ତେ ପ୍ରସାଦ ଦେବା ପାଇଁ ମଣୋହି କୋଠାକୁ ଚାଲିଲେ । ଆଶ୍ରମର ଗୋଟିଏ ବିଧି ଅଛି ଯେ ମନ୍ଦିରକୁ ଅହ୍ଲଣିଆ ଥାଳ ଆସିଲା ପରେ ଘଣ୍ଟା ବାଜେ । ଯିଏ ଯେଉଁଠି ଥାଆନ୍ତି ସମସ୍ତେ ମଣୋହି କୋଠା ବା ପ୍ରସାଦ ବଣ୍ଟନ ହେଉଥିବା ପଙ୍ଗତ ସ୍ଥଳକୁ ଯାଆନ୍ତି ଏବଂ ଥାଳ ଉଠିଲା ପରେ ପ୍ରସାଦ ଦିଅନ୍ତି । ବୟୋଜ୍ୟେଷ୍ଠ ଗୁରୁଜନ ସନ୍ନ୍ୟାସୀ ଏବଂ ରୁଗ୍ଣ / ଅସୁସ୍ଥ ଅନ୍ତେବାସୀଙ୍କ ବସାଘରକୁ ପ୍ରସାଦ ପଠାଇ ଦିଆଯାଏ ତାଙ୍କର ସେବାକାରୀ ବା ଅନ୍ୟମାନଙ୍କ ହାତରେ । ଭକ୍ତମାନେ କାଳେ ଶୋଇ ପଡ଼ିଥିବେ ବା ଘଣ୍ଟା ଶବ୍ଦ ଶୁଣି ପାରି ନ ଥିବେ ଏବଂ ସେପଟେ ପ୍ରସାଦ ସରିଯିବ –ଏଭଳି ଭାବି ବାବାମାନେ ମଧ୍ୟ ଡାକି ଦିଅନ୍ତି ସେମାନଙ୍କୁ । ଯେଭଳି କେହି ଅଭୁକ୍ତ ରହି ନ ଯାଆନ୍ତି, ସେଥିପାଇଁ ଆଶ୍ରମରେ ଠାକୁରଙ୍କର ଏହି ସୁନ୍ଦର ବ୍ୟବସ୍ଥା । ପୁରାତନ ଭକ୍ତ, ନବାଗତ ବ୍ୟକ୍ତି ବା ଅତିଥି ଅଭ୍ୟାଗତ ସମସ୍ତଙ୍କ ପ୍ରତି ବାବା ଓ ମା'ମାନଙ୍କର ଏହି ଅନାବିଳ ସ୍ନେହ ଆଦର ଅନେକ ସମୟରେ ଅଭିଭୂତ କରିଦିଏ ଭକ୍ତମାନଙ୍କୁ ।

ସେଦିନ ବାବାଙ୍କ ସେବାରେ ନିଯୁକ୍ତ ବାଲେଶ୍ୱର ଆଡ଼ର ସେ ବୟସ୍କ ବ୍ରହ୍ମଚାରୀ ଜଣକ କାହିଁକି କେଜାଣି ଆସିଲେ ନାହିଁ ପ୍ରସାଦ ନେବାକୁ । ବିଳମ୍ବ ହେବାରୁ ବଳରାମ

ବାବା ଗୋଟିଏ ବେଲାରେ କିଛି ଉଷୁମ କ୍ଷୀର ଓ ସେଥିରେ ଦୁଇଖଣ୍ଡ ରୁଟି ପକାଇ ଦେଲେ ଜଣେକ ଯୁବକ ସନ୍ନ୍ୟାସୀଙ୍କୁ । କହିଲେ ସେ ବୁଢ଼ା ତ ଆଜି କାହିଁକି ଆସିନି, ତମେ ଟିକେ ନେଇ କସ୍ତୁରୀ ବାବାଙ୍କୁ ଦେଇ ଆସ ତ !

ସେବା ଏକ ଅମୂଲ୍ୟ ବସ୍ତୁ । ସମସ୍ତଙ୍କ ଦେଇ ସେବା ହୋଇପାରେନା । ସେବାର ମହତ୍ତ୍ୱ ଯିଏ ବୁଝିଛି, ଯିଏ ସମର୍ପିତ ପ୍ରାଣ, ସେବ୍ୟଙ୍କ ପ୍ରତି ଯାହାର ଶ୍ରଦ୍ଧା ଅଛି, ସେ କେବଳ ସେବା କରିପାରେ କାୟମନୋବାକ୍ୟରେ । ସେବ୍ୟଙ୍କ ସନ୍ତୋଷବିଧାନ ହେଉଛି ସେବକର ଲକ୍ଷ୍ୟ । ତେଣୁ ତାଙ୍କ ଅନ୍ତରର ଗଭୀରତମ ପ୍ରଦେଶରେ ଉଠୁଥିବା ସୂକ୍ଷ୍ମ ଭାବନା ତରଙ୍ଗକୁ ବୁଝିବାକୁ ଚେଷ୍ଟା କରେ ସେବକ ଏବଂ ତଦନୁସାରେ ପ୍ରସ୍ତୁତ କରିନିଏ ନିଜକୁ । ମନଜାଣି ଯୋଗାଇଦିଏ ଆବଶ୍ୟକୀୟ ଉପକରଣ । ପ୍ରତିଦାନରେ ସେ କିଛି ବି ଚାହେଁନା । ଏପରିକି ଆଶୀର୍ବାଦ ମଧ ନୁହେଁ । କିନ୍ତୁ ଅଯାଚିତ ଭାବରେ ଝରିଯାଏ ଆଶିଷର ଧାରା, ଯାହା ସେବକକୁ ମହିମାନ୍ୱିତ କରେ । ପୁଷ୍ଟ କରେ । ପ୍ରଚଣ୍ଡ ପ୍ରତିଭାର ଅଧିକାରୀ କରାଏ ସମସ୍ତଙ୍କ ଅଗୋଚରରେ । ପ୍ରବଚକମାନେ କହନ୍ତି 'ସେବା'କୁ ଲେଉଟାଇ ଦେଲେ ହେବ 'ବାସେ' । ଅର୍ଥାତ୍ ସେବାର ସୁଗନ୍ଧ ଚତୁର୍ଦ୍ଦିଗରେ ବ୍ୟାପିଯାଏ ।

ହେଲେ ଚପଳମତି ଯୁବକ ସନ୍ନ୍ୟାସୀଙ୍କ ମନରେ ସେ ଭାବନା ନ ଥିଲା । ନା ଥିଲା ଶ୍ରଦ୍ଧା ନା ଥିଲା ସମର୍ପଣ । ଠାକୁର ଲେଖିଛନ୍ତି– "ଶ୍ରଦ୍ଧାଭାବ ଶ୍ରଦ୍ଧାଭାବ ଶ୍ରଦ୍ଧାଭାବ ସାର, ଶ୍ରଦ୍ଧାଭାବ ବିନା ଯେତେ ସବୁ ନାରଖାର ।" ସତକୁ ସତ ତାଙ୍କର ଅଶ୍ରଦ୍ଧା ଭାବ ସବୁ ନାରଖାର କରିଦେଲା । ଯୁବକ ସନ୍ନ୍ୟାସୀ ଜଣକ ବେଲାଟି ଧରି ଘର ଭିତରକୁ ଗଲେ ନାହିଁ । ଶଯ୍ୟାଶାୟୀ ଅସୁସ୍ଥ ବାବାଙ୍କୁ ଉଠାଇଲେ ନାହିଁ କିମ୍ବା ସୌଜନ୍ୟମୂଳକ ସମ୍ଭାଷଣ ମଧ କଲେ ନାହିଁ; ଘର ବାହାରେ ଥାଇ ଖୋଲାଥିବା ଝରକା ବାଟେ ଠେଲିଦେଲେ ସେ ବେଲାଟି ଆଉ ଡାକଟେ ମାରିଦେଲେ, "ହୋ କସ୍ତୁରୀ ବାବା ! ହେଇ ତମ ପ୍ରସାଦ ରହିଲା, ପାଇବ ।"

ସେତେବେଳେ ବିଜୁଳି ଆଲୁଅ ଆସି ନ ଥିଲା ଆଶ୍ରମକୁ । ଲଣ୍ଠନଟିଏ ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ସେଇ ଶୋଇଥିବା ଅବସ୍ଥାରେ ବାବା ପଚାରିଲେ– କିଏ ? କିଏ ଆସିଛ ? ଦୁଇ ଚାରିଜଣଙ୍କ ନାଁ ମଧ ଧରି ପଚାରିଲେ– ତୁମେ ଅମୁକ କି ?

ଯୁବକ ସନ୍ନ୍ୟାସୀ ନା ପାଖକୁ ଗଲେ ନା ନିଜର ପରିଚୟ ଦେଲେ । ନିଜ ବସାଘର ଆଡ଼କୁ ଚାଲି ଯାଉଥିବା ଅବସ୍ଥାରେ କେବଳ ବଡ଼ପାଟିରେ ପଦଟିଏ କହିଲେ, "ତମ ପ୍ରସାଦ ରହିଲା, ପାଇବ ।"

ଠାକୁର ଲେଖିଛନ୍ତି– "ନନ୍ଦନନ୍ଦନ ହେ ରାଧା ହୃଦୟ-ପଦକ, ବିଷମ ସଂସାର ଏ ଯେ ନାହିଁ ତହିଁ ସୁଖ ।" ଜନ୍ମ ଦୁଃଖ, ଜୀବନ ଦୁଃଖ, ଜରା ଦୁଃଖ, ମରଣ ମଧ ଦୁଃଖ । ଏ ବିଷମ ସଂସାରରେ ସୁଖ ବୋଲି ପଦାର୍ଥ ହିଁ ନାହିଁ । ଆମେ କେବଳ ଭ୍ରମରେ ପଡ଼ି ସୁଖ

ଖୋଜୁଛୁ; କିନ୍ତୁ ପାଉଛୁ କ'ଣ, କେବଳ ଦୁଃଖ । ବଳବୟସ ଥିବା ସମୟର କଥା ଭିନ୍ନ; ଦୁଃଖ ଯନ୍ତ୍ରଣା ଆସିଲେ ତାକୁ ସାମ୍ନା କରିବା, ତା'ର ସମ୍ମୁଖୀନ ହେବାର ସାହସ ଓ ଶକ୍ତି ଥାଏ । ତାକୁ ସହିବାର ସାମର୍ଥ୍ୟ ମଧ ଥାଏ । ମାତ୍ର ଜୀବନର ଚତୁର୍ଥାବସ୍ଥା ଆସିଗଲେ, ବାର୍ଦ୍ଧକ୍ୟ ଆସିଗଲେ ମାଡ଼ିବସେ ନାନା ପ୍ରକାର ରୋଗ । ଯନ୍ତ୍ରଣା ଜର୍ଜରିତ ଜୀବନ ହୋଇଯାଏ ଦୁର୍ବିସହ । ବଞ୍ଚି ରହିବାର ମୋହ କଟିଯାଏ । ରାଜା ହେଉ ବା ଭିକାରୀ ହେଉ, ଗୃହସ୍ଥ ହେଉ ବା ସଂସାରତ୍ୟାଗୀ ସନ୍ନ୍ୟାସୀ, ସମସ୍ତେ ଅଳ୍ପ ବହୁତେ ଶିକାର ହୁଅନ୍ତି ଏଇ ବାର୍ଦ୍ଧକ୍ୟର ।

ଯୁବକ ସନ୍ନ୍ୟାସୀଙ୍କର ଏତାଦୃଶ ବ୍ୟବହାର ଗଭୀର ଭାବରେ ଆଘାତ ଦେଲା ବାବାଙ୍କୁ । ଯିଏ ସନ୍ନ୍ୟାସୀ ଜୀବନର ଆଦର୍ଶ ସୃଷ୍ଟି କରି ଯାଇଛନ୍ତି ଭବିଷ୍ୟତ ପାଢ଼ି ପାଇଁ, ରଖିଯାଇଛନ୍ତି ନାନାଦି ଉଦାହରଣ ଠାକୁରଙ୍କ ତତ୍ତ୍ୱ ଓ ଦର୍ଶନର ପ୍ରତିଷ୍ଠା ପାଇଁ, ତାଙ୍କ ପ୍ରତି ଏ ପ୍ରକାର ଆଚରଣ କମ୍ ଅକ୍ଷମଣୀୟ ଅପରାଧ ନୁହେଁ । ବୃଷଭକୁ ମାରିଲେ ଲିଙ୍ଗରେ ବାଜେ ଭଳି କଥା । ଠାକୁରଙ୍କ ପ୍ରତି ମଧ ଦ୍ରୋହ ଆଚରଣ । ସେ ଅସନ୍ତୁଷ୍ଟ ହେଲେ କାଳେ ଯୁବକ ସନ୍ନ୍ୟାସୀଙ୍କର କିଛି ଅମଙ୍ଗଳ ହେବ, ଏଇ ଭାବନାରେ ହୁଏତ କରୁଣାସିକ୍ତ ବାବା ସେଦିନ ଠାକୁରଙ୍କ ନିକଟରେ ପ୍ରାର୍ଥନା କରିଥିବେ ଯୀଶୁଖ୍ରୀଷ୍ଟଙ୍କ ପରି – ହେ ପ୍ରଭୁ ! ସେ କ'ଣ କରୁଛନ୍ତି, ତାହା ସେ ନିଜେ ଜାଣନ୍ତି ନାହିଁ । ତାଙ୍କୁ କ୍ଷମା କରିଦିଅ ।

ଶାନ୍ତ ସମାହିତ ବାବା ଯୁବକ ସନ୍ନ୍ୟାସୀଙ୍କ ଉପରେ ରୁଷ୍ଟ ହେଲେ ନାହିଁ ସିନା କିନ୍ତୁ ଅନୁଭବ କଲେ, ଏ ଜୀବନ ଜିଇଁବାର ଆଉ ଆବଶ୍ୟକତା ନାହିଁ । ଏ ଶରୀର ଏବେ ପ୍ରଭୁଙ୍କ ସେବା ପାଇଁ ଅନୁପଯୁକ୍ତ । ଏହାର ଯତ୍ନ ନେବା ମଧ ଏବେ ଅନାବଶ୍ୟକ । ବରଂ....

ପ୍ରସାଦ ଦେଇସାରି ମଣୋହି କୋଠାରୁ ଫେରିଲା ବେଳକୁ ବଳରାମ ବାବା ଦୋଳବାବାଙ୍କୁ କହିଲେ, "ବାବାଜୀ, ତମେ ଗଲାବେଳେ ଟିକେ କଣ୍ଟୁରୀ ବାବାଙ୍କ ପାଖକୁ ଯିବ ତ । ସେ ପ୍ରସାଦ ଦେଇ ସାରିଥିଲେ ସେ ବାସନଟା ଟିକେ ଧୋଇ ଦେଇ ମୋତେ ଆଣିଦେବ ।"

ଦୋଳବାବା ଦେଖିଲେ, କବାଟ ମେଲା ପଡ଼ିଛି । ବାବା ଶୋଇଛନ୍ତି । ଖଣ୍ଡେ ଦୂରରେ ପ୍ରସାଦ ଥିବା ବେଲାଟି ଥୁଆ ହୋଇଛି । ବାବା ପାଖକୁ ଗଲେ । ଡାକି କହିଲେ– ବାବା ! ଆପଣ କ'ଣ ଏତେବେଳଯାଏ ପ୍ରସାଦ ଦେଇ ନାହାନ୍ତି ? ଉଠନ୍ତୁ ଉଠନ୍ତୁ, ପ୍ରସାଦ ଦେଇସାରି ଶୋଇବେ ।

କିନ୍ତୁ ବହୁ ଚେଷ୍ଟା ସତ୍ତ୍ୱେ ବି ବାବା ଆଉ ଉଠିଲେନି । ପଚାରିଲେ– ବାବାଜୀ ! କିଏ ପ୍ରସାଦ ନେଇକି ଆସିଥିଲା କି ?

– ଅମୁକ ବାବା ।

– ଆଚ୍ଛା, ମୁଁ କ'ଣ କୁକୁର ନା ମାଙ୍କଡ଼ ? ଝରକା ସେପଟେ ଥାଇ ସେ ବେଲାଟା ଠେଲିଦେଇ ଗଲା । ନାଁ ପଚାରି ପଚାରି କହିଲାନି । ଭିତରକୁ ଆସିଥିଲେ ମୁଁ ଟିକେ ପାଣି ଆଣିବାକୁ କହିଥାନ୍ତି କି କ'ଣ ? କିନ୍ତୁ ଡାକି ଡାକି ଆସିଲାନି । ଓଲଟି ଚାଲି ଯାଉ ଯାଉ କହିଲା କ'ଣ ନା, ତମ ପ୍ରସାଦ ଥୁଆ ହୋଇଛି, ପାଇବ ।

– ହଉ ଏବେ ଉଠନ୍ତୁ । ମୁଁ ପାଣି ଆଣି ଦେଉଛି । ଯେତିକି ଇଚ୍ଛା ହେବ, ପ୍ରସାଦ ଦେଇସାରି ଶୋଇବେ ।

– ନାଇଁ ନାଇଁ, ମୋର ଆଉ ଇଚ୍ଛା ନାହିଁ ପ୍ରସାଦ ଦେବାକୁ । ତମେ ଯା' ଶୋଇବ । ତମେ କ'ଣ ଭାବୁଛ, ସେ ବାବାଜୀ ଉପରେ ରାଗି କରି ମୁଁ ପ୍ରସାଦ ଦେଉନି ବୋଲି ? ସେକଥା ନୁହେଁ । ମୁଁ ଭାବୁଛି ଅବଶିଷ୍ଟ ଜୀବନର କଥା । ଏଣିକି ଖାଲି କଷ୍ଟ । ଠାକୁରଙ୍କ ସେବା ତ ଆଉ କିଛି କରିପାରୁନି । ଖୋଇ ପେଇ ଏ ଶରୀରକୁ ବଞ୍ଚାଇ ରଖିବାରେ ଲାଭ କ'ଣ ? ଏଣିକି ଯେତେଦିନ ରହିବ ଖାଲି କଷ୍ଟ ପାଇବ । ତେଣୁ ମୋତେ ଆଉ ବଳାନି । ମୁଁ ଆଜି ପ୍ରସାଦ ଦେବିନି ।

ନିରସ୍ତ ହୋଇ ଦୋଳବାବା ଫେରି ଆସିଲେ ଝରକା କବାଟ ଆଉଜାଇ ଦେଇ । ସବୁକଥା ଆସି କହିଲେ ବଳରାମ ବାବାଙ୍କୁ । ବାବା ଶୁଣିଲା ପରେ ବିରକ୍ତ ହେଲେ ସେ ଯୁବକ ସନ୍ନ୍ୟାସୀଙ୍କ ଉପରେ । କର୍ତ୍ତବ୍ୟରେ ଅବହେଳା ପାଇଁ କଣ୍ଟୁରୀ ବାବାଙ୍କ ସେବାରେ ନିଯୁକ୍ତ ପୂର୍ବୋକ୍ତ ବୟସ୍କ ବ୍ରହ୍ମଚାରୀଙ୍କୁ ସେଠାରୁ ହଟାଇ ଦିଆଗଲା ଏବଂ ସେହିଦିନଠାରୁ ବାବାଙ୍କ ସେବାରେ ନିଯୁକ୍ତ କରାଗଲା ଦୋଳବାବାଙ୍କୁ । ବେଶିଦିନ ନୁହେଁ, ପ୍ରାୟ ପନ୍ଦରଦିନ ଖଣ୍ଡେ ସେ ତାଙ୍କ ସେବାରେ ନିୟୋଜିତ ହୋଇଥିଲେ ।

ମାତ୍ର ସେହିଦିନଠାରୁ ବାବା ପ୍ରାୟ ଖାଦ୍ୟ ଛାଡ଼ିଦେଲେ କହିଲେ ଚଳେ । ଅତି ବଳାବଳି କଲେ କେବେ ଫାଳେ ବା କେବେ ଚଉଠେ ରୁଟି ଦିଅନ୍ତି । ଢୋକେ ଦି' ଢୋକ କ୍ଷୀର ଦିଅନ୍ତି । ବାକି ସବୁ ରହେ ସେଇ ବେଳାରେ ।

ସାଧକ ପାଇଁ ଶରୀର ଏକ ସାଧନ କ୍ଷେତ୍ର । ପ୍ରଭୁଙ୍କର ନିବାସସ୍ଥଳ । ଠାକୁରଙ୍କ ଭାଷାରେ– "ପବିତ୍ର ଈଶ୍ୱର ମନ୍ଦିର ଏହି ତୋର ଶରୀର, ରାଧାକୃଷ୍ଣ ଖେଳୁଅଛନ୍ତି ଭକତଙ୍କୁ ଗୋଚର ।" ଶରୀର ସୁସ୍ଥ ଓ ନିରୋଗ ନ ହେଲେ ସାଧନାରେ ବ୍ୟାଘାତ ସୃଷ୍ଟି ହୁଏ । ତେଣୁ ସାଧକ ଭକ୍ତ ମଧ୍ୟ ଶରୀରର ଯତ୍ନ ନିଏ । ସଂସାରୀ ଲୋକ ପରି ଭୋଗବିଳାସ ପାଇଁ ନୁହେଁ, ଅନ୍ୟ ଆଖିରେ ସୁନ୍ଦର ଦିଶିବା ପାଇଁ ନୁହେଁ । ତା'ର ଶରୀରଚର୍ଯ୍ୟା କେବଳ ପ୍ରଭୁଙ୍କ ସେବା ପାଇଁ । ଶରୀର ଯଦି ପ୍ରଭୁ କାର୍ଯ୍ୟ ପାଇଁ ଅନୁପଯୁକ୍ତ ହେଲା, ଜୀବନ ଥାଉଁ ଥାଉଁ ଯଦି ପ୍ରଭୁଙ୍କ ସେବାରୁ ବଞ୍ଚିତ ହେଲା, ତେବେ ଏ ଶରୀର ଥାଇ କି ଲାଭ ? ଏ

ଜୀବନର ବା ମୂଲ୍ୟ କ'ଣ ? ଏ ଜୀବନ ଅପେକ୍ଷା ମୃତ୍ୟୁ ବରଂ ଶ୍ରେୟସ୍କର । କାରଣ ମୃତ୍ୟୁ ପରେ ବରଂ ସେବାର ସେ ସୁଯୋଗ ଅଛି । ସ୍ଥୂଳରେ ନ ହେଲା ନାହିଁ, ସୂକ୍ଷ୍ମରେ ତ ସେ ସୁଯୋଗ ଅଛି । ତାକୁ କାହିଁକି ହାତଛଡ଼ା କରିବେ ଏ ଶରୀରକୁ ଜାବୁଡ଼ି ଧରି ? ତେଣୁ ବାବା ସ୍ଥିର କଲେ ଏ ଶରୀର ତ୍ୟାଗ କରିବେ ।

ଦିନେ ବାବା ଦୋଳବାବାଙ୍କୁ କହିଲେ– ବାବାଜୀ ! ଆଜି ସନ୍ଧ୍ୟା ପୂଜା ଆଳତୀ ସମୟରେ ଟିକେ ଠାକୁରଙ୍କ ପାଖରେ "ଶ୍ରୀକୃଷ୍ଣଙ୍କ ସେବା ବିହୀନେ ଏହି ଶରୀର ମୋର" ଭଜନଟି ଗାଇବୁ ତ ! ହଁ ଭରିଲେ ଦୋଳବାବା । ସେ ବା କାହିଁକି ଭାବନ୍ତେ ଯେ ବାବା ତାଙ୍କରି ମାଧ୍ୟମରେ ଠାକୁରଙ୍କୁ ଜଣାଇବାକୁ ଚାହୁଁଛନ୍ତି ତାଙ୍କର ଅନ୍ତିମ ପ୍ରାର୍ଥନା– ହେ ପ୍ରଭୁ ! ଏ ଶରୀରରେ ମୁଁ ଆଉ ତୁମ ସେବା କରିପାରୁନି, ମୋତେ ନେଇଯାଅ ।

ଆଜିକାଲି ସିନା ଆଉ ବୋଲୁନାହାନ୍ତି, କିନ୍ତୁ ସେତେବେଳେ ଦୋଳବାବା ଖୁବ୍ ସୁନ୍ଦର ଭଜନ ଗାଉଥିଲେ । ଅନ୍ୟ ଦିନ ପରି ସେଦିନ ସନ୍ଧ୍ୟାରେ ମଧ ବାବା ଭଜନ ବୋଲିଲେ, "ଶ୍ରୀକୃଷ୍ଣଙ୍କ ସେବା ବିହୀନେ ଏହି ଶରୀର ମୋର, କି ହୋଇବ ପ୍ରାଣ ସଖୀରେ ଆଉ ଯତ୍ନ ନ କର ।"

ଏ ଭଜନ ନୂଆ ନୁହେଁ । ଅନେକ ବାର ଏଠି ବୋଲା ହୋଇଛି ଭିନ୍ନ ଭିନ୍ନ କଣ୍ଠରେ । କଣ୍ଠର ମାଧୁର୍ଯ୍ୟ ତଥା ଲାଳିତ୍ୟ ହୃଦୟକୁ ସ୍ପର୍ଶ ମଧ କରିଛି । କିନ୍ତୁ ବାବାଙ୍କର ଚିର ପରିଚିତ କଣ୍ଠରେ ଏ ଭଜନ ଆଜି ଏମିତି ନୂଆ ଲାଗୁଛି କାହିଁକି ? ଆଜି କ'ଣ ସତରେ ସିଏ ଗାଉଛନ୍ତି ନା ଆଉ କିଏ ? ଯୌବନର ଆଦ୍ୟପାଦରେ ଶରୀର ପ୍ରତି ଏ ବିରାଗ କାହିଁକି ? ସେବାର ଭରପୂର ସୁଯୋଗ ଥିଲାବେଳେ କିଏ ବା ବଞ୍ଚିତ କଲା ତାଙ୍କୁ ? କାହିଁକି ବା ଏ ଆକୁଳ ପ୍ରାର୍ଥନା ପଞ୍ଚଭୂତର ଶରୀର ବନ୍ଧନରୁ ମୁକ୍ତ ହେବା ପାଇଁ ?

ଏଭଳି ନାନା ପ୍ରଶ୍ନ ମନରେ ଉଙ୍କି ମାରୁଥିବା ବେଳେ କାହାରି କିନ୍ତୁ ଅବକାଶ ନ ଥିଲା ଜାଣିବାକୁ ଯେ ଏ ଅନ୍ତିମ ପ୍ରାର୍ଥନା ଥିଲା ଅନ୍ତରଙ୍ଗ ଲୀଳାସଙ୍ଗୀ କସ୍ତୁରୀବାବାଙ୍କର । ସମବେତ ଭକ୍ତ, ସନ୍ନ୍ୟାସୀ ଓ ମା'ମାନଙ୍କର ହୃଦୟତନ୍ତ୍ରୀକୁ ଝଙ୍କୃତ କରିଦେଲା ସେଦିନର ଏ ଭଜନ । ଭାବସମୁଦ୍ରର ଉଦ୍‌ବେଳନରେ ଉବୁଟୁବୁ ହୋଇ ସେଦିନ ଅଶ୍ରୁ ବିସର୍ଜନ କରିଥିଲେ ସମସ୍ତେ ଯଦିଓ କେହି କିଛି ବୁଝିପାରୁ ନ ଥିଲେ । ଆଉ ସବୁଠାରୁ ବେଶି ଲୁହ ଢାଳିଥିଲେ ବୋଧହୁଏ କସ୍ତୁରୀ ବାବା, ତାଙ୍କ କୋଠରୀରେ ବସି । ଯାହାହେଉ, ଏତେଦିନେ ପ୍ରଭୁ ତାଙ୍କର ପ୍ରାର୍ଥନା ଶୁଣିଛନ୍ତି ।

ଦେହ ଛାଡ଼ିବାକୁ ଅଳ୍ପ କିଛିଦିନ ବାକି ଥାଏ, ରବିବାବାଙ୍କୁ ବହୁତ ଖୋଜିଲେ ବାବା । ସେତେବେଳେ ଶରଣଦ ପତ୍ରିକା କାମ ପାଇଁ ବାବା କଟକ ପିଟିନ ସାହିରେ ରହୁଥାନ୍ତି ।

ସେତେବେଳେ ତ ଫୋନ୍ ନ ଥିଲା । ଯୋଗାଯୋଗର ଏକମାତ୍ର ମାଧ୍ୟମ ଥିଲା ଚିଠି । ବାବା ଦୋଳବାବାଙ୍କୁ କହିଲେ– ବାବାଜୀ ! ତୁ ରବି ବାବାଜୀଙ୍କୁ ଖବର ଦେ, ଶୀଘ୍ର ଆସିବ । ତା' ସାଙ୍ଗରେ ମୋର କଥା ଅଛି ।

ବାବା ଡାକରେ ଚିଠି ପଠାଇଲେ । ହେଲେ ଏ ପଟେ କଣ୍ଠୁରୀ ବାବା ବହୁତ ବ୍ୟସ୍ତ । ଦିନକୁ ତିନି ଚାରିଥର ପଚାରୁଥାଆନ୍ତି ଦୋଳବାବାଙ୍କୁ ।

– କିରେ ବାବାଜୀ ! ରବି ବାବାଜୀ କାହିଁ ଆସିଲାନି ତ ? ତୁ ଖବର ଦେଲୁ କି ନାହିଁ ?

– ମୁଁ ଡାକରେ ଚିଠି ଦେଇଛି ପରା ! ଆପଣ ଏମିତି ବ୍ୟସ୍ତ ହେଲେ ଚଳିବ ? ଚିଠି ପହଞ୍ଚିବାକୁ ଅତି କମ୍‌ରେ ତିନି ଚାରିଦିନ ଲାଗିବ । ତା'ଛଡ଼ା ରବିବାବା ତ ବ୍ୟସ୍ତ ଲୋକ । ଯଦି କଟକରେ ଥାଆନ୍ତି ତେବେ ତ ଚିଠି ପାଇ ସଙ୍ଗେ ସଙ୍ଗେ ଆସିବେ । ଆଉ ଯଦି ବାହାରକୁ କୁଆଡ଼େ ଯାଇଥିବେ, ତେବେ ଫେରିଲା ପରେ ସିନା ଚିଠି ପାଇ ଆସିବେ ।

ଯେଉଁଦିନ ଦେହ ଛାଡ଼ିବେ, ସେଦିନ ଗଣେଶ ଚତୁର୍ଥୀ । ସେଦିନ ବାବା ଦୋଳବାବାଙ୍କୁ ପ୍ରାୟ କୋଡ଼ିଏ ଥର ପଚାରିଛନ୍ତି– କିରେ ବାବାଜୀ ! ରବି ବାବାଜୀ କୁଆଡ଼େ ଗଲା ? କାହିଁ ଆସିଲାନି ତ ? ତୁ ତାକୁ ଖବର ଦେଲୁ କି ନାହିଁ ?

– ହଁ ବାବା ! ମୁଁ ତାଙ୍କ ପାଖକୁ ଚିଠି ଦେଇଛି । ସେ ବୋଧେ ଆଜି କାଲି ଭିତରେ ଆସି ପହଞ୍ଚିବେ କି କ'ଣ ?

– ଆଉ କେତେବେଳେ ଆସିବ ? କ'ଣ ମୁଁ ଦେହ ଛାଡ଼ିଲା ପରେ ଆସିବ ?

– ଆପଣ ଏମିତି କ'ଣ କହୁଛନ୍ତି ? ଆରବର୍ଷ ପରା ଠାକୁରଙ୍କର ହୀରକ ଜୟନ୍ତୀ ପାଳନ ହେବ । ଆପଣ ତା' ପୂର୍ବରୁ କୁଆଡ଼େ ଯିବେ ?

– କାହିଁ ରବି ବାବାଜୀ ତ ଏ ଯାଏଁ ଆସିଲା ନାହିଁ । ତୁ ଗୋଟାଏ କଥା ମନେରଖ । ଯଦି ସେ ଆସିବା ଆଗରୁ ମୁଁ ଦେହ ଛାଡ଼େ, ତେବେ ତା' ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବ; ତରବର ହୋଇ ମୋତେ ସମାଧି ଦେବ ନାହିଁ । ହଁ, ଆଉ ଗୋଟାଏ କଥା । ମୋର ଏ ଲକେଟ୍ ଓ ସୁନାମୁଦି ନେ ତୁ ପିନ୍ଧିବୁ ।

– ନାଇଁ ନାଇଁ ଆପଣ ପିନ୍ଧିଥାଆନ୍ତୁ । ମୋର ସେ ସବୁ କ'ଣ ହେବ ?

– ମୁଁ ଦେହ ଛାଡ଼ିଲା ପରେ ଏମାନେ କ'ଣ ଆଉ ତୋତେ ଦେବେ ? ଏବେଠାରୁ ନେଇ ଯା ।

– ନ ଦେଲେ ନାହିଁ । ମୋର ସେ ସବୁ ଦରକାର ନାହିଁ । ଆପଣ ପିନ୍ଧିଥାଆନ୍ତୁ ।

ସେହିଦିନ ସନ୍ଧ୍ୟା ସୁଦ୍ଧା ରବିବାବା ପହଞ୍ଚିଲେ ଆଶ୍ରମରେ । କିନ୍ତୁ ସେତେବେଳକୁ ବାବା ନିରବ ହୋଇ ଆସିଲେଣି । ତାଙ୍କ କହିବା ଅନୁସାରେ ଦୋଳବାବା ତାଙ୍କୁ କାନ୍ଧକୁ

ଆଉଜାଇ ବସାଇଦେଲେ । ଗୋଡ଼କୁ ଭାଙ୍ଗି ପଦ୍ମାସନ କରାଇଦେଲେ ଏବଂ ବାବା ଧ୍ୟାନସ୍ଥ ହେଲେ । ରବିବାବା ଓ ଦୋଳବାବା ତାଙ୍କ ପାଖରେ ଥାଆନ୍ତି । ସେପଟେ ମା'ଙ୍କ ମନ୍ଦିରରେ ଆଳତୀ ହେଉଥାଏ । ଦୁହେଁ ବାବାଙ୍କ ଦୁଇ ହାତକୁ ଧରି ନାଡ଼ି ଦେଖୁଥାଆନ୍ତି । ମହାସମାଧିର ଲଗ୍ନ ନଇଁ ଆସିଲା । ବାବାଙ୍କ ମୁଖମଣ୍ଡଳ ଏକ ଦିବ୍ୟଜ୍ୟୋତିରେ ଉଦ୍‌ଭାସିତ ହୋଇ ଉଠିଲା । ଅଧରରେ ଫୁଟି ଉଠିଲା ସ୍ମିତହାସ୍ୟ । ମୁଦ୍ରିତ ଚକ୍ଷୁଦ୍ୱୟ କ୍ଷଣକ ପାଇଁ ବିସ୍ଫାରିତ ହୋଇ ତ୍ରିକୂଟରେ ସ୍ଥିର ହୋଇଗଲା । ଆଉ ଠିକ୍ ଏତିକିବେଳେ ଦୁଇ ହାତର ନାଡ଼ି ଠକ୍‌ଠାକ୍ ଛାଡ଼ିଗଲା । ବାବା ଦୁହେଁ ପରସ୍ପରକୁ ଚାହିଁଲେ ମହାପ୍ରୟାଣର ମହାର୍ଘ ଅନୁଭୂତି ନେଇ । ତଡ଼ିତ୍‌ବେଗରେ ସମ୍ବାଦ ପହଞ୍ଚିଗଲା ଆଳତି ମନ୍ଦିରରେ । ତା'ପରେ ବ୍ୟବସ୍ଥା ହେଲା ବାବାଙ୍କ ସମାଧି ପାଇଁ ।

ମୃତ୍ୟୁ ତ ସମସ୍ତଙ୍କ ପାଇଁ ଆସେ । କିନ୍ତୁ ଏଭଳି ମୃତ୍ୟୁ ଯାହାଦ୍ୱାରା ଅମୃତତ୍ୱ ଲାଭ ହୁଏ, ତାହା କେତେ ଜଣଙ୍କ ଭାଗ୍ୟରେ ମିଳେ ???



# ମନକଥା ସିନା ଜାଣ ବନମାଳୀ

ଭଗବାନଙ୍କର ଅନନ୍ତ ଗୁଣାବଳୀ ମଧ୍ୟରୁ ଯେଉଁ କେତୋଟି ଗୁଣ ସର୍ବଜନବିଦିତ, ତା' ମଧ୍ୟରୁ ଗୋଟିଏ ହେଲା, ସେ ଅନ୍ତର୍ଯ୍ୟାମୀ । ସମସ୍ତଙ୍କର ମନକଥା ଜାଣନ୍ତି । ଖାଲି ସେତିକି ନୁହେଁ, ମନ ଜାଣି ଫଳ ମଧ୍ୟ ଦିଅନ୍ତି । ଠାକୁରଙ୍କ ଭାଷାରେ "ମନକଥା ସିନା ଜାଣ ବନମାଳୀ ।" ଆଉ ବିଶେଷ କ୍ଷେତ୍ରରେ ଭକ୍ତ ମନର ଆକୁଳ ପ୍ରାର୍ଥନା ଶୁଣି ହଟାଇ ଦିଅନ୍ତି ଭଗବତ୍ ମାର୍ଗରେ ଥିବା ତା'ର ପ୍ରତିବନ୍ଧକ । ଯେଉଁ ପ୍ରକ୍ରିୟାରେ ସେହି ବିଶେଷ କୃପା ରୂପାୟିତ ହୁଏ, ତାହା ରୂପାନ୍ତରିତ ହୁଏ ଲୀଳାରେ ଏବଂ ଯୋଡ଼ି ହୋଇଯାଏ ତାଙ୍କ ଅନନ୍ତ ଲୀଳା ବିଭୂତିର ଗୋଟିଏ ଗୋଟିଏ ଶୃଙ୍ଖଳ ହୋଇ । ଏଇ ଯେମିତି ଘଟିଥିଲା ଭକ୍ତ ସତ୍ୟବାଦୀଙ୍କ ଜୀବନରେ ।

ସେ ଅନେକ ଦିନ ତଳର କଥା । ଅନେକ ଆଶା ଆକାଂକ୍ଷା ନେଇ ସେ ଧାଇଁ ଆସିଥିଲେ ଆଶ୍ରମକୁ । ସାଙ୍ଗରେ ଥାଆନ୍ତି ପତ୍ନୀ ବସନ୍ତ ଓ ମଝିଆଁ ଝିଅ କନି । କାର୍ତ୍ତିକ ମାସ ମଙ୍ଗଳ ଆଳତୀ ଚାଲିଥାଏ । ପଞ୍ଚକର ଦିନେ ଦୁଇଦିନ ପୂର୍ବରୁ ଆସି ପହଞ୍ଚିଲେ ଆଶ୍ରମରେ । ଖିରୁଳି ମହାବୀରଠାରୁ କରମଳା ଯାଏଁ ଦୀର୍ଘ ଦଶ କିଲୋମିଟରର ପଥଶ୍ରମ ଆହୁରି କଟି ନ ଥାଏ । ଶାନ୍ତି ଧାମର ଶାନ୍ତ ପରିବେଶ ଯଦିଓ କିଛିଟା ପ୍ରଶାନ୍ତି ଆଣିଥାଏ ମନରେ, ତଥାପି ଅବସନ୍ନ ଦେହ ଖୋଜୁଥାଏ ଆଉ ଟିକିଏ ବିଶ୍ରାମ ।

ଶ୍ରମ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ବିନା ଶ୍ରମରେ ଜୀବନଯାତ୍ରା ଚଳିପାରେନା । ପ୍ରଗତିର ରଥ ଅଟକିଯାଏ ଅଧାବାଟରେ । ବିନା କଷ୍ଟରେ କୃଷ୍ଣ ମିଳନ୍ତି ନାହିଁ । ଆଉ କରମଳାଚନ୍ଦ୍ରଙ୍କ ଦର୍ଶନକୁ ଯିଏ ଆସିବ, ସିଏ ପୁଣି କଷ୍ଟ ନ ଭୋଗିବ କେମିତି ? କଥାରେ ନାହିଁ, "ଯିଏ ଆସିବ କରମଳା, ସିଏ ହେବ ଦରମରା ।

ଶ୍ରମ ପରେ ବିଶ୍ରାମ ଏକ ଶାରୀରିକ ତଥା ମାନସିକ ଆବଶ୍ୟକତା, ତେଣିକି ତାହା ଯେଉଁ କ୍ଷେତ୍ରରେ ହେଉନା କାହିଁକି । ଶାନ୍ତିଧାମରେ ମାତ୍ର ଗୋଟିଏ ରାତ୍ରିର ବିଶ୍ରାମ ଯଥେଷ୍ଟ ହୋଇ ନ ଥାଏ ସତ୍ୟବାଦୀଙ୍କ ପାଇଁ ।

କାର୍ତ୍ତିକ ମାସର ଆନନ୍ଦ ଟିକିଏ ନିଆରା । ମାସ ସାରା ଠାକୁରଙ୍କ ମଙ୍ଗଳ ଆଳତୀ ହୁଏ । ରାତି ତିନିଟାରୁ ସମସ୍ତେ ଉଠି ଆଳତୀ ଦର୍ଶନ କରନ୍ତି । ଘଣ୍ଟ, ଘଣ୍ଟା, ମୃଦଙ୍ଗର

ସମ୍ମିଳିତ ଧ୍ୱନି ସହିତ ମିଶିଯାଏ ଭକ୍ତମାନଙ୍କର ହରିବୋଲ ଓ ହୁଳହୁଳି । ପ୍ରଭାତୀ କୀର୍ତ୍ତନ ଓ ଉଦଣ୍ଡ କୀର୍ତ୍ତନରେ ନାଚି ନାଚି ବେଶ୍ ଗଳଦ୍‌ଘର୍ମ ହୋଇ ପଡ଼ନ୍ତି ପ୍ରାୟ ସମସ୍ତେ । ପହିଲି ଶୀତର କୋମଳ ସ୍ପର୍ଶ ସାଙ୍ଗକୁ ସୌରରଶ୍ମିର ଉଦୟକାଳୀନ ଆଲିଙ୍ଗନ ଭକ୍ତ ମନରେ ଆଣିଦିଏ ଏକ ମଧୁର ଅନୁଭବ । ମନରେ ଆଶା ଥାଏ ମଙ୍ଗଳ ଆଳତୀ ତ ଦେଖିବେ, ତା'ଛଡ଼ା ଆଶ୍ରମରେ କିଛିଦିନ ରହି ରାହାସ ପୂର୍ଣ୍ଣିମାର ସ୍ୱତନ୍ତ୍ର କାର୍ଯ୍ୟକ୍ରମ ମଧ ଦେଖିବେ । କିନ୍ତୁ ଏ କ'ଣ ? ବିନା ମେଘରେ ଏ କୁଳିଶପାତ କାହିଁକି ?

ପ୍ରାତଃରୁ ଉଠି ଠାକୁରଙ୍କ ଦର୍ଶନ ସାରି ବାବାମାନଙ୍କ ଦର୍ଶନ କରିବାକୁ ଯାଇ ସତ୍ୟବାଦୀ ଯେତେବେଳେ ରବିବାବାଙ୍କ କୋଠରୀରେ ପହଞ୍ଚନ୍ତି, ହଠାତ୍ ତାଙ୍କ ଆଡୁ ପ୍ରଶ୍ନ ହେଲା – ତୁମ ଘର କେଉଁଠି ?

– ବଳରାମପୁର ତଳଗଡ଼, ଯାଜପୁର ।

– ସାଙ୍ଗରେ ଆଉ କିଏ ସବୁ ଅଛନ୍ତି ?

– ସ୍ତ୍ରୀ ଆଉ ଝିଅ ।

– ତୁମେ କେବେ ଘରକୁ ଫେରୁଛ ?

ହଠାତ୍ ଯେମିତି ଚଡ଼କ ପଡ଼ିଗଲା ମୁଣ୍ଡରେ ବାବାଙ୍କର ଏ ପ୍ରକାର ଅପ୍ରତ୍ୟାଶିତ ପ୍ରଶ୍ନରେ । ଧୂଳିସାତ୍ ଯେମିତି ହୋଇଗଲା ସମସ୍ତ ଆଶା ଓ ଆକାଂକ୍ଷା । କ'ଣ ଉତ୍ତର ଦେବେ ବୋଲି ଭାବି ପାରିଲେନି ସତ୍ୟବାଦୀ । ତା'ଛଡ଼ା ସେ ତ ଆଉ କେହି ନୁହଁନ୍ତି । ସ୍ୱୟଂ ରବିବାବା । ଆଶ୍ରମ ପରିଚାଳନାରେ ସେତେବେଳେ ଯାହାଙ୍କର ଥାଏ ଅଖଣ୍ଡ ପ୍ରଭାବ । ଅପ୍ରତିହତ ନେତୃତ୍ୱ ।

ମାଛିପଡ଼ିଲେ ଯେଉଁଠି ନବଖଣ୍ଡ, ଶିଳ ଶିଳପୁଅ ଯେଉଁଠି ଗଗନରେ ଉଡୁଛନ୍ତି, ସେଠି ଶିମିଳି ତୁଳାକୁ କିଏ ପଚାରେ ? କଥା କହିଲେ କିଏ ବା ଶୁଣିବ ସତ୍ୟବାଦୀଙ୍କର ? ଏମିତି ନାନା ଭାବନା ତଥା ଦୁଶ୍ଚିନ୍ତା ଭିତରେ ବୁଡ଼ି ରହିଥିଲା ବେଳେ ବାବାଙ୍କର ନିର୍ଦ୍ଦେଶ ହେଲା – ତୁମେ ଏବେ ବାହାର । ପିଲାଛୁଆଙ୍କୁ ବି କହିଦିଅ । ବ୍ୟାଗ୍‌ପତ୍ର ଧରି ସେମାନେ ବାହାରି ପଡ଼ନ୍ତୁ । ହଁ, ଶୁଣ । ଆଶ୍ରମର ଗୋଟିଏ ଜରୁରୀ କାମ ଅଛି । ତୁମେ ଗଲାବେଳେ ବାଟରେ ପୁରୀଠାରେ ଜଣେ ଲୋକକୁ ଭେଟିବ । ମୋ'ଠାରୁ ଖଣ୍ଡିଏ ଚିଠି ନେଇ ତାଙ୍କୁ ଦେବ । ହଁ, ଆଉ ଡେରି କରନା । ସଙ୍ଗେ ସଙ୍ଗେ ବାହାରିପଡ଼ ।

ଅବାକ୍ ସତ୍ୟବାଦୀ ଆଉ କିଛି କହିପାରିଲେନି । କିଛି ଭକ୍ତ କହନ୍ତି, ରବିବାବାଙ୍କ ବାହାରଟା ସିନା କଠୋର, ହେଲେ ହୃଦୟଟା ଭାରି କୋମଳ । ସିଏ ଯେମିତି ସ୍ନେହ କରନ୍ତି, ମିଠାକଥା କହନ୍ତି, ହସକୌତୁକ କରନ୍ତି, ଭଲମନ୍ଦ ବୁଝନ୍ତି – ତାହା ଅନ୍ୟତ୍ର କ୍ୱଚିତ୍ ମିଳିଥାଏ ।

ହେଲେ ସତ୍ୟବାଦୀଙ୍କ ପରି ଜଣେ ସାଧାରଣ ଭକ୍ତ ପକ୍ଷରେ ଏସବୁ ଜାଣିବାର ଅବକାଶ କେଉଁଠି ? ବାବା ତ ତାଙ୍କ ପାଇଁ ଏକ ଅପହଞ୍ଚ ଦୂରତ୍ୱ । ତାଙ୍କ ଭିତରର ସ୍ନେହ, କୋମଳତା ବା ହାସ୍ୟକୌତୁକକୁ ସେ ଜାଣିବେ କେମିତି ? ସେ ଯଦିବା କେବେ ପ୍ରଣାମ କରିବାକୁ ଯାଇ ନିକଟସ୍ଥ ହୋଇଛନ୍ତି ତେବେ ଭୟଭକ୍ତିରେ- ପ୍ରେମଭକ୍ତିରେ ନୁହେଁ ।

ତେବେ ଯାହାହେଉ, କାକୁସ୍ଥ ସତ୍ୟବାଦୀ ନୀରବରେ ଆଦେଶ ଶିରୋଧାର୍ଯ୍ୟ କରି ବାହାରି ଆସିଲେ କୋଠରୀ ଭିତରୁ । ଆଖି ଛଳ ଛଳ, ଯେମିତି ଭରା ବାଦଲ ଏଇ ସାଙ୍ଗେ ସାଙ୍ଗେ ବର୍ଷିଯିବ ମନଇଚ୍ଛା । ହେଲେ ବର୍ଷିବ କାହିଁକି ? କିଏ ବା ତା'ର ମୂଲ୍ୟ ବୁଝିବ ?

ଯେଉଁ ଦୁଃଖ ଯନ୍ତ୍ରଣାରେ ସେ ନିଜେ ଜର୍ଜରିତ, ସେ ଯନ୍ତ୍ରଣାକୁ ପୁଣି ଆଉ ଦୁଇଟି ସରଳ ନିରୀହ ପ୍ରାଣରେ ଢାଳି ଦେଇ ତାଙ୍କ ମନ ଗହନରେ ନିଆଁ ଲଗାଇବାର ଦୁଃସାହସ କରିପାରୁ ନ ଥିଲେ ସତ୍ୟବାଦୀ । ସୁଖ ସିନା ବଣ୍ଟାଯାଏ, ଦୁଃଖ କିଏ ବାଣ୍ଟେ ? ସୁଖ ବାଣ୍ଟିଲେ ଦୁନିଆ ହସେ । ସବୁରି ମୁହଁରେ ହସ ଫୁଟେ । ସେ ହସ ପୁଣି ଫେରିଆସେ ନିଜ ପାଖକୁ ଶତଗୁଣ ହୋଇ । ହେଲେ ଦୁଃଖ ସମସ୍ତଙ୍କୁ କନ୍ଦାଏ । ଯନ୍ତ୍ରଣାରେ ଛଟପଟ କରେ । ଯଦି ସମ୍ଭବ ହୋଇଥାନ୍ତା, ତେବେ ଏ ଦୁଃଖବାହକ ସମ୍ବାଦକୁ ସେ ନିଜ ଭିତରେ ବରଂ ହଜମ କରି ଦେଇଥାନ୍ତେ । ନିରୋଳାରେ ବସି ମନଇଚ୍ଛା କାନ୍ଦିଥାନ୍ତେ ଏବଂ ସମସ୍ତ ଲୁହକୁ ସେ ନିଜେ ପିଇଯାଇଥାନ୍ତେ ଛାତିକୁ ପଥର କରି । କିନ୍ତୁ ବାବାଙ୍କ ନିର୍ଦ୍ଦେଶ ଯେ ଅଲଙ୍ଘନୀୟ !

ଏ ଦୁଃସମ୍ବାଦ ଶୁଣିବା ମାତ୍ରେ ମା' ବସନ୍ତ ଢୋ କରି ମୁଣ୍ଡଟା ପିଟି ଦେଲା ଦୋଳବାବାଙ୍କୁ ସାମ୍ନାରେ । ଏତେବେଳଯାଏଁ ଯେଉଁ ଲୁହକୁ ଧୈର୍ଯ୍ୟର ସହିତ ରୋକିଥିଲେ ସତ୍ୟବାଦୀ ସେ ଲୁହ ଏବେ ବନ୍ଧବାଡ଼ ମାନିଲା ନାହିଁ । ବାପା ମା'ଙ୍କର ଏ ଅବସ୍ଥା ଦେଖି ଝିଅ ମଧ ସ୍ଥାଣୁ ପାଲଟିଗଲା । ଶରୀରର ସବୁଠାରୁ ସମ୍ବେଦନଶୀଳ ଅଙ୍ଗ ଭାବରେ ତା'ର ଆଖି ମଧ ଓଦା ହୋଇଗଲା ବାପ ମା'ଙ୍କ ଆଖିରେ ଅଶ୍ରୁର ବନ୍ୟା ଦେଖି, ଯଦିଓ ସେ ବ୍ୟକ୍ତ କରିପାରୁ ନ ଥିଲା ତା'ର ଅବ୍ୟକ୍ତ ଦୁଃଖ ।

ଏ ଲୁହ ଢାଳିବା ଭିତରେ କିନ୍ତୁ ପ୍ରସ୍ତୁତି ଚାଲିଥିଲା ପ୍ରସ୍ଥାନ ପାଇଁ ସମସ୍ତଙ୍କର ଉଭୟ ଶାରୀରିକ ତଥା ମାନସିକ ସ୍ତରରେ । ବିଦାୟର ଅବ୍ୟବହିତ ପୂର୍ବରୁ ତିନୋଟି ସରଳ ନିଷ୍କପଟ ହୃଦୟରେ ଉଠିଥିବା ଉଦ୍‌ବେଳନ କରୁଣାରେ ସିକ୍ତ କରିଦେଲା ଦୋଳବାବାଙ୍କ ହୃଦୟକୁ । କହିଲେ, "ଯିବ ତ ନିଶ୍ଚୟ । ତେବେ ତା' ପୂର୍ବରୁ ଅନ୍ତତଃ ଥରଟିଏ ଠାକୁରଙ୍କ ସମାଧି ମନ୍ଦିରରେ ତୁମର ମନକଥା ଜଣାଇ ଦିଅନା !"

ବାବାଙ୍କ କଥା ମାନି ତିନି ହେଁ ଚାଲିଲେ ସମାଧି ମନ୍ଦିରକୁ । ଲୋଟିଗଲେ ଠାକୁରଙ୍କ ଶ୍ରୀଚରଣ ତଳେ । ପଦଧୌତ କଲେ ଲୋତକ ଜଳରେ । ଅନ୍ତର୍ଯ୍ୟାମୀଙ୍କୁ ମୁହଁ ଖୋଲି ଆଉ କିଛି କହିବାର ଆବଶ୍ୟକତା ନ ଥିଲା । ବାଷ୍ପରୁଦ୍ଧ କଣ୍ଠରେ କେବଳ ଏତିକି ଜଣାଇଲେ– "କେତେ ଆଶା ନେଇ ତୋର ମଙ୍ଗଳ ଆଳତି ଆଉ ରାହାସ ପୂର୍ଣ୍ଣିମା ଦେଖିବାକୁ ଆସିଥିଲୁ । ଏବେ ଫେରି ଯାଉଛୁ । ତୋ'ର ସଦ୍‌ଇଚ୍ଛା ପୂର୍ଣ୍ଣ ହେଉ ପ୍ରଭୁ !"

ଆଳତି ମନ୍ଦିର, ଛତା ଓ ମା' ପୂର୍ଣ୍ଣମାସୀଙ୍କଠାରୁ ବିଦାୟ ନେଇ ନିଜ ନିଜର ବ୍ୟାଗ୍ ଖଣ୍ଡିକ ଆଣି ରାସ୍ତାରେ ଥୋଇବା ପରେ ସତ୍ୟବାଦୀ ଗଲେ ରବିବାବାଙ୍କ ପାଖକୁ । ଚିଠିଖଣ୍ଡିକ ହାତରେ ଧରିବା ପରେ ଆରମ୍ଭ ହେବ ଶିରୁଳି ଯାତ୍ରା । ପଦବ୍ରଜରେ ପୁଣି ଦଶ କିଲୋମିଟର ।

କିନ୍ତୁ ଏ କ'ଣ ? ବାବାଙ୍କର ହଠାତ୍ ଏ କି ପରିବର୍ତ୍ତନ । କହିଲେ, କ'ଣ ଯିବା ପାଇଁ ପ୍ରସ୍ତୁତ ?

– ହଁ ଆଜ୍ଞା । ଆପଣଙ୍କଠାରୁ ଚିଠି ଖଣ୍ଡିକ ନେଲା ପରେ....

– ନା ନା, ଥାଉ । ତୁମେ ଆଉ ଯିବା ଦରକାର ନାହିଁ । ମୁଁ ଅନ୍ୟ ଲୋକ ପଠାଇବାର ବ୍ୟବସ୍ଥା କରୁଛି । ତୁମେ ଯାଅ, ଆନନ୍ଦରେ ରୁହ ।

ଚିଠି ନ ଆଣି ଖାଲି ହାତରେ ଫେରିଥିବାରୁ ମା' ବସନ୍ତ ପଚାରିଲା, "କ'ଣ ହେଲା ? ଚିଠି କାହିଁ ?"

– "ଯିବା ଆମର ବନ୍ଦ ହେଲା । ବାବା ଅନ୍ୟ ଲୋକ ପଠାଇବେ", କହିଲେ ସତ୍ୟବାଦୀ ।

ବ୍ୟାଗ୍ ପୁଣି ଫେରିଗଲା ବସାଘରକୁ । ତିନିହେଁ ପୁଣି ଧାଇଁଲେ ସମାଧି ମନ୍ଦିରକୁ ଆନନ୍ଦାଶ୍ରୁରେ ଆଉ ଥରେ ପାଦ ପ୍ରକ୍ଷାଳନ ପାଇଁ । କୃତଜ୍ଞତା ଜଣାଇବା ପାଇଁ ଠାକୁରଙ୍କୁ ତାଙ୍କରି ଭାଷାରେ–

ସତ୍ୟ ନାରାୟଣ !

ପ୍ରଭୁ ! ଅନ୍ତର୍ଯ୍ୟାମୀ ମନକଥା ଜାଣ ।

× × ×

ଏ ଆଉ ଏକ ଘଟଣା । କରମଳାର ସ୍ୱାସ୍ଥ୍ୟକର୍ମୀ ମା' ଅଞ୍ଜନା ଜୀବନର । ଯାହାଙ୍କୁ ସମସ୍ତେ ଡାକନ୍ତି ଦିଦି । ସଂସାର କ୍ଷେତ୍ରରେ ସାଥୀହରା ହେଲା ପରେ ଏବେ ଠାକୁର ହିଁ ତା' ଜୀବନରେ ଦୁଃଖସୁଖର ଏକମାତ୍ର ସାଥୀ । 'କଳି ଭାଗବତ'ରେ ନିଜର ଠିକଣା ଦେବାକୁ ଯାଇ ଠାକୁରେ ସିନା ଲେଖିଥିଲେ, 'କରମ କ୍ଷେତ୍ରେ କଲି ଆଳା,

ତେଣୁ ନିବାସ କରମଳା । କରରେ ମାଳା ଅଛ ଦେଇ, ଜପୁଛି ଆହେ ଭାବଗ୍ରାହୀ ।' କିନ୍ତୁ ବାସ୍ତବ କ୍ଷେତ୍ରରେ କର୍ମକ୍ଷେତ୍ର କରମଳା ପାଲଟି ଯାଇଛି ମା' ଅଞ୍ଜନାର ନିବାସ ଭୂମି । ସୁଦୂର ଏରସମା ଅଞ୍ଚଳରେ ଥିବା ତାଙ୍କର ନିଜସ୍ୱ ବାସସ୍ଥଳୀ ପ୍ରତି ଆଉ ସେତେଟା ଆକର୍ଷଣ ନାହିଁ, ଯେତେଟା ଅଛି ଠାକୁରଙ୍କର ଲୀଳାଭୂମି ଶାନ୍ତିଧାମ ପ୍ରତି । କର୍ତ୍ତବ୍ୟର ଅନୁରୋଧରେ କେବେ କେମିତି ବାହାରକୁ ଯାଇଥିଲେ ଅନୁପସ୍ଥିତ ରହେ ସିନା, ନ ହେଲେ ପ୍ରତ୍ୟହ ପ୍ରାତଃ ଏବଂ ସନ୍ଧ୍ୟା ଆଳତୀ ଦର୍ଶନ ଏବେ ହୋଇଯାଇଛି ତା'ର ଏକ ଧରାବନ୍ଧା ନିୟମ । ଆଶ୍ରମ ପରିସରରେ ଘର ଖଣ୍ଡିଏ ତୋଳିବା ପରେ ଏବେ ସେ ଆଶ୍ରମର ଅନ୍ତେବାସିନୀ କହିଲେ ଚଳେ । ଗୈରିକ ବସ୍ତ୍ର ପରିହିତା ନ ହେଲେ ବି ସେ ଏକ ପ୍ରକାର ସନ୍ନ୍ୟାସିନୀ ।

ସେ ବର୍ଷ ଚନ୍ଦନ ଯାତ୍ରା ସରିବାକୁ ଆଉ ଦୁଇ ଦିନ ବାକି ଥାଏ । ନିର୍ଦ୍ଦେଶ ଆସିଲା ସ୍ୱାସ୍ଥ୍ୟ ବିଭାଗରୁ । ସାକ୍ଷୀଗୋପାଳ ଡାକ୍ତରଖାନା ପରିସରରେ ହେବାକୁ ଥିବା ଏକ ଟ୍ରେନିଂ କ୍ୟାମ୍ପ (ତାଲିମ ଶିବିର)ରେ ଯୋଗ ଦେବାକୁ ପଡ଼ିବ ଦୀର୍ଘ ଏକୋଇଶି ଦିନ ।

"ଆଉ ଦୁଇଦିନ ପରେ ଭଲା ପଡ଼ି ନ ଥାନ୍ତା ଏ ନିଆଁଲଗା ଟ୍ରେନିଂ । ଥାଇ ଥାଇକି ପଡ଼ିଲା ଭଉଁରୀ ବେଳକୁ ?" – ମନଟା ବ୍ୟସ୍ତ ଲାଗିଲା ମା' ଅଞ୍ଜନାର । କାହିଁ କେତେ ଦୂରରୁ ଭକ୍ତମାନେ ଆସୁଛନ୍ତି ଠାକୁରଙ୍କ ଚନ୍ଦନ ଉତ୍ସବ ଦେଖିବାକୁ । ଯିଏ ଆଗରୁ ଆସି ପାରି ନାହାନ୍ତି, ସେ ସମସ୍ତଙ୍କର ଲକ୍ଷ୍ୟ ଏଇ ଭଉଁରୀ । ଶ୍ରୀକ୍ଷେତ୍ରରେ ମହାପ୍ରଭୁ ଜଗନ୍ନାଥଙ୍କର ଭଉଁରୀ ଯେଉଁଦିନ, ଆଶ୍ରମରେ ଠାକୁରଙ୍କର ମଧ୍ୟ ସେହିଦିନ ଭଉଁରୀ । ବାଜା, ବାଣ, ରୋଷଣୀ ସାଙ୍ଗକୁ ଭକ୍ତମାନଙ୍କର ହରିବୋଲ, ହୁଳହୁଳି ଓ ଜୟଧ୍ୱନିରେ ଆଶ୍ରମ ଫାଟି ପଡ଼ିବ । ଅଥଚ ସେ ନ ଥିବ । ଏ କ'ଣ କମ୍ ଯନ୍ତ୍ରଣାଦାୟକ ?

ଯେତେବେଳେ ତା'ର କରମଳା ବଦଳି ହୋଇ ନ ଥିଲା, ସେତେବେଳ କଥା ନିଆରା । ୨୦୦୩ ମସିହାରେ ଶତବାର୍ଷିକ ଜୟନ୍ତୀ ପାଳନ ପରେ ବି ଆଜି ଯେମିତି ଠାକୁରଙ୍କୁ ଓଡ଼ିଶାର ଶତ ସହସ୍ର ନରନାରୀ ଜାଣି ନାହାନ୍ତି, ସେମିତି ଠାକୁର ତା' ପାଇଁ ମଧ୍ୟ ଥିଲେ ସମ୍ପୂର୍ଣ୍ଣ ଅପରିଚିତ । ସଂସାରର ମିଛ ମାୟା ହିଁ ଥିଲା ସତ୍ୟ ତା' ପାଇଁ, ଯେମିତି ଅନ୍ୟମାନଙ୍କ ପାଇଁ । କିନ୍ତୁ ଆଜି ତ ସେ ହୃଦୟ ବିହାରୀ – ଜୀବନ ସର୍ବସ୍ୱ । ଆଜି କ'ଣ ତାଙ୍କୁ ଛାଡ଼ିହୁଏ ? ଏଡ଼ି ହୁଏ ତାଙ୍କର ଆକର୍ଷଣ ?

ମା' ଅଞ୍ଜନାର ପ୍ରାଣ କାନ୍ଦି ଉଠିଲା । ହେଲେ ଚାକିରୀ ତ କରିଛି, କରିବ କ'ଣ ?

ମନ କଥା ମନେ ମନେ ଜଣାଇ ଦେଇ ଚାଲିଲା ସାକ୍ଷୀଗୋପାଳ । ଆଉ ସେ ଥିଲା ୨୦୦୯ ମେ ମାସ ଚନ୍ଦନ ଯାତ୍ରା ବେଳର କଥା ।

ପ୍ରଥମ ଦିନ ଟ୍ରେନିଂ ବେଳାବେଳି ସରିଗଲା । ଧାଇଁ ଧପଡ଼ି କୌଣସି ପ୍ରକାରେ ଚାଲି ଆସିଲା କରମଳା । ଠାକୁର ଚାପକୁ ଯିବା ପୂର୍ବରୁ ଆସି ଯୋଗ ଦେଲା ଶୋଭାଯାତ୍ରାରେ ।

କିନ୍ତୁ ଭଉଁରୀ ଅର୍ଥାତ୍ ମେ ମାସ ୧୬ ତାରିଖ ଦିନ ଆଉ କୌଣସି ପ୍ରକାର ସୁବିଧା ହେଲା ନାହିଁ । ନା ସନ୍ଧ୍ୟା ପୂର୍ବରୁ ଟ୍ରେନିଂ ସରିଲା, ନା କିଛି ସୁବିଧା ଥିଲା ଯାନବାହନର, ଟ୍ରେନିଂ ସରିଲା ପରେ ଆଶ୍ରମ ଫେରିବାକୁ ।

ଅଗତ୍ୟା ମା' ଅଞ୍ଜନା ରହିଲା ସାକ୍ଷୀଗୋପାଳରେ । ହେଲେ ରହିଲା ସିନା, କେବଳ ପିଣ୍ଡ ରହିଲା ସାକ୍ଷୀଗୋପାଳରେ ଆଉ ପ୍ରାଣ କରମଳାରେ । ଆଖି ଆଗରେ ଭାସି ଉଠିଲା ଠାକୁରଙ୍କ ଚନ୍ଦନଯାତ୍ରାର ଦୃଶ୍ୟ । ଖାଦ୍ୟ ରୁଚିଲା ନାହିଁ । ଅମାନିଆ ଆଖି ଲୁହରେ ଭିଜିଗଲା ପିନ୍ଧା କାନି । ଜଣାଇଲା ଠାକୁରଙ୍କୁ – ପ୍ରଭୁ ! କି ଅପରାଧ କରିଥିଲି ଯେ ମୋତେ ତୁମ ଭଉଁରୀ ଯାତ୍ରା ଦେଖିବାରୁ ବଞ୍ଚିତ କଲ ?

ରାତି ପ୍ରାୟ ବାରଟା ହେବ । ପୁଅ ପପୁ ଆଶ୍ରମରୁ ଫୋନ୍ କଲା । କହିଲା, ମା' ଆଜି ଠାକୁରଙ୍କ ଚାପଡଙ୍ଗା ବୁଡ଼ିଗଲା । ଭଉଁରୀ ହେଲା ନାହିଁ ।

ଶୁଣିଲା ସିନା, କିନ୍ତୁ ଏମିତି ଗୋଟାଏ ଅଘଟଣ ମା' ଅଞ୍ଜନାର ଅଭିମାନ ଭରା ଉଦାସ ପ୍ରାଣରେ ସେଭଳି କିଛି ପ୍ରତିକ୍ରିୟା ସୃଷ୍ଟି କଲା ନାହିଁ ।

ବଡ଼ିଭୋର୍‌ରୁ ପୁଣି ଫୋନ୍ ଆସିଲା ଦୋଳବାବାଙ୍କଠାରୁ । କହିଲେ, ବୁଝିଲୁ ମା' କାଲି ଚାପରେ କ୍ଷମତାଠାରୁ ପ୍ରାୟ ତିରିଶିଜଣ ଭଳି ଅଧିକ ଭକ୍ତ ଚଢ଼ିଯିବାରୁ ଚାପଡଙ୍ଗା ବୁଡ଼ିଗଲା । ଠାକୁର ବି ପାଣିରେ ବୁଡ଼ି ଯାଇଥାନ୍ତେ । ଅଳ୍ପକରେ ରହିଗଲେ । କାଲି ଆଉ ଚାପଖେଳ ହୋଇନି । ଆଜି ଆଉଥରେ ଭଉଁରୀ ହେବ । ଯଦି ପାରୁଛୁ ତେବେ ଆଜି ଆସିବାକୁ ଚେଷ୍ଟା କର ।

କି ଆଶ୍ଚର୍ଯ୍ୟ ! ଆଜି ପୁଣି ଭଉଁରୀ ହେବ ! ସତରେ କ'ଣ ପ୍ରଭୁ ମୋ'ରି ପାଇଁ ଏତେସବୁ ଲୀଳା କରି ଦେଇଗଲ ? ମୁଁ ନ ଦେଖିଲି ନାହିଁ, କ'ଣ ହୋଇଗଲା ସେଇଠୁ ? କାହିଁ କେତେଦୂରରୁ ତୁମର କେତେ ଭକ୍ତ ଆସିଥିବେ । ସେମାନଙ୍କୁ କାହିଁକି ନିରାଶ କଲ ? କ'ଣ ଏଇ ଅଭାଗିନୀ ପାଇଁ ? ନା ନା ପ୍ରଭୁ ! ତୁମେ ଠିକ୍ କଲ ନାହିଁ । ଏ ଦୀନହୀନ ଅକିଞ୍ଚନ ପାଇଁ ଏତେ ବଡ଼ ଉତ୍ସବକୁ ତୁମେ ଭଣ୍ଡୁର କରିଦେଲ କାହିଁକି ? କ'ଣ ମୁଁ କାନ୍ଦିଲି ବୋଲି ? ନା ନା ମୁଁ ଆଉ କାନ୍ଦିବି ନାହିଁ । ମୁଁ ଆଜି ଯିବି । ନିଶ୍ଚୟ ଯିବି ତୋ ଭଉଁରୀକୁ, ଯେଉଁ ଭଉଁରୀ ତୁ ନୂଆ କରି ସୃଷ୍ଟି କରିଛୁ ଖାସ୍ ମୋରି ପାଇଁ । ଆଉ ଯିଏ ଯାହା କହନ୍ତୁ ପଛେ, ମୁଁ କେବେ ବି ମାନିବି ନାହିଁ । ପ୍ରକଟ ବେଳଠାରୁ ଅପ୍ରକଟ ଯାଏଁ ଆଜି ପର୍ଯ୍ୟନ୍ତ ଯାହା କେବେ ବି ଘଟିନି, ତାହା ପୁଣି ଆଜି ଘଟିଲା ?

ଅଭିମାନ ଭାଙ୍ଗିଗଲା ମା' ଅଞ୍ଜନାର । ଲୁଗାକାନିରେ ଲୁହ ପୋଛି ଦେଇ ସେ ଅପେକ୍ଷା କଲା ଅପରାହ୍ନକୁ । ଆଉ ଟ୍ରେନିଂ ସରିଗଲା ପରେ ଧାଇଁ ଆସିଲା କରମଳା ତା' ପ୍ରଭୁଙ୍କୁ ଚାପରେ ଦେଖିବାକୁ ।

ଅନ୍ୟ ସମସ୍ତେ ଗତକାଲି ଅଘଟଣର କାରଣ ଭାବରେ ଅଧିକ ସଂଖ୍ୟାରେ ଭକ୍ତମାନଙ୍କ ଚାପ ଆରୋହଣକୁ ଦାୟୀ କରୁଥିଲା ବେଳେ ମା' ଅଞ୍ଜନା ଦାୟୀ କରୁଥିଲା ନିଜକୁ... ତା'ର ଅମାନିଆ ଲୁହକୁ ।



# ଦୀନଜନ ଗଲେ ଭାସି...

ଭଗବାନଙ୍କର ଅସଂଖ୍ୟ ନାମ ମଧ୍ୟରୁ ଗୋଟିଏ ନାମ ହେଉଛି 'ଦୀନବନ୍ଧୁ' । ସାଧାରଣ ଭାବରେ 'ଦୀନ' ଶବ୍ଦର ଅର୍ଥ ଦରିଦ୍ର । ନିଜର ଖାଦ୍ୟ, ବସ୍ତ୍ର ଓ ବାସଗୃହ ଭଳି ମୌଳିକ ଆବଶ୍ୟକତା ପୂରଣ କରିବାରେ ଯେ ଅକ୍ଷମ, ସେ ଦରିଦ୍ର । ଅଭାବ ଅନଟନ ତା'ର ଚିର ସହଚର । ଅର୍ଥ ଉପାର୍ଜନର ପନ୍ଥା ହୁଏତ ତା'ର ନାହିଁ ବା ଯାହା ଅଛି, ତାହା ତା' ପାଇଁ ପର୍ଯ୍ୟାପ୍ତ ନୁହେଁ । ସେ ହୁଏତ କୌଣସି ସ୍ଥାବର ଅସ୍ଥାବର ସମ୍ପତ୍ତିର ମାଲିକ ନୁହେଁ । ସମାଜରେ ତା'ର ସ୍ଥିତି ଅତ୍ୟନ୍ତ ଦୁର୍ବଳ । ଅନ୍ୟର ଦୟା ଉପରେ ନିର୍ଭର କରି ହୁଏତ ସେ ବଞ୍ଚେ । ଚିରାଫଟା, ସାତସିଆଁ କୋଚଟ ମଇଳା ଖଣ୍ଡିଏ ଲୁଗା ହୁଏତ ତା'ର ପରିଧାନ । ନୁଖୁରା ଅଯତ୍ନ ବର୍ଦ୍ଧିତ କେଶରାଜି, ଅକାଳ ବାର୍ଦ୍ଧକ୍ୟ ଘୋଟି ଆସିଥିବା ଶିରାଳ ଅବୟବ ସାଙ୍ଗକୁ କୋଟରଗତ ନିସ୍ତେଜ ଚକ୍ଷୁ ଯୁଗଳର ଉଦାସ ଚାହାଣି ହୁଏତ ତା' ରୂପଭେକର ଏକ ନିଚ୍ଛକ ପରିକଳ୍ପନା ।

କୁହାଯାଏ ଦାରିଦ୍ର୍ୟଠାରୁ ଦୁଃଖ ନାହିଁ । ଦାରିଦ୍ର୍ୟର କଷାଘାତରେ ବ୍ୟକ୍ତି ତଳିତଳାନ୍ତ ହୋଇଯାଏ । ତା'ର ମନେହୁଏ, ଜୀବନ ସଂଗ୍ରାମରେ ସେ ଯେମିତି ହାରି ହାରି ଯାଉଛି । ତା'ର ବ୍ୟକ୍ତିତ୍ୱ ଯେମିତି ବାଜି ଲାଗି ଯାଉଛି ପ୍ରାଣର ଆକୁତିରେ । କାଳର କରାଳ ଗତିରେ ଆଜିର ରାଜା କାଲି ଦାଣ୍ଡର ଭିକାରୀ ହୋଇଯାଏ । କାରଣ ଯାହା ହେଉନା କାହିଁକି, ଦାରିଦ୍ର୍ୟ ବ୍ୟକ୍ତିର ଅଣ୍ଟା ଭାଙ୍ଗିଦିଏ । ସ୍ୱାଭିମାନ ହୁଏ ଭୂଲୁଣ୍ଠିତ । ସବୁ ଦିଗରୁ ସେ ଯେତେବେଳେ ନିରାଶ ହୁଏ, ସେତେବେଳେ ସେ ଡାକ ପକାଏ ଭଗବାନଙ୍କୁ– ନିରାଶ୍ରୟ ମାଂ' ଜଗଦୀଶ ରକ୍ଷ । ହେ ପ୍ରଭୁ ! ଏ ଦୀନହୀନ ଅକିଞ୍ଚନକୁ ରକ୍ଷାକର । ହେ ଦୀନବନ୍ଧୁ ! ସଂସାର ସାଗରରେ ଏ ଦୀନହୀନ ଯଦି ଭାସିଯାଏ, ତେବେ ତୁମର ମହିମା ଗାନ କରିବାକୁ ଆଉ ଥିବ ବା କିଏ ? ତୁମ ପରା ପ୍ରଭୁ ଥାଉଁ ଥାଉଁ ଏ ଜୀବନ ପୋତ ଯଦି ଅଥଳ ସାଗରରେ ନିଶ୍ଚିହ୍ନ ହୋଇଯାଏ, ତେବେ ତୁମ 'ଦୀନବନ୍ଧୁ' ନାମର ସାର୍ଥକତା ବା କେଉଁଠି ? ଠାକୁରଙ୍କ ଭାଷାରେ– "ଦୀନବନ୍ଧୁ ହେ ! ଦୀନଜନ ଗଲେ ଭାସି, ଗାଇବ କିଏ ସେ ବନ୍ଧୁ ହେ ତବ ମହିମା ରାଶି ?"

ହେଲେ ଆର୍ଥିକ ଦୃଷ୍ଟିରୁ ଯିଏ ଦରିଦ୍ର, କେବଳ ସେ ହିଁ କ'ଣ ଦୀନ ପଦବାଚ୍ୟ ? ଭଗବାନ କ'ଣ କେବଳ ସେହି ଦରିଦ୍ରମାନଙ୍କର ବନ୍ଧୁ ? ଆଉ କାହାରି ନୁହନ୍ତି ? ଆପଦ ବିପଦରେ ସେ କ'ଣ କେବଳ ସେହିମାନଙ୍କ ପାଖରେ ଆସି ବନ୍ଧୁ ଭାବରେ ଛିଡ଼ା ହୁଅନ୍ତି ? ଯଦି ଏହା ସତ୍ୟ, ତେବେ 'ଜଗବନ୍ଧୁ' ବୋଲି ତାଙ୍କର ଆଉ ଯେଉଁ ନାମଟି ସାରା ଜଗତରେ ଖ୍ୟାତ, ତା'ର ସାର୍ଥକତା କେଉଁଠି ? ଜଗତର ବନ୍ଧୁ ରୂପରେ ତା' ହେଲେ ସେ ଉଭା ହୁଅନ୍ତି କେତେବେଳେ ?

ଆସନ୍ତୁ ବିଚାର କରିବା । ଭଗବାନ ସମସ୍ତଙ୍କର ବନ୍ଧୁ । ସାରା ଜଗତର ବନ୍ଧୁ । ସେ ଜଗବନ୍ଧୁ... ସେ ହିଁ ଦୀନବନ୍ଧୁ । ଯିଏ ତାଙ୍କୁ ବନ୍ଧୁ ବୋଲି ଭାବିଛି, ସେ ତା'ର ବନ୍ଧୁ । ଯେ ନିଜକୁ ନିଃସ୍ୱ କରିଦେଇଛି, ତାଙ୍କ ଛଡ଼ା ଆଉ କେହି ନାହିଁ ବୋଲି ଜାଣିଛି, ସେ ତା'ରି ବନ୍ଧୁ । ସଂସାରର ଏ ଯେଉଁ ବନ୍ଧୁ, ଏ ସବୁ ଦେବା ନେବାର ବନ୍ଧୁ । ଦେବା ନେବା ଭିତରେ ଏମାନଙ୍କର ସମ୍ପର୍କ ସୀମାବଦ୍ଧ । ଯଦି କୌଣସି କାରଣରୁ ଦେବାନେବା କମ୍ ହୋଇଯାଏ ବା ବନ୍ଦ ହୋଇଯାଏ, ତେବେ ସମ୍ପର୍କ ମଧ୍ୟ ତୁଟିଯାଏ । ବନ୍ଧୁତାର ଅନ୍ତ ଘଟେ ସେଇଠି । ସଂସାରର ଏ ବନ୍ଧୁତା ସ୍ୱାର୍ଥସର୍ବସ୍ୱ । ସ୍ୱାର୍ଥରେ ସାମାନ୍ୟ ଆଞ୍ଚ ଆସିଲେ ଏ ବନ୍ଧୁତା ଲୋପ ପାଇଯାଏ । କେତେକ କ୍ଷେତ୍ରରେ ବନ୍ଧୁତା ଶତ୍ରୁତାରେ ମଧ୍ୟ ପରିଣତ ହୁଏ । ହେଲେ ଇଏ କି ପ୍ରକାର ବନ୍ଧୁତା ? ବନ୍ଧୁତାର ପରାକାଷ୍ଠା ସେଇଠି ଦେଦୀପ୍ୟମାନ, ଯେଉଁଠି ନିଜ ଜୀବନଠାରୁ ବନ୍ଧୁର ଜୀବନ ଅଧିକ ମୂଲ୍ୟବାନ । ନିଜର ସ୍ୱାର୍ଥ ଅପେକ୍ଷା ବନ୍ଧୁର ସ୍ୱାର୍ଥ ଅଧିକ ସୁରକ୍ଷିତ । ସ୍ୱାର୍ଥପରତା ନୁହେଁ, ସ୍ୱାର୍ଥତ୍ୟାଗ ହିଁ ଯେଉଁଠି ବନ୍ଧୁତାର ପରିମାପକ ।

ସୁତରାଂ 'ଦୀନ' ଶବ୍ଦର ଅର୍ଥ ଏଠି କେବଳ ଦରିଦ୍ର ନୁହେଁ । ସେ ଧନୀ ହେଉ ଅବା ଦରିଦ୍ର ଯାହାର ଦୈନ୍ୟ ଭାବ ଅଛି, ସେ ଦୀନ । ଯିଏ ଜାଣିଛି ଏବଂ ବୁଝିଛି ଯେ ସିଏ ଆସିଛି ଏକା ଏବଂ ଯିବ ମଧ୍ୟ ଏକା । ଆସିଛି ଖାଲି ହାତରେ ଏବଂ ଯିବ ମଧ୍ୟ ଖାଲି ହାତରେ । ଭଗବାନଙ୍କ ଛଡ଼ା ତା' ସାଙ୍ଗରେ ଆଉ କେହି ଆସି ନ ଥିଲେ କି କେହି ସାଙ୍ଗରେ ଯିବେ ନାହିଁ । ସଂସାରରେ ଏ ଯେଉଁ ଧନସମ୍ପଦ ତାକୁ ମିଳିଛି ବା ସିଏ ଅର୍ଜନ କରିଛି, କିଛି ତା'ର ନୁହେଁ । ସବୁ ତାଙ୍କରି । ସବୁ ତାଙ୍କରି ଦାନ । "ଭିଖାରୀ ସାରା ଦୁନିଆ, ଦାତା ଏକ୍ ରାମ୍ ।" ତାଙ୍କରି ଦାନରେ ମିଳିଥିବା ଧନକୁ ନେଇ ସେ ପୁଣି ଗର୍ବ କରିବ କାହିଁକି ? ସେ ଦୀନହୀନ ଅକିଞ୍ଚନ । ତାଙ୍କ ଛଡ଼ା ଏ ଦୁନିଆରେ ତା'ର ଆଉ କେହି ନାହାନ୍ତି । ସେ ହିଁ ତା'ର ଏକମାତ୍ର ବନ୍ଧୁ । ବନ୍ଧୁ କହିଲେ କେବଳ ତାଙ୍କୁ ହିଁ ବୁଝାଏ । ହୃଦୟ ବେଦନା ବୁଝିବାକୁ ତାଙ୍କ ଛଡ଼ା ଆଉ କେହି ନାହାନ୍ତି । ସେ ଜୀବନର ବନ୍ଧୁ... ସେ ପ୍ରାଣବନ୍ଧୁ । ତାଙ୍କ ବିନା ଏ ଜଗତ ଶୂନ୍ୟ ।

ଧନର ଗୋଟାଏ ଗୁଣ ହେଲା ସେ ମନକୁ ଫୁଲେଇ ଦିଏ । ମନରେ ଗର୍ବ ଅହଙ୍କାର ଭର୍ତ୍ତି କରିଦିଏ । କାଁ ଭାଁ ଜଣେ ଅଧେ ସଜ୍ଜନଙ୍କୁ ଛାଡ଼ିଦେଲେ ପ୍ରାୟ ଅଧିକାଂଶ ଧନୀ ଧନଗର୍ବରେ ଇନ୍ଦ୍ରଚନ୍ଦ୍ର ମାନନ୍ତି ନାହିଁ । ଧନବଳରେ ସବୁକିଛି ହାସଲ କରିପାରିବେ ବୋଲି ସେମାନଙ୍କର ବିଶ୍ୱାସ । ଅଭାବରେ ଥିଲାବେଳେ ସେମାନେ ଯେ ଦିନେ ଅନ୍ୟ ପାଖରେ ହାତ ପାତିଥିଲେ, ଏକଥା ଭୁଲି ଯାଆନ୍ତି । ଧନ ଅଛି ଅଥଚ ଅଭିମାନଶୂନ୍ୟ, ଧନ ଅଛି ଅଥଚ ସରଳ, ଧନ ଅଛି ଅଥଚ ମୁଁ ଦୀନହୀନ ଅକିଞ୍ଚନ– ଏପରି ଭାବ ଥିବା ବ୍ୟକ୍ତି ସଂସାରରେ ବିରଳ । ଅନ୍ୟପକ୍ଷରେ ଧନହୀନ ଦରିଦ୍ର ପାଖରେ ଦୈନ୍ୟଭାବ ସୁଲଭ, ସ୍ୱାଭାବିକ । ତୃଣାଦପି ସୁନୀଚେନ ଭାବ ଆସିବାଟା ତା' ପାଖରେ ସହଜ, ଯେମିତି ପୁରୁଷ ଅପେକ୍ଷା ନାରୀ ନେତ୍ରରେ ଅଶ୍ରୁ । ସମ୍ଭବତଃ ସେଇଥିପାଇଁ ସାଧାରଣରେ ଏ ଧାରଣା ବଦ୍ଧମୂଳ ଯେ ଭଗବାନ ଦୀନବନ୍ଧୁ – ଅର୍ଥାତ୍ ଦରିଦ୍ରର ବନ୍ଧୁ ।

ସେ ଯାହାହେଉ, ପ୍ରଭୁ ନିର୍ଭରତା କେମିତି ସମସ୍ତ ଆପଦ ବିପଦରୁ ରକ୍ଷା କରେ, ତା'ର ଗୋଟିଏ ଛୋଟିଆ ଉଦାହରଣ ନିଜ ଅନୁଭୂତିରୁ–

ସଠିକ୍ ସମୟ ମନେ ନାହିଁ । ତେବେ ୧୯୮୭ ରୁ ୧୯୯୯ ମସିହା ଭିତରର କଥା । ସୁନ୍ଦରଗଡ଼ ବିଦ୍ୟାଳୟ ସମୂହ ପରିଦର୍ଶକ (ଏବର ଜିଲ୍ଲା ଶିକ୍ଷା ଅଧିକାରୀ)ଙ୍କ କାର୍ଯ୍ୟାଳୟରେ ମୁଁ ହିସାବ ରକ୍ଷକ (ଆକାଉଣ୍ଟାଣ୍ଟ) ଭାବରେ କାମ କରୁଥାଏ । ରାଜ୍ୟ ସଚିବାଳୟରେ ଏ.ଜି. ଅଡ଼ିଟ୍ ରିପୋର୍ଟ ଏବଂ ତା'ଉପରେ ନିଆଯାଇଥିବା ପଦକ୍ଷେପ ସମ୍ପର୍କୀୟ ଏକ ତ୍ରିକୋଣୀୟ କମିଟିର ସମୀକ୍ଷା ବୈଠକରେ ଯୋଗ ଦେବା ପାଇଁ ଆମ ଅଫିସ୍‌ରୁ ଆମେ ତିନିଜଣ ବାହାରିଲୁ – ଜଣେ ସହକାରୀ ସ୍କୁଲ ପରିଦର୍ଶକ, ଜଣେ ଅଡ଼ିଟର ଆଉ ମୁଁ । ବୈଠକ ଅପରାହ୍ନରେ ସରିଗଲା । ଏବେ ସମସ୍ତେ ସୁନ୍ଦରଗଡ଼ ଫେରିବା କଥା । ମୁଁ କହିଲି, ଆମ ଗାଁ ଏଠୁ ପ୍ରାୟ ନବେ କିଲୋମିଟର ଦୂର । ଗାଁରେ ବାପା ବୋଉ ରହୁଛନ୍ତି । ମୁଁ ଟିକେ ଯାଇ ତାଙ୍କୁ ଦେଖିଆସିବି । ଆପଣମାନେ ବି ମୋ ସାଙ୍ଗରେ ଚାଲନ୍ତୁ, ଆମ ଗାଁ ଦେଖିଆସିବେ । ଏମିତି ସୁଯୋଗ ଆଉ କ'ଣ କେବେ ମିଳିବ ? ଦୁହେଁ ଅମଙ୍ଗ ହେଲେ । ମୁଁ କହିଲି, ଘରେ ରହି ତ ଆପଣମାନେ ଚାକିରୀ କରୁଛନ୍ତି । ପୁଣି ଏତେ ବ୍ୟସ୍ତ କାହିଁକି ? ଦିନେ ଦି ଦିନ କ'ଣ ଘର ଛାଡ଼ି ରହିପାରିବେନି ? ଆମ ପରି ଯଦି ଚାରିଶ / ପାଆଁଶ କିଲୋମିଟର ଦୂରରେ ରହି ଜୀବନସାରା କାମ କରୁଥାନ୍ତେ, ତା'ହେଲେ କେମିତି ହୁଅନ୍ତା ? ଯାହାହେଉ  ବହୁ କଷ୍ଟରେ ସେମାନେ ରାଜି ହେଲେ । ଜଗନ୍ନାଥ ସଡ଼କରେ ବାଲେଶ୍ୱର ଆଡ଼କୁ ଯାଉଥିବା ଗୋଟିଏ ବସ୍‌ରେ ମୁଁ ଭୁବନେଶ୍ୱରଠାରୁ ଚଣ୍ଡିଖୋଲ ପର୍ଯ୍ୟନ୍ତ ତିନିଜଣଙ୍କ ପାଇଁ ଟିକଟ କଲି । ମୋ ମନ ଭାରି ଖୁସି – ଯାହାହେଉ ଏତେଦିନେ ମୋର ଦି'ଜଣ ସହକର୍ମୀ ଆମ ଗାଁକୁ ବୁଲି ବାହାରିଛନ୍ତି ।

କିନ୍ତୁ ମୋର ଏ ଖୁସି ବେଶି ସମୟ ରହି ନ ଥିଲା । କଟକ ବାଦାମବାଡ଼ି ବସ୍‌ଷ୍ଟାଣ୍ଡ ଭିତରେ ଆମ ବସ୍ ଲାଗିଲା ପରେ ହଠାତ୍ ସେ ଦୁଇଜଣଙ୍କ ନଜରରେ ପଡ଼ିଗଲା ସୁନ୍ଦରଗଡ଼ର ସରକାରୀ ବସ୍ । ଏଥର ସେମାନଙ୍କୁ ଆଉ ସମ୍ଭାଳେ କିଏ ? କହିଲେ, ଭାଇ ଦେଖ । ହେଇ ସୁନ୍ଦରଗଡ଼ ବସ୍ ଛିଡ଼ା ହୋଇଛି । ତମେ କିଛି ଖରାପ ଭାବିବ ନାହିଁ । ଆମେ ଯାଉଛୁ ସେଥିରେ ପଳେଇବୁ । ଚାହୁଁ ଚାହୁଁ ଦୁହେଁ ନିଜ ନିଜର ବ୍ୟାଗ୍ ଖଣ୍ଡିକ ଧରି ବସ୍‌ରୁ ଓହ୍ଲାଇ ଗଲେ । ଆଉ ମୁଁ ବୋକା ଭଳି ଚାହିଁ ରହିଥିଲି ସେମାନଙ୍କ ଯିବା ବାଟକୁ ।

ଶୀତଦିନ । ଦିନ ଛୋଟ ହେତୁ ସଞ୍ଜ ସଅଳ ନଇଁ ଆସିଲା । ଚଣ୍ଡିଖୋଲ ଛକରେ ମୁଁ ବସ୍‌ରୁ ଓହ୍ଲାଇଲା ବେଳକୁ ଚାରିଆଡ଼େ ଅନ୍ଧାର । ମୁହଁକୁ ମୁହଁ ଦିଶୁ ନାହିଁ । ସେଇଠୁ ଗାଁ ଆହୁରି ପଚିଶି କିଲୋମିଟର । ସେତେବେଳକୁ ବସ୍ ଟ୍ରେକର ଆଉ କିଛି ନାହିଁ । ଯିବା ପାଇଁ ଏକମାତ୍ର ସାଧନ ହେଉଛି ପାରାଦ୍ୱୀପରୁ ଫେରୁଥିବା ମାଇନିଂ ଟ୍ରକ୍ । ଟ୍ରକ୍‌ରେ ଯାତାୟତ କରିବା ଯଦିଓ ଯାତ୍ରୀମାନଙ୍କ ପକ୍ଷରେ ସ୍ପୃହଣୀୟ ନୁହେଁ, ତଥାପି ଅଗତ୍ୟା ଆମେ ତିନି ଚାରିଜଣ ଲୋକ ଜୀବନ ବିକଳରେ ଚଢ଼ିଗଲୁ ଗୋଟିଏ ଟ୍ରକ୍‌ର କ୍ୟାବିନ୍‌ରେ । ନ ହେଲେ ତା'ପରେ ଯେ ଆଉ ଗାଡ଼ି ମଟର ଆସିବ, ତା'ର କି ଠିକଣା !

ଗାଡ଼ି ଗଡ଼ିବା ସଙ୍ଗେ ସଙ୍ଗେ ଯାତ୍ରାର ନିରାପତ୍ତା ସୁନିଶ୍ଚିତ କରିବା ଲକ୍ଷ୍ୟରେ ମୁଁ ମନେ ମନେ ପାଠ କରିବାକୁ ଆରମ୍ଭ କରିଦେଲି "ଭକ୍ତି କଲ୍ଲୋଳ"ରେ ଠାକୁରେ ଲେଖିଥିବା ଶ୍ରୀ ଗୁରୁ ଗାୟତ୍ରୀ କବଚ, ଯାହା ମୁଁ ଶିଖିଥିଲି ଠାକୁରଙ୍କ ଭକ୍ତ ଶ୍ରୀ ରାଖାଲ ଚନ୍ଦ୍ର ରାୟଙ୍କଠାରୁ ଓ ତା'ର ମହିମା ସମ୍ବନ୍ଧରେ ମଧ ଶୁଣିଥିଲି ତାଙ୍କରିଠାରୁ । ରାୟବାବୁ ପ୍ରତ୍ୟହ ସଞ୍ଜ ସକାଳେ ତାକୁ ପଢ଼ନ୍ତି ଏବଂ ତାହା ତାଙ୍କ ତୁଣ୍ଡରେ ଏକପ୍ରକାର ସିଦ୍ଧମନ୍ତ୍ର ଭଳି କାମ କରେ । ଅନେକ କଠିନ ପରିସ୍ଥିତିରେ ସେ ତା'ର ପ୍ରୟୋଗ କରି ସଫଳତା ପାଇଛନ୍ତି ବୋଲି କହନ୍ତି । ଠାକୁର ମଧ ସେଥିରେ ଲେଖିଛନ୍ତି – "ଏ କବଚ ଗୋଟି ଅମୋଘ ଅସ୍ତ୍ର ସେ, ବିଶୁଦ୍ଧ ମନରେ ଯେହୁ ପଢ଼ିବ ସେ । ବାଞ୍ଛିତ ଫଳଟି ମିଳଇ ତାହାକୁ, ସେ କିମ୍ପାଇ ଭୟ କରିବ କାହାକୁ । କବଚକୁ ପଢ଼ି ସ୍ଥାନକୁ ଛୁଇଁବ, ଅନ୍ଧାର ନିଶିରେ ମିହିର ଉଇଁବ ।"

ଗାଡ଼ି ଚାଲିଥାଏ ଆଉ ମୁଁ କବଚ ପଢୁଥାଏ । ଠିକ୍ ଚଢ଼େଇଧରା ଛକ ପାରିହେଲା ପରେ ଏକ ଅଘଟଣ ଘଟିଲା । ରାସ୍ତାର ଡାହାଣ ପଟରେ ଦୁଇଜଣ ପିଲା ଗୋଟିଏ ସାଇକେଲରେ ଯାଉଥାନ୍ତି । ଆମ ଗାଡ଼ି ଠିକ୍ ତାଙ୍କ ପାଖାପାଖି ପହଞ୍ଚିଲା ବେଳକୁ ହଠାତ୍ ସେମାନେ ବାଁକୁ କାଟି ପୂରା ସାମ୍ନାକୁ ଚାଲି ଆସିଲେ । କିଂକର୍ତ୍ତବ୍ୟ ବିମୂଢ଼ ହୋଇପଡ଼ିଲା ଟ୍ରକ୍ ଚାଳକ । ସେମାନଙ୍କୁ ବଞ୍ଚାଇବାକୁ ଯାଇ ସେ ମଧ ବାଁକୁ କାଟିଲା ଓ ଖୁବ୍ ଜୋର୍‌ରେ ବ୍ରେକ୍ କଷିଲା । ଦ୍ରୁତଗତିରେ ଥିବାରୁ ଗାଡ଼ିର ଚକ ରାସ୍ତାରେ ଏତେ ଜୋର୍‌ରେ ଘଷିହେଲା

ଯେ ସେଥିରୁ ନିଆଁ ବାହାରି ପଡ଼ିଲା ଏବଂ ରାସ୍ତାର ବାଁ ପଟ ଧାରରେ ଯାଇ ଅଟକିଗଲା ଟ୍ରକ୍ । ଆଉ ଟିକିଏ ଆଗକୁ ଯାଇଥିଲେ ହୁଏତ ଗାଡ଼ି ଓଲଟି ପଡ଼ିଥାନ୍ତା ଓ ଆମ୍ଭମାନଙ୍କ ଅବସ୍ଥା କ'ଣ ହୋଇଥାନ୍ତା ତାହା ଅନୁମାନ କରିବା ମୁସ୍କିଲ । କିନ୍ତୁ ଠାକୁରଙ୍କ କୃପାରୁ ସେଭଳି କିଛି ହେଲା ନାହିଁ । ଏକ ନିଶ୍ଚିତ ମୃତ୍ୟୁମୁଖରୁ ଆମ୍ଭେମାନେ ବଞ୍ଚିଗଲୁ କହିଲେ ଚଳେ ।

ଛକ ପାଖରେ ଥିବା ଲୋକେ ଗାଡ଼ି ଚକର ନିଆଁ ଦେଖି ଧାଇଁ ଆସିଲେ । ସେମାନଙ୍କର ଆଶଙ୍କା ଯେ ନିଶ୍ଚିତ ଭାବରେ କିଛି ଗୋଟାଏ ବଡ଼ ଧରଣର ଦୁର୍ଘଟଣା ଘଟିଛି । କିନ୍ତୁ ପାଖକୁ ଆସି ଦେଖିଲେ କାହାରି କିଛି କ୍ଷତି ହୋଇ ନାହିଁ । ସାଇକେଲ ଚଢ଼ାଳି ପିଲା ଦି'ଜଣ ଜୀବନ ବିକଳେ ତାଙ୍କର ଗତି ବଢ଼ାଇ ରାସ୍ତା କଡ଼ର ଧାନ ବିଲ ଭିତରକୁ ପଶି ଯାଇଥିଲେ । ଫଳରେ ସେମାନେ ମଧ୍ୟ ସୁରକ୍ଷିତ ଥିଲେ ।

ଟ୍ରକ୍ କ୍ୟାବିନ୍ ଭିତରେ ବେଶ୍ କିଛି ସମୟ ପାଇଁ ନୀରବତା ବିରାଜମାନ କଲା । ଡ୍ରାଇଭର ଗୋଟାପଣେ ଝାଳରେ ଭିଜି ଯାଇଥିଲା । ନୀରବତା ଭଙ୍ଗ କରି ଡ୍ରାଇଭର ପାଖକୁ ଲାଗି ବସିଥିବା ଯାତ୍ରୀ ଜଣକ କହିଲେ – ଯାହାହେଉ ଧନ୍ୟ କହିବ ଡ୍ରାଇଭରଙ୍କୁ । ତାଙ୍କ ଯୋଗୁଁ ଆଜି ଆମେ ଏକ ନିଶ୍ଚିତ ଦୁର୍ଘଟଣାରୁ ବଞ୍ଚିଗଲେ । କିନ୍ତୁ ଏଥିରେ ପ୍ରତିବାଦ କରି ଡ୍ରାଇଭର କହିଲା – ମୁଁ କ'ଣ କଲି ? ମୋତେ ତ ବୁଦ୍ଧି ବାଟ କିଛି ଦିଶିଲାନି । ଗିଅରଟା କ'ଣ କେମିତି ବଦଳିଗଲା ବୋଲି ସିନା, ନ ହେଲେ ଗାଡ଼ି ନିଶ୍ଚୟ ରାସ୍ତା କଡ଼କୁ ଓଲଟି ପଡ଼ିଥାନ୍ତା ।

ଏସବୁ ତର୍କ ବିତର୍କ ଭିତରେ କିନ୍ତୁ ମୁଁ ଭାବୁଥିଲି ସେଇ ଠାକୁରଙ୍କ କଥା, ଯାହାଙ୍କ ଅଦୃଶ୍ୟ ହସ୍ତ ହିଁ ଗାଡ଼ିକୁ ନିୟନ୍ତ୍ରଣ କରିଥିଲା । ଭାବୁଥିଲି ସେଇ ଗୁରୁ ଗାୟତ୍ରୀ କବଚ କଥା, ଯାହା ଆମୋଘ ଅସ୍ତ୍ର ଭଳି କାମ କରିଥିଲା ସେହି ଅମାରାତ୍ରିରେ । କିନ୍ତୁ ପ୍ରକାଶ କରି ପାରି ନ ଥିଲି ସେମାନଙ୍କ ଆଗରେ । ଆଉ ଯଦି ବି ପ୍ରକାଶ କରିଥାଆନ୍ତି, ତେବେ ସେମାନେ କ'ଣ ବିଶ୍ୱାସ କରିଥା'ନ୍ତେ ? ବରଂ ଟାହୁଲି କରିଥା'ନ୍ତେ ମୋ କଥାକୁ । ଟାହୁଲି କରିଥାନ୍ତେ ମୋ ଠାକୁରଙ୍କୁ, ଯାହା ମୋ ପକ୍ଷରେ ଅସହ୍ୟ ହୋଇଥାନ୍ତା । ତେଣୁ ନୀରବ ରହିବାକୁ ମୁଁ ଶ୍ରେୟସ୍କର ମନେ କଲି । ବାରମ୍ବାର ପ୍ରଣାମ ଜଣାଇଲି ଠାକୁରଙ୍କୁ ତାଙ୍କ ଅହେତୁକୀ କୃପା ପାଇଁ ।

ବିନା ଖବରରେ ପୁଣି ଏମିତି ଏକ ଅସମୟରେ ମୋତେ ଦେଖି ବାପା ବୋଉ ବିସ୍ମିତ ହେଲେ ଏବଂ ରାସ୍ତାରେ ଘଟିଥିବା ଦୁର୍ଘଟଣା କଥା ଶୁଣି ହତବାକ୍ ହୋଇଗଲେ । ଉର୍ଦ୍ଧ୍ୱହସ୍ତ ହୋଇ ଠାକୁରଙ୍କୁ ପ୍ରଣାମ କରୁ କରୁ ବୋଉ ମୁହଁରୁ ସ୍ୱତଃ ବାହାରି ପଡ଼ିଥିଲା, ମୋ ଅରକ୍ଷିତକୁ ଠାକୁରେ ଏଇମିତି ଚକ୍ର ଉହାଡ଼ କରି ରଖିଥାଆନ୍ତୁ ।

ପରଦିନ ଗାଁରେ ମୁଁ ଯାହାକୁ ଭେଟିଥିଲି ସମସ୍ତଙ୍କୁ କେବଳ ସେଇ ଦୁର୍ଘଟଣାର କଥା ହିଁ କହିଥିଲି ଏବଂ ଏକଥା ମଧ୍ୟ କହିବାକୁ ଭୁଲି ନ ଥିଲି ଯେ ଗତରାତ୍ରିର ଦୁର୍ଘଟଣାରେ ଏ ଦୀନହୀନ ଯଦି ଭାସି ଯାଇଥାନ୍ତା, ତେବେ ଆଜି ହୁଏତ ଠାକୁରଙ୍କର ମହିମା ଗାନ କରିବା ପାଇଁ କେହି ନ ଥାନ୍ତେ ।

ଆଚାର୍ଯ୍ୟ ବୈକୁଣ୍ଠ ବାବାଙ୍କ ଭାଷାରେ – ସୁଦର୍ଶନ ଚକ୍ର ଯେଉଁଠି ଜଗିଆ ଅଛି, ସେଠି କାଳଚକ୍ର ପଶିପାରିବ ନାହିଁ । ଯାହା ପ୍ରମାଣିତ ହେଲା ଆମର ଏଇ ଘଟଣାରୁ । ନ ହେଲେ ଏକ ନିଶ୍ଚିତ ଦୁର୍ଘଟଣାରୁ କ'ଣ ଆମେ ବଞ୍ଚି ପାରିଥାନ୍ତୁ, ବିନା କ୍ଷୟକ୍ଷତିରେ ?



# ବିଶ୍ୱବିଧାତା ହେ ତୁମ୍ଭେ...

ଏ ବିଶ୍ୱବ୍ରହ୍ମାଣ୍ଡ ଯାହାର ସର୍ଜନା, ସେହି ସର୍ବଶକ୍ତିମାନ୍ ଭଗବାନଙ୍କ ନିକଟରେ ଅସମ୍ଭବ କ'ଣ ? ସେ ଇଚ୍ଛାମୟ । ତାଙ୍କରି ଇଚ୍ଛାରେ ଏ ଜଗତର ସୃଷ୍ଟି, ପୁଣି ତାଙ୍କରି ଇଚ୍ଛାରେ ପ୍ରଳୟ । ଏ ସୃଷ୍ଟି ଯେମିତି ବିଚିତ୍ର ତା'ଠାରୁ ଢେର ଅଧିକ ବୈଚିତ୍ର୍ୟମୟ ହେଉଛନ୍ତି ସ୍ୱୟଂ ସୃଷ୍ଟିକର୍ତ୍ତା । ତାଙ୍କୁ ଜାଣିବା, ତାଙ୍କର ସୃଷ୍ଟି ରହସ୍ୟ ଭେଦ କରିବା କାହାରି ପକ୍ଷେ ସମ୍ଭବ ନୁହେଁ । ସେ ଯେଉଁଠି ଯେତେ ପରିମାଣରେ ପ୍ରକାଶିତ, ତାଙ୍କୁ ସେତିକି ମାତ୍ର ଜାଣିହୁଏ ବା ବୁଝିହୁଏ । ଯୋଗୀଋଷିମାନେ ଯୁଗ ଯୁଗ ଧରି ତପସ୍ୟା କରୁଛନ୍ତି ସେହି ପରମ ପୁରୁଷଙ୍କୁ ପାଇବା ପାଇଁ । ତାଙ୍କୁ ଜାଣିବା ପାଇଁ । ତଥାପି ତାଙ୍କର ଅନ୍ତ କେହି ପାଇପାରି ନାହାନ୍ତି । ସେ ଯେମିତି ଅନନ୍ତ, ତାଙ୍କର ଲୀଳା ମଧ୍ୟ ସେମିତି ଅନନ୍ତ । ଅମୃତ ମଧ୍ୟରେ ସେ ବିଷକୁ ଅତି ସୁନ୍ଦର ଭାବରେ ରଖି ଦେଇପାରନ୍ତି, ଯେମିତି ତାକୁ କେହି ଜାଣିପାରିବେ ନାହିଁ । ଚନ୍ଦ୍ର କେଡ଼େ ସୁନ୍ଦର । ତା'ର ଜ୍ୟୋତ୍ସ୍ନା, ତା'ର ଶୀତଳତା କାହାକୁ ବା ଆକୃଷ୍ଟ ନ କରେ । ମୁଖର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଗଲାବେଳେ କବିର ଉପମାରେ ପ୍ରଥମେ ସ୍ଥାନ ପାଏ ଚନ୍ଦ୍ର । କିନ୍ତୁ ସେହି ଚନ୍ଦ୍ରରେ ପୁଣି କଳଙ୍କ । କାହିଁକି ? ... କ'ଣ ପାଇଁ? ଚନ୍ଦ୍ରକୁ ନିଷ୍କଳଙ୍କ କରିଥିଲେ କ'ଣ ଚଳି ନ ଥାନ୍ତା ? ସେହିପରି ଆଉ ଏକ ଦୃଷ୍ଟାନ୍ତ ହେଲା ସାଗର । ଦେଖିଲେ ଆଖି ପାଏନା । ଦିଗନ୍ତ ପ୍ରସାରୀ ଜଳରାଶିର ନୀଳିମା ସୂଚାଇଦିଏ ତା'ର ଅନନ୍ତ ବ୍ୟାପ୍ତି ତଥା ଗଭୀରତାକୁ । କିନ୍ତୁ ହାୟ ! ଗର୍ଭରେ ଅଥଳ ଜଳ ଧାରଣ କରିଥିଲେ ବି ସେ କାହାରି ତୃଷା ମେଣ୍ଟାଇ ପାରେନା । କାରଣ ସେ ଜଳ ଲବଣାକ୍ତ । ସାଗରର ବେଳାଭୂମିରେ ଘର କରିଥିବା ଲୋକ ଶୋଷରେ ମରିବା ଭଳି କଥା । ପାଣି ଟୋପାକ ମିଠା କରିଥିଲେ କ'ଣ ହୋଇ ନ ଥାନ୍ତା ?.... ଭଗବାନଙ୍କର ସବୁଠାରୁ ପ୍ରିୟ ପୁଷ୍ପ ହେଲା ପଦ୍ମ । ହସ୍ତରେ ପଦ୍ମ, ପାଦରେ ପଦ୍ମ, ପୁଣି ମୁଖରେ ପଦ୍ମ । ପଦ୍ମ ଶବ୍ଦ ନ ଲାଗିଲେ ତାଙ୍କର କରଚରଣ ବା ଶ୍ରୀମୁଖ କଥା କହି ହୁଏନା । ତା'ର ଲାବଣ୍ୟ, ତା'ର ମନ୍ଦ ମନ୍ଦ ସୁଗନ୍ଧ, ତା'ର ମକରନ୍ଦ କେବଳ ଯେ ଭ୍ରମରକୁ ଆକୃଷ୍ଟ କରେ ବା ଜନମନ ହରଣ କରେ, ସେ କଥା ନୁହେଁ । ସ୍ୱୟଂ ବିଶ୍ୱପତି ମଧ୍ୟ ତା'ର

ପ୍ରେମରେ ବିମୋହିତ । କିନ୍ତୁ ତା'ର ନାଡ଼ କଣ୍ଟକମୟ । ସବୁ ଗୁଣ ଭିତରେ ଟିକିଏ ଖୁଣ ନ ରଖିଲେ ଯେମିତି ତାଙ୍କର ମନ ବୁଝେନା । ହେଲେ ଏକଥା କହିବ କିଏ ? ଇଛାମୟଙ୍କର ଇଚ୍ଛା ଉପରେ ସତରେ କ'ଣ କାହାରି କିଛି କହିବାର ଅଛି ? ନା, ସେ ଅଧିକାର କାହାରି ନାହିଁ । ସେ ବିଶ୍ୱସମ୍ରାଟ-ବିଶ୍ୱନିୟନ୍ତା । ସମଗ୍ର ବିଶ୍ୱ ତାଙ୍କର ଅଧୀନ । ଯଦି କେହି ସେ ପ୍ରକାର ଧୃଷ୍ଟତା କରିବାର ଦୁଃସାହସ କରିପାରେ, ତେବେ ସେ ହେଉଛି ତାଙ୍କର ଭକ୍ତ । ଭକ୍ତ ଭାବରେ ସେ ବନ୍ଧା । ଭକ୍ତ ତାଙ୍କୁ ହସାଏ, ପୁଣି କନ୍ଦାଏ । ଭକ୍ତ ପାଇଁ ସେ ସବୁକିଛି କରିପାରନ୍ତି । ଭକ୍ତ ପାଖରେ ତାଙ୍କର ଅଦେୟ ବୋଲି କିଛି ନାହିଁ । ଭକ୍ତ ପାଖରେ ସେ ନିଜକୁ ଅଜାଡ଼ି ଦିଅନ୍ତି । ତାଙ୍କର ଅବାରିତ କୃପାବାରି ଝରିପଡ଼େ ଭକ୍ତ ପାଇଁ । ଆଉ ସେ କୃପା ଯେଉଁଠି ଝରିପଡ଼େ , ସେଠି ପଙ୍ଗୁ ଗିରି ଲଙ୍ଘନ କରିବାଟା ନିହାତି ସାଧାରଣ କଥା । ଆଜନ୍ମ ମୂକ ବାଚାଳ ପରି କଥା କହିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ନାରିକେଳ ଭିତରେ ଜଳ ରହିଲା ପରି ସେଠି ସବୁକିଛି ସମ୍ଭବ । ଆବଶ୍ୟକତା ଅଛି କେବଳ ଅନନ୍ୟ ଭକ୍ତିର । ସେହିଭଳି ଏକ ଘଟଣା ଭକ୍ତ ସତ୍ୟବାଦୀଙ୍କ ଜୀବନର ।

୧୯୮୬ ମସିହା । ସୁନ୍ଦରଗଡ଼ ଜିଲ୍ଲା ଲହୁଣୀପଡ଼ା ବ୍ଲକ ଅନ୍ତର୍ଗତ ସାହାଜବାହାଲ ସେବାଶ୍ରମରେ ଶିକ୍ଷକ ଭାବରେ ସେ କାମ କରୁଥାଆନ୍ତି । ପିଲାମାନେ ଗାଁରେ ରହନ୍ତି । ସେ ଏକା ରହନ୍ତି ଚାକିରୀ ସ୍ଥାନରେ । ପ୍ରତି ମାସରେ ଦରମା ପାଇଲେ ମନିଅର୍ଡ଼ର ଯୋଗେ ଘରକୁ ଟଙ୍କା ପଠାନ୍ତି ପରିବାରର ଖର୍ଚ୍ଚ ପାଇଁ ।

ଥରେ ମନକୁ ଆସିଲା, ଡାକରେ ଟଙ୍କା ପଠାଇଲେ ଯେତିକି କମିଶନ୍ ପଡୁଛି, ପାଖାପାଖି ସେତିକି ଟଙ୍କାରେ ସେ ତ ମାସକୁ ଥରେ ଟେନ୍‌ସା-କୋଇଡ଼ା-କେନ୍ଦୁଝର-ଯାଜପୁର ରୋଡ଼ ରାସ୍ତା ଦେଇ ଗାଁକୁ ଯାଇପାରନ୍ତେ । ଘରର ଭଲମନ୍ଦ ବୁଝିବା ସଙ୍ଗେ ସଙ୍ଗେ ଦରମା ପଇସା ହାତରେ ନେଇ ଦେଇ ଆସିପାରନ୍ତେ ! ତେଣୁ ସେଇଆ କଲେ ।

ସବୁଦିନେ ବିଦେଶରେ ରହୁଥିବା ହେତୁ ଘରେ ନାନାପ୍ରକାର ସମସ୍ୟା ପ୍ରାୟ ଲାଗି ରହିଥାଏ । ଘରକୁ ଗଲେ କିଛି ନା କିଛି ସମସ୍ୟା ଘେରରେ ସେ ପଡ଼ିଯାଆନ୍ତି । ଦିନେ ଦୁଇଦିନ ପାଇଁ ଯାଇ କେବେ ପାଞ୍ଚଦିନ କେବେ ସାତଦିନ ଅଟକି ଯାଆନ୍ତି ସତ୍ୟବାଦୀ ନିଜର ଅନିଚ୍ଛା ସତ୍ତ୍ୱେ । ଫଳ ହୁଏ ଓଲଟା । ସୁବିଧା ହେବ ଭାବି ଗାଁକୁ ଯାଇଥିଲେ ସିନା, କିନ୍ତୁ ସେଥିପାଇଁ ସେ ପଡ଼ନ୍ତି ଅସୁବିଧାରେ । ବିନା ଛୁଟିରେ ଅନୁପସ୍ଥିତି ପାଇଁ ପ୍ରାୟ ପ୍ରତି ମାସରେ କିଛି ନା କିଛି ଦରମା କଟିଯାଏ । ଯାହା ନିୟମିତ ହୋଇ ନ ପାରିବା ଯୋଗୁଁ ଚାକିରୀ କ୍ଷେତ୍ରରେ ନାନା ସମସ୍ୟା ସୃଷ୍ଟି କରେ ।

ସେତେବେଳେ ଲହୁଣୀପଡ଼ାରେ ବି.ଡ଼ି.ଓ. ଥାଆନ୍ତି ସେକ୍ ଅତାଉଲ୍ଲା ଓ ମଙ୍ଗଳ ସମ୍ପ୍ରସାରଣ ଅଧିକାରୀ ଥାଆନ୍ତି ଶ୍ରୀ ଶ୍ୟାମସୁନ୍ଦର ରାୟ । ଉଭୟ ସତ୍ୟବାଦୀଙ୍କୁ ଭଲ ପାଆନ୍ତି ।

ସେମାନେ ତାଙ୍କର ବ୍ୟକ୍ତିଗତ ସମସ୍ୟା ବିଷୟରେ ଭଣା ଅଧିକେ ଅବଗତ ଥାଆନ୍ତି ଏବଂ ସେଥିପାଇଁ ତାଙ୍କ ପ୍ରତି ସହାନୁଭୂତିଶୀଳ ମଧ ଥାଆନ୍ତି । କିନ୍ତୁ ଯେତେବେଳେ ଦୀର୍ଘଦିନ ଧରି ତାଙ୍କର ସର୍ଭିସ୍ ବହି ନିୟମିତ ହୋଇପାରିଲା ନାହିଁ ଏବଂ ତାଙ୍କର ବାର୍ଷିକ ଦରମାବୃଦ୍ଧି (ଇନ୍‌କ୍ରିମେଣ୍ଟ) ମଧ ସ୍ଥଗିତ ରହିଗଲା, ତାଙ୍କୁ ତାଗିଦ୍ କରିବା ପାଇଁ ଥରେ ସମ୍ପ୍ରସାରଣ ଅଧିକାରୀ ତାଙ୍କର ପୂରା ମାସର ଦରମା ବନ୍ଦ କରିଦେଲେ । ମାସିକ ଉପସ୍ଥାନ ରିପୋର୍ଟ ବି.ଡ଼ି.ଓ.ଙ୍କ ଦସ୍ତଖତ ହୋଇ ଦରମା ବିଲ୍ ପ୍ରସ୍ତୁତି ସକାଶେ ବଣାଇ ଉପଜିଲ୍ଲାପାଳଙ୍କ ଦପ୍ତରକୁ ମଧ ଚାଲିଗଲା । ଗାଁରୁ ଫେରି ସତ୍ୟବାଦୀ ଯେତେବେଳେ ଶୁଣିଲେ ଯେ ତାଙ୍କ ଅନୁପସ୍ଥିତିରେ ଏସ୍. ଆଇ (ଉପ ନିରୀକ୍ଷକ) ସ୍କୁଲକୁ ଆସିଥିଲେ, ସେ ସଙ୍ଗେ ସଙ୍ଗେ ବ୍ଲକ ଅଫିସ୍‌କୁ ଧାଇଁଲେ । ଭେଟିଲେ ସମ୍ପ୍ରସାରଣ ଅଧିକାରୀଙ୍କୁ । ଦୁଃଖ ଜଣାଇଲେ ବିଡ଼ିଓଙ୍କୁ । ଉଭୟ ନିଜ ନିଜର ଅକ୍ଷମତା ପ୍ରକାଶ କରି କହିଲେ, ଏଥର ତ ଯାହା ହେବାର ହେଲାଣି । ଆର ମାସକୁ ଏକାଥରେ ଦୁଇମାସର ଦରମା କରିଦେବା । ବ୍ୟସ୍ତ ହୁଅନା । କଷ୍ଟେ ମଷ୍ଟେ ଏ ମାସଟା ଚଳାଇ ଦିଅ । ତମେ ଟିକେ ଆଗରୁ ଆମକୁ ଜଣାଇଥିଲେ ଏ ଅସୁବିଧା ହୋଇ ନ ଥାନ୍ତା । ନାସ୍ତିବାଣୀ ଶୁଣିଲା ପରେ ସତ୍ୟବାଦୀଙ୍କୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ ।

ବୁଢ଼ୀ ମା'କୁ ମିଶାଇ ଘରେ ଛଅପ୍ରାଣୀ କୁଟୁମ୍ବ । ହେଲେ ରୋଜଗାର କରିବାକୁ ମାତ୍ର ଜଣେ । ଚାକିରୀ ଜାଗାରେ ନିଜେ ଚଳିବେ । ପୁଣି ଘରେ ସେମାନଙ୍କୁ ଚଳାଇବେ ସେଇ ସ୍ୱଳ୍ପ ଦରମା ଭିତରେ । ସେଥିରେ ଦରମା ଯଦି ଆଦୌ ନ ମିଳେ, ତେବେ କେମିତି କ'ଣ ହେବ ଯେ ! ଆଉ ଆଗକୁ ଭାବି ପାରିଲେ ନାହିଁ ସତ୍ୟବାଦୀ ।

ଠାକୁରଙ୍କୁ ଜଣାଇ ଏକମୁହାଁ ହୋଇ ବାହାରିଲେ ବଣାଇଗଡ଼ କିଛି ଗୋଟାଏ ଉପାୟ କରିବାକୁ । ତୁମକେଳା ଘାଟରେ ଡଙ୍ଗାରେ ବସି ବ୍ରାହ୍ମଣୀ ନଦୀ ପାର ହେଉଥାନ୍ତି । ମନେ ମନେ ଠାକୁରଙ୍କୁ ଜଣାଉଥାନ୍ତି – ପ୍ରଭୁ ! ଆଜି ଯଦି ତମେ ଦରମା ମିଳିବାର କିଛି ବ୍ୟବସ୍ଥା ନ କର ତେବେ ଅଫିସ୍‌ରୁ ଫେରିଲା ବେଳେ ଏଇ ଗଭୀର ଗଣ୍ଡରେ ଝାସ ଦେଇ ନିଶ୍ଚୟ ଜୀବନ ହାରିଦେବି । ତେଣିକି ଯାହା ହେବ ତମେ ବୁଝିବ ।

ଉପଜିଲ୍ଲାପାଳଙ୍କ ନିକଟରେ ଜଣେ ଆଦିବାସୀ ଖ୍ରୀଷ୍ଟିଆନ୍ ବ୍ୟକ୍ତି ପେସ୍କାର ଭାବରେ କାମ କରୁଥାନ୍ତି । ତାଙ୍କ ସହିତ ସତ୍ୟବାଦୀଙ୍କର ପୂର୍ବରୁ ପରିଚୟ ଥାଏ । ଡଙ୍ଗାରୁ ଓହ୍ଲାଇ ସିଧା ଛୁଟିଲେ ତାଙ୍କ ବସାଘରକୁ । ଅଫିସ୍ ସମୟ ସେତେବେଳକୁ ଆହୁରି ଘଣ୍ଟାଏ ପାଖାପାଖି ବାକି ଥାଏ । ପହଞ୍ଚିଲା ବେଳକୁ ସେ ବାବୁ ସ୍ନାନ କରୁଥାନ୍ତି । ସତ୍ୟବାଦୀଙ୍କୁ ଏଭଳି ଅସମୟରେ ଦେଖି ପଚାରିଲେ – ଏ ଅବେଳରେ ଆପଣ କୁଆଡ଼େ ମହାନ୍ତିବାବୁ ?

– "ଗୋଟାଏ ଅତି ଜରୁରୀ କାମରେ ଆପଣଙ୍କ ପାଖକୁ ଆସିଛି", ସତ୍ୟବାଦୀ

କହିଲେ । "ଆପଣ ଯଦି ଟିକିଏ ସାହାଯ୍ୟ ନ କରନ୍ତି, ତେବେ ବହୁତ ଅସୁବିଧା ହେଇଯିବ ।"

ସବୁକଥା ଅବଗତ ହେବା ପରେ ସେ ମଧ୍ୟ ତତ୍ପର ହୋଇ ଉଠିଲେ ସତ୍ୟବାଦୀଙ୍କୁ ସାହାଯ୍ୟ କରିବା ପାଇଁ । ସ୍ନାନାନ୍ତେ କିଛି ନ ଖାଇ ଖାଲି ପେଟରେ ସେ ଅଫିସ୍‌କୁ ଆସିଲେ । ଉପଜିଲ୍ଲାପାଳଙ୍କ ଟେବୁଲ ଉପରେ ଥିବା ଡାକ ଫାଇଲ୍‌ରେ ଥିଲା ଲହୁଣୀପଡ଼ା ବ୍ଲକର ମାସିକ ଉପସ୍ଥାନ ରିପୋର୍ଟ ।

ସତ୍ୟବାଦୀ କହିଲେ, "ଦିଅନ୍ତୁ ମୁଁ ସଙ୍ଗେ ସଙ୍ଗେ ଯାଇ ପୂରା ଦରମା ଦେବା ପାଇଁ ବି.ଡ଼ି.ଓ.ଙ୍କଠାରୁ ଲେଖାଇ ଆଣେ ।

ପେସ୍କାର – ଆରେ ଭାଇ ! ଠିକ୍ ଦଶଟା ବେଳେ ଉପଜିଲ୍ଲାପାଳ ଅଫିସ୍ ଆସିବେ । ସେ ଡାକ ଦେଖିଲା ପରେ ବିଲ୍ ତିଆରି ହେବ । ଏତେ କମ୍ ସମୟ ମଧ୍ୟରେ ଆପଣ ଲହୁଣୀପଡ଼ା ପର୍ଯ୍ୟନ୍ତ ସାତ / ଆଠ କିଲୋମିଟର ଯାଇ ବି.ଡ଼ି.ଓ.ଙ୍କଠାରୁ ସଂଶୋଧନ କରାଇ ଏ କାଗଜ ଆଣି ପହଞ୍ଚାଇବେ ବୋଲି କହୁଛନ୍ତି କେମିତି ? ତା' ଛଡ଼ା ମଝିରେ ଅଛି ଡଙ୍ଗା ପାରି । ଦେଖନ୍ତୁ, ଏବେ ଟ୍ରେଜେରୀକୁ ବିଲ୍ ଯିବା ସମୟ ମଧ୍ୟ ଆସିଗଲାଣି । ଯଦି ଟିକିଏ ଏପଟ ସେପଟ ହୋଇଯାଏ ତେବେ ଆପଣଙ୍କ ବ୍ଲକର କାହାରି ବିଲ୍ ଏ ମାସରେ ହୋଇପାରିବ ନାହିଁ । ସେଥିପାଇଁ କିଏ ଦାୟୀ ହେବ ?

ସତ୍ୟବାଦୀ କହିଲେ— ମୁଁ କଥା ଦେଉଛି । କାହାରି କିଛି ଅସୁବିଧା ହେବନାହିଁ । ମୁଁ ସଙ୍ଗେ ସଙ୍ଗେ ଯିବି... ଆଉ ଆସିବି ।

ପେସ୍କାର – ହଉ ହେଲା । ଆପଣ ନେବେ ତ ନେବେ । କିନ୍ତୁ ଟିକିଏ ରୁହନ୍ତୁ । ଆପଣ ନେବା ପୂର୍ବରୁ ମୁଁ ଦେଖେ, ସେଥିରେ ଆଗ କଣ ଲେଖା ହୋଇଛି ।

ସତ୍ୟବାଦୀ – ହଉ ଦେଖନ୍ତୁ । ଖାଲି ଶୀଘ୍ର ଯାଇ ଫେରିବି ବୋଲି ମୁଁ ବ୍ୟସ୍ତ ହେଉଛି ସିନା ! ନ ହେଲେ...

ସତ୍ୟବାଦୀଙ୍କ ଉପସ୍ଥିତିରେ ପେସ୍କାର ବାବୁ ଲେଉଟାଇଲେ ତାଙ୍କର ମାସିକ ଉପସ୍ଥାନ ରିପୋର୍ଟ ଏବଂ ଦେଖିବାକୁ ପାଇଲେ, ତାଙ୍କ ନାଁ ପାଖରେ ପୂର୍ବରୁ ଲେଖାଥିବା "ପୂରା ମାସର ଦରମା ବନ୍ଦ ରହିବ" ଧାଡ଼ିଟି କଟାଯାଇଛି ହାଣ୍ଡିକଳା ଭଳି ଗାଢ଼ କଳା ସ୍ୟାହିରେ । ଆଉ ତା' ସ୍ଥାନରେ ଲେଖାଯାଇଛି ଇଂରାଜୀରେ "ସେ ପୂରାମାସର ଦରମା ପାଇବେ ।"

ଚମକି ପଡ଼ିଲେ ସତ୍ୟବାଦୀ । ବିଶ୍ୱାସ କରିପାରିଲେ ନାହିଁ ନିଜ ଆଖିକୁ । ଏତେ ଅନୁନୟ ବିନୟ ପରେ ବି ସମ୍ପ୍ରସାରଣ ଅଧିକାରୀ ଓ ବି.ଡ଼ି.ଓ. ତ କୌଣସି ପ୍ରକାରେ ସାହାଯ୍ୟ କରିପାରିବେନି ବୋଲି କହିଲେ । ଏହା ପୁଣି ସମ୍ଭବ ହେଲା କିପରି ? ତେବେ

କ'ଣ ଠାକୁରେ ନିଜେ... !!! ହଁ, ହଁ, ଠାକୁରେ ନିଜେ ହିଁ ଏ କାମ କରିଛନ୍ତି । ତାଙ୍କ ପାଖରେ ଅସମ୍ଭବ ପୁଣି ଗୋଟାଏ କ'ଣ ? ସେ ତ ସ୍ୱହସ୍ତରେ ଲେଖିଛନ୍ତି– "ବିଶ୍ୱବିଧାତା ହେ ତୁମ୍ଭେ କି ନ କରି ପାର ହରି ?" ବୁଝିବାକୁ ତାଙ୍କର ଆଉ ବାକି ରହିଲାନି ଯେ ଦରମା ବାବଦରେ କିଛି ବ୍ୟବସ୍ଥା ନ ହେଲେ ଆତ୍ମହତ୍ୟା କରିବାକୁ ସେ ନେଇଥିବା ନିଷ୍ପତ୍ତି ହିଁ ଠାକୁରଙ୍କୁ ବିବଶ କରିଛି ତାଙ୍କର ସମସ୍ୟା ସମାଧାନ କରିବା ପାଇଁ ।

ପେସ୍କାର ବାବୁ କହିଲେ, "କ'ଣ ମହାନ୍ତି ବାବୁ ! ଆପଣଙ୍କ କାମ ତ ହୋଇଯାଇଛି ? ଆଉ ଆପଣ ବ୍ୟସ୍ତ କାହିଁକି ?"

ଫେରିଆସିଲେ ସତ୍ୟବାଦୀ । ଆଖିରେ ଆଖିଏ ଲୁହ ଧରି ଅଫିସ୍‌ରୁ ବାହାରି ଆସିଲା ବେଳେ ଭାବୁଥିଲେ, କୃପାମୟ ପ୍ରଭୁଙ୍କର କି ଅସୀମ କୃପା ତାଙ୍କର ଭକ୍ତମାନଙ୍କ ପାଇଁ ।

ବଣାଇଗଡ଼ରୁ ସେ ସିଧାସଳଖ ଫେରିଲେ ସ୍କୁଲକୁ । ସେ ମାସର ଦରମା ପ୍ରଦାନ ସମୟରେ ସମ୍ପ୍ରସାରଣ ଅଧିକାରୀ ଯେତେବେଳେ ଦେଖିଲେ ସତ୍ୟବାଦୀଙ୍କର ଦରମା ବନ୍ଦ ହେବ କ'ଣ, ପୂରା ଆସିଛି, ସେ ପଚାରିଲେ– କ'ଣ ବି.ଡ଼ି.ଓ.ଙ୍କୁ କହି ପଛରେ ସଂଶୋଧନ କଲ କି ?

ସତ୍ୟବାଦୀ କହିଲେ– ନା ।

କିନ୍ତୁ ସେ ବିଶ୍ୱାସ କଲେନି ସେ କଥା । ସେ ଧରିନେଲେ ସତ୍ୟବାଦୀ ନିଶ୍ଚୟ ବି.ଡ଼ି.ଓ.ଙ୍କୁ କହି ଏହା କରାଇଛନ୍ତି ।

ନୀରବ ରହିଲେ ସତ୍ୟବାଦୀ । କେମିତି ବା ସେ ବୁଝାଇଥାନ୍ତେ ଯେ ଏସବୁ ସେଇ ଲୀଳାମୟ ଠାକୁରଙ୍କ ଅନନ୍ତ ଲୀଳାର ଏକ ଅଂଶ ମାତ୍ର ?



# ଆଉ ଜଣେ ବନ୍ଧୁ ମହାନ୍ତିଙ୍କ କଥା

ସାରା ଜଗତ ଜାଣେ ବନ୍ଧୁ ମହାନ୍ତି ଜଣେ, ଯିଏ ଥିଲେ ମହାପ୍ରଭୁ ଜଗନ୍ନାଥଙ୍କର ପରମ ଭକ୍ତ । ବନ୍ଧୁ ମହାନ୍ତି କହିଲେ କେବଳ ସେଇ ଜଣକୁ ହିଁ ବୁଝାଏ, ଯିଏ ସୁଦୂର ଯାଜପୁରରୁ ଧାଇଁ ଆସିଥିଲେ ଶ୍ରୀକ୍ଷେତ୍ରକୁ ମହାପ୍ରଭୁଙ୍କ ଦର୍ଶନ ପାଇଁ । ପଦବ୍ରଜରେ ସୁଦୀର୍ଘ ପଥର ଯାତ୍ରା ତାଙ୍କୁ କରିଥିଲା ଅବସନ୍ନ । କ୍ଲାନ୍ତ ଶରୀରକୁ ସେ ଲୋଟାଇ ଦେଇଥିଲେ ବଡ଼ଦାଣ୍ଡରେ – ଶରଧାବାଲି ଉପରେ ଖଣ୍ଡିଏ ଗାମୁଛା ପାରି । ମହୋଦଧି ପଟୁ ବହି ଆସୁଥିବା ଶୀତଳ ସମୀରଣର ସ୍ପର୍ଶ ପାଇ ସେ ହେଲେ ନିଦ୍ରାମଗ୍ନ । ଆଉ ରାତି ଅଧରେ ନିଦରୁ ଉଠାଇ ସେଇ ଭୋକିଲା ବନ୍ଧୁଙ୍କୁ ମହାପ୍ରଭୁ ଦେଇ ଯାଇଥିଲେ ଅବଢ଼ା ପ୍ରସାଦ । ସକାଳେ ସୁବର୍ଣ୍ଣ ଥାଳି ଫେରାଇବାକୁ ଯାଇ ଯିଏ ଖାଇଥିଲେ ଗାଳି ଆଉ ମାଡ଼ । ଚୋରି ଅଭିଯୋଗରେ ଯିଏ ଭୋଗିଥିଲେ କାରାବାସ ଏବଂ ଶେଷରେ ମହାପ୍ରଭୁଙ୍କ ସ୍ୱପ୍ନାଦେଶ ଫଳରେ ମୁକ୍ତ ହୋଇଥିଲେ ବନ୍ଧନରୁ ।

ତେବେ ଆଉ ଜଣେ ବନ୍ଧୁ ମହାନ୍ତି ଆସିଲେ କୁଆଡୁ ? ଏକା ମାଆ ପେଟର ଦୁଇ ଯାଆଁଳା ଛୁଆ ଯେଉଁଠି ସମାନ ନୁହନ୍ତି, ଗୋଟିଏ ଗଛର ଦୁଇଟି ପତ୍ର ଯେଉଁଠି ସମାନ ନୁହଁନ୍ତି, ନିତ୍ୟ ନୂତନ ଏ ସୃଷ୍ଟିରେ କାହାରି ଚେହେରା, କଣ୍ଠସ୍ୱର, ଟିପଚିହ୍ନ, ଆଚାର ବ୍ୟବହାର, ଚାଲିଚଳନ, ଦେହର ଗନ୍ଧ ଯେଉଁଠି ଆଉ କାହା ସାଙ୍ଗରେ ମିଶେନା, ସେଠି ପୁଣି ଆଉ ଜଣେ ବନ୍ଧୁ ମହାନ୍ତି... !!! ଅସମ୍ଭବ । ଭଗବାନଙ୍କର ପ୍ରତ୍ୟେକ ସୃଷ୍ଟି ସ୍ୱତନ୍ତ୍ର । ସେଥିପାଇଁ କାହାରିକୁ କାହା ସହିତ ତୁଳନା କରିବା ଅନୁଚିତ । ଯଦି କେହି କରେ ତେବେ ବୁଝିବାକୁ ହେବ ଯେ ଅଜ୍ଞତାବଶତଃ ସେ ସୃଷ୍ଟିକର୍ତ୍ତାଙ୍କୁ ଅସ୍ୱୀକାର କରୁଛି– ସୃଷ୍ଟିର ଅଲଙ୍ଘନୀୟ ନିୟମକୁ ଅସ୍ୱୀକାର କରୁଛି । ହଁ, ଏକଥା ହୋଇପାରେ ଯେ କିଛିଟା ସାଦୃଶ୍ୟ ଓ ସାମଞ୍ଜସ୍ୟ ଥିବା ହେତୁ ଆମେ ଅନେକ ସମୟରେ ଭିନ୍ନ ଏକ ଘଟଣାର ବର୍ଣ୍ଣନା କଲାବେଳେ ପୂର୍ବ ଘଟଣାକୁ ସ୍ମରଣ କରୁ । ଅଧିକ ବୋଧଗମ୍ୟ କରିବା ଲକ୍ଷ୍ୟରେ ନାନାଦି ଉଦାହରଣ ଦେଉ । ତା' ବୋଲି ଘଟଣାର ଛନ୍ଦ ଓ ପ୍ରବାହ ଯେ ଅବିକଳ ଏକାପରି ହେବ, ତାହା ଭାବିବା ଭୁଲ । ସେହି ସୃଷ୍ଟିରୁ ନିମ୍ନୋକ୍ତ ଘଟଣାକୁ ଆଉ ଜଣେ ବନ୍ଧୁ ମହାନ୍ତିଙ୍କ କଥା କହିଲେ ସତ୍ୟର ଅପଳାପ ହେବ ନାହିଁ ।

୧୯୭୬ ଜନ୍ମୋତ୍ସବ ସମୟର ଘଟଣା । ଠାକୁରଙ୍କର ପୁରାତନ ଭକ୍ତ ତଥା ନିଜର ପଡ଼ୋଶୀ କୃପାସିନ୍ଧୁ ନାଥଙ୍କ ସଂସ୍ପର୍ଶରେ ଆସି ଠାକୁରଙ୍କ ପ୍ରତି ଆକର୍ଷିତ ହୋଇଥିବା ରାଉରକେଲା ସାରନଗରୀର ବାସିନ୍ଦା ଶ୍ରୀ ଶରତ ଚନ୍ଦ୍ର ମହାନ୍ତିଙ୍କର ଡୋରି ଲାଗିଲା କରମଳାକୁ । ନାଥବାବୁଙ୍କ ନେତୃତ୍ୱରେ ଯେଉଁ ଛୋଟିଆ ଦଳଟି ସେଥର ରାଉରକେଲାରୁ ଯାତ୍ରାରମ୍ଭ କରିଥିଲା, ସେଥିରେ ଥିଲେ ଚଉଦ କୁଲାଟର ଭକ୍ତ ଶ୍ରୀ ଗଜେନ୍ଦ୍ର ଶର୍ମା, ତାଙ୍କ ଧର୍ମପତ୍ନୀ, ଚାରିବର୍ଷର କୁନି ଝିଅ ମୀନା ଓ ଶରତବାବୁ । ବର୍ତ୍ତମାନ ଯେଉଁଠି ନୂତନ ଆଚାର୍ଯ୍ୟ ଭବନ ଦଣ୍ଡାୟମାନ, ସେତେବେଳେ ସେଇଠି ଥିଲା ଗୋଟିଏ ଛୋଟ ନୂଆଁଣିଆ ଚାଳଘର । ତିନିବଖରା ବିଶିଷ୍ଟ ସେହି ଘରର ଗୋଟିଏ କୋଠରୀ ଥିଲା ମାଧବବାବାଙ୍କ ନିବାସ, ଗୋଟିଏ ଭକ୍ତ ନିବାସ ଏବଂ ଅନ୍ୟଟି ଆଶ୍ରମର ନଡ଼ିଆ ଭଣ୍ଡାର । ସେଇ ଭକ୍ତ ନିବାସ କୋଠରୀଟି ମିଳିଥାଏ ଏମାନଙ୍କୁ ରହିବା ପାଇଁ ।

ଜନ୍ମୋତ୍ସବ ଦିନ ଅପରାହ୍ନରେ ଆଚାର୍ଯ୍ୟ ବୈକୁଣ୍ଠବାବାଙ୍କଠାରୁ ମନ୍ତ୍ରୋପଦେଶ ଗ୍ରହଣ କରି ବିଧିବଦ୍ଧ ଭାବେ ଠାକୁରଙ୍କର ଚରଣାଶ୍ରିତ ହେଲେ ଶରତବାବୁ । ଏ ଯାଏ ସେ କେବଳ ଶୁଣି ଆସିଥିଲେ ଠାକୁରଙ୍କ ଲୀଳାନୁଭୂତି । ଆଉ ଏବେ ଦୀକ୍ଷା ଗ୍ରହଣ କଲାପରେ ନିଜସ୍ୱ ଅନୁଭବ ପାଇଁ ମିଳିଗଲା ଚାବିକାଠି – ପ୍ରବେଶାଧିକାର ।

ଜନ୍ମୋତ୍ସବର ପରଦିନ ମହୋତ୍ସବ । କିନ୍ତୁ ମହୋତ୍ସବ ପଙ୍ଗତ ପର୍ଯ୍ୟନ୍ତ ଅପେକ୍ଷା କରନ୍ତି ନାହିଁ ଅନେକ ଭକ୍ତ । ରାତି ନ ପାହୁଣୁ ଆରମ୍ଭ ହୋଇଯାଏ ପ୍ରତ୍ୟାବର୍ତ୍ତନ । ଦ୍ୱିପ୍ରହର ବେଳକୁ ଆଶ୍ରମ ପ୍ରାୟ ଶୂନ୍‌ଶାନ୍ । ସନ୍ଧ୍ୟାରେ ଭକ୍ତ ଗୋଷ୍ଠୀ ।

ଏଥର କିନ୍ତୁ ମହୋତ୍ସବ ପରେ ପରେ ଆରମ୍ଭ ହୋଇଗଲା ଭୀଷଣ ବର୍ଷା । ସଂଗ୍ରହାଳୟ ସାମନା ଅଗଣା ଯେଉଁଠି ସବୁଥର ଏହି ଗୋଷ୍ଠୀ ଅନୁଷ୍ଠିତ ହୁଏ, ସେ ସ୍ଥାନ ହେଲା କର୍ଦ୍ଦମାକ୍ତ । ତେଣୁ ଗୋଷ୍ଠୀ ହେଲା ମନ୍ଦିର ହଲ୍‌ରେ । ଭଜନ, ପୂଜା ଆଳତି, ପ୍ରବଚନ, ଉଦ୍ଦଣ୍ଡ କୀର୍ତ୍ତନ – କ୍ରମାନ୍ୱୟରେ ସମସ୍ତ କାର୍ଯ୍ୟକ୍ରମ ସରୁ ସରୁ ଅନେକ ରାତି ହୋଇଗଲା । ଗୋଷ୍ଠୀ ପରେ ରାତି ପଙ୍ଗତ ଆହୁରି ଡେରି । ସହଜେ ତ ତିନି ଚାରି ଦିନର କଠିନ ପରିଶ୍ରମ – ଡେରି ହେବାଟା ସ୍ୱାଭାବିକ ।

ସମୟ ଅତିକ୍ରାନ୍ତ – ରାତି ପ୍ରାୟ ବାରଟା ପରେ ହେବ । ଭୀଷଣ ଭୋକରେ ପେଟ ଜଳିଲାଣି । ବର୍ତ୍ତମାନ ଭଳି ଦୋକାନ ବଜାର କିଛି ବି ବିକଳ୍ପ ବ୍ୟବସ୍ଥା ନ ଥାଏ ସେତେବେଳେ ଆଶ୍ରମ ବ୍ୟବସ୍ଥାକୁ ଛାଡ଼ିଦେଲେ । ଯାହାହେଉ ମଠ ଖଞ୍ଜାର ଛୋଟିଆ ଅଗଣାରେ ଭକ୍ତମାନେ ବସିପଡ଼ିଲେ ନିଜ ନିଜ ସୁବିଧାରେ । ରାଉରକେଲାର ଦୁଇ ସଙ୍ଗୀଙ୍କ ସହିତ ଶରତ ବାବୁ ଯେଉଁଠି ପ୍ରଥମେ ବସିଲେ, କେହି ଜଣେ ବାବା ଆସି ତାଙ୍କୁ ସେଠାରୁ ଉଠାଇ ଦେଲେ । କହିଲେ, ତମେ ଏଠି କାହିଁକି ବସିଲ ? ଏଇଟା ପରା ଯିବା ଆସିବା ବାଟ । ତମେ ଯାଅ ସେପଟେ ବସିବ । ବାଧ ହୋଇ ଉଠିଗଲେ ତିନିଭକ୍ତ ।

ଉତ୍ସବ ସମୟ । ଭକ୍ତଙ୍କ ସଂଖ୍ୟା ତୁଳନାରେ ଜାଗାଟି ଛୋଟ । ସେଥିରେ ପୁଣି ଭକ୍ତମାନେ ଧାଡ଼ି ବାନ୍ଧି ବସିଗଲେଣି । ଆଉ ଜାଗା ମିଳିବ ବା କେଉଁଠି ? ଯାହାହେଉ ବହୁ କଷ୍ଟରେ ନିଜ ପାଇଁ ଜାଗା ଖଣ୍ଡିଏ ଖୋଜି ବସିବାକୁ ଯାଉଛନ୍ତି, ଏତିକିବେଳେ ପହଞ୍ଚିଗଲେ ଆଉ ଜଣେ ବାବା । କହିଲେ, ଆଚ୍ଛା ବାବୁ! ତମକୁ ଏଠି ବସିବାକୁ କିଏ କହିଲା ? ଏଠି ବସିଲେ କ'ଣ ଆଉ ପରଷି ହେବ ? ତମେ ସେପାଖକୁ ଯାଅ । ନିର୍ଦ୍ଦିଷ୍ଟ ଏକ ଫାଙ୍କା ଜାଗାକୁ ଅଙ୍ଗୁଳି ନିର୍ଦ୍ଦେଶ କଲେ ବାବା । ଦେହ ମନ କେହି ବି ଚାହୁଁ ନ ଥିଲେ ଉଠିବାକୁ । କିନ୍ତୁ ଦ୍ୱିତୀୟବାର ମଧ ଉଠିବାକୁ ପଡ଼ିଲା ବାଧ୍ୟବାଧକତାରେ । ଭାବିଲେ ଏଥର ବୋଧେ ତାଙ୍କୁ ଆଉ କେହି ଉଠାଇବେନି । କିନ୍ତୁ ଭାବନା ତାଙ୍କର ମିଛ ହୋଇଗଲା । ଖଲିପତ୍ର ଧରି ପ୍ରସାଦକୁ ଅପେକ୍ଷା କରିଛନ୍ତି, ଏତିକିବେଳେ ତାଙ୍କ ପାଖରେ ପହଞ୍ଚିଗଲେ ହାସ୍ୟରସପ୍ରିୟ ସୁରବାବା । ସେ ଭାରି ସ୍ନେହୀ, ସଦା ହସ ହସ ମୁଖମଣ୍ଡଳ, ଖୁବ୍ ଅମାୟିକ ବ୍ୟବହାର, ଭାରି ଥଟ୍ଟମଜା ହୁଅନ୍ତି ଭକ୍ତମାନଙ୍କ ସାଙ୍ଗରେ ।

ତାଙ୍କର ନିଜସ୍ୱ ଶୈଳୀରେ ସେ କହିଲେ – ଉଠ ଉଠ । ଆସି ବସିଗଲେ ଭକତ । ଦିଅ ଦିଅ, ଯାଙ୍କୁ ଆଗେ ପ୍ରସାଦ ଦିଅ । ହଇହୋ ବାବୁ! ତମେ ଏଠି ବସିଲେ କେମିତି ହେବ ? ଖନ୍ଦାଶାଳରୁ ଯୋଉ ପ୍ରସାଦ ଝୁଡ଼ି, ବାଲ୍‌ଟି ଆସିବ, ସେ ସବୁ ପରା ଏଇଠି ରଖାହେବ ପଙ୍ଗତ ପାଇଁ । ଆଉ ତମେ ବସିଗଲେ ସେ ସବୁ ରହିବ କୋଉଠି ?

ଏତିକି କହି ବାବା ଚାଲିଗଲେ । ହେଲେ ଆଦୌ ଭୋକ ସମ୍ଭାଳି ପାରୁ ନ ଥିବା ଶରତ ବାବୁଙ୍କ ମନ ବିଷଣ୍ଣ ହୋଇଗଲା । ସେ ତ ସମ୍ପୂର୍ଣ୍ଣ ନୂଆ – ପ୍ରଥମ କରି ଯାଇଛନ୍ତି ଆଶ୍ରମକୁ – କାହାରିକୁ ଚିହ୍ନି ନାହାନ୍ତି । ପରେ ସିନା ଜାଣିଲେ ସିଏ ସୁରବାବା ବୋଲି । କିନ୍ତୁ ସେତେବେଳେ ସିଏ ଜାଣିବେ ବା କେମିତି ? ତା' ଛଡ଼ା ଭୋକ ତାଙ୍କୁ ଅଜ୍ଞାନ କଲାଣି । ଦୁଇ ଦୁଇଥର ବସିବା ସ୍ଥାନରୁ ଉଠାଇ ଦିଆଯିବା ପରେ ଯେତେବେଳେ ପୁଣି ତୃତୀୟ ଥର ତାଙ୍କୁ ଉଠିବାକୁ କୁହାଗଲା, ସେତେବେଳେ ସେ ଆଉ ନିଜକୁ ସମ୍ଭାଳି ପାରିଲେ ନାହିଁ । ଯେଉଁ କ୍ରୋଧକୁ ଶାନ୍ତ କରିବା ଲକ୍ଷ୍ୟରେ ଦାଦା ପାଣ୍ଡବ ଓ ପତ୍ନୀ ଶାନ୍ତି ତାଙ୍କୁ ଶାନ୍ତିଧାମକୁ ପଠାଇଥିଲେ । ସେଇ କ୍ରୋଧ ଏବେ ତା'ର ଅସଲି ସ୍ୱରୂପ ଦେଖାଇଲା । ଭକ୍ତଭାଇ କୃପାସିନ୍ଧୁ ଓ ଅନ୍ୟମାନଙ୍କଠାରୁ ଆଗରୁ ଶୁଣିଥିଲେ, ଆଶ୍ରମରେ କେହି ଉପାସ ରହନ୍ତି ନାହିଁ । ପଙ୍ଗତକୁ ନ ଯାଇ କେହି ଭକ୍ତ ନିଦରେ ଶୋଇ ପଡ଼ିଥିଲେ ବି ଠାକୁର ତାକୁ ବିଛଣାରୁ ଉଠାଇ ପ୍ରସାଦ ଦିଅନ୍ତି । ହେଲେ ଇଏ କ'ଣ ? ଏଠି ତ ମୁଁ ଓଲଟା କଥା ଦେଖୁଛି । ବିଛଣାରୁ ଉଠାଇ ପ୍ରସାଦ ଦେବେ କ'ଣ, ପ୍ରସାଦ ପାଇବା ପାଇଁ ଖଲି ଧରି ବସିଥିବା ଲୋକକୁ ପଙ୍ଗତରୁ ଉଠାଇ ଦିଆଯାଉଛି । ସେଥିରେ କହିଲେ କ'ଣ ନା ଠାକୁର... ।

"ଛାଡ଼ ହୋ ! ସବୁ ମିଛ କଥା – ଲୋକଙ୍କୁ ଭଣ୍ଡାଇବା ପାଇଁ ଏ ଯେତେସବୁ ମନଗଢ଼ା କାହାଣୀର ରଚନା ।

"ଆଜି ଆଉ ପ୍ରସାଦ ପାଇବାର ନାହିଁ" – କହିଲେ ତ ଖଲିପତ୍ରକୁ ଯେତେ ଟିକି ଟିକି କରାଯାଇପାରେ, ଟିକି ଟିକି କରି ଚିରି ପକାଇଲେ ସେଇଠି, ସମସ୍ତଙ୍କ ସାମନାରେ । ଆଉ ରାଗ ତମ ତମ ହୋଇ ଉଠିଚାଲିଲେ ଶରତବାବୁ । ପଙ୍ଗତରେ ବସିଥିବା ଅନ୍ୟ ଭକ୍ତମାନେ ଚାହିଁ ରହିଥାନ୍ତି ବୋକା ଭଳି । ଦୁଇ ପାଖରେ ବସିଥିବା ଦୁଇ ବନ୍ଧୁଙ୍କର ତାଙ୍କୁ ଶାନ୍ତ କରିବାର ସମସ୍ତ ଚେଷ୍ଟା ବିଫଳ ହେଲା । ନିରୁପାୟ ହୋଇ ଶେଷକୁ ସେମାନେ ମଧ୍ୟ ଉଠିଗଲେ ତାଙ୍କ ପଛେ ପଛେ । ଅଦୂରରେ ବସିଥିବା ଗଜେନ୍ଦ୍ର ବାବୁଙ୍କ ପତ୍ନୀ ଓ ଝିଅ ମଧ୍ୟ ଉଠିଗଲେ ସେମାନଙ୍କ ପଛରେ ପୂର୍ବୋକ୍ତ ବସାଘରକୁ । କାହାରି ମୁହଁରେ ଆଉ ଭାଷା ନ ଥିଲା । ଅଖିଆ ଅପିଆ ଭୋକ ଉପାସରେ ଶୋଇପଡ଼ିଲେ ସମସ୍ତେ । ଦୁଆର ପାଖକୁ ଶୋଇଲେ ଗଜେନ୍ଦ୍ର ବାବୁ । ତାଙ୍କ ପାଖକୁ କୃପାସିନ୍ଧୁ, ଶରତବାବୁ, ଗଜେନ୍ଦ୍ର ବାବୁଙ୍କ ଝିଅ ମୀନା ଓ ଶେଷରେ କାହ୍ନୁ ପାଖକୁ ତା' ମାଆ ।

କଥାରେ ଅଛି – "ଭୋକେ ଓଡ଼ିଆ ନିଦ ଯାଏ ।" ଆଉ ସତକୁ ସତ ସେ ନିଦ କୋଉଠି ଥିଲା କେଜାଣି, ଆଛନ୍ନ କରି ପକାଇଲା ସମସ୍ତଙ୍କୁ । ହେଲେ ଭକ୍ତ ଉପାସରେ ଶୋଇଛି – ଭକ୍ତ ବାନ୍ଧବଙ୍କୁ ନିଦ ହେବ କେମିତି ?

ଅନନ୍ତ ଶୟନରେ ତୂଳିତଳ୍ପ ଶେଯ ସଜାଇ ଦେଇଛି ଭକ୍ତ ପ୍ରଭୁଙ୍କ ପହୁଡ଼ ପାଇଁ । ମଖମଲ କପଡ଼ାର ଗାଲିଚା ଚାଦର – ତା' ଉପରେ ବିଞ୍ଚି ଦେଇଛି କର୍ପୂର ଚୂର୍ଣ୍ଣ, ଗୋଲାପ ପାଖୁଡ଼ା, ମଲ୍ଲୀ ଫୁଲ – ସିଞ୍ଚି ଦେଇଛି ରଜନୀଗନ୍ଧାର ସୁବାସିତ ଅତର । ତକିଆ ପାଖରେ ପାନବଟା, ଟର୍ଚ୍ଚ-ପାଦ ପାଖକୁ ଘୋଡ଼େଇ ହେବା ଚାଦର । ହେଲେ ଆଖିକୁ ତା'ର ଆଜି ନିଦ ନାହିଁ । ଭକ୍ତ ତା'ର ଉପାସରେ ଶୋଇବ, ଆଉ ଏଭଳି ପରିସ୍ଥିତିରେ ସେ କ'ଣ କେବେ ଶୋଇପାରିବ ନିଶ୍ଚିନ୍ତରେ ? ଭକ୍ତ ପରା ତା'ର ପ୍ରାଣ । ଭକ୍ତ ଦେହରେ ପତ୍ରଟିଏ ପଡ଼ିଲେ, ତା' ଦେହରେ ପଥରର ଆଘାତ ଲାଗେ । ଶ୍ରୀକ୍ଷେତ୍ରରେ ଭକ୍ତ ଉପାସରେ ଶୋଇଥିଲା ବୋଲି ତାକୁ ସୁନାଥାଳିରେ ନେଇ ଦେଇ ଆସିଥିଲା ଅବଢ଼ା । ଆଉ କରମଳାରେ.... ??

ସେତେବେଳକୁ ରାତି ପ୍ରାୟ ସାଢ଼େ ତିନିଟା । ନିଘୋଡ଼ ନିଦରେ ଶୋଇ ପଡ଼ିଛନ୍ତି ସମସ୍ତେ । ସମଗ୍ର ଆଶ୍ରମ ପରିସର ନିସ୍ତବ୍ଧ । କବାଟ ଠକ୍‌ଠକ୍ ହେଲା– କେହି ଜଣେ କରାଘାତ କରିବାର ଶବ୍ଦ । ପ୍ରଥମେ ଶୁଣିଲେ କବାଟ ପାଖକୁ ଲାଗି ଶୋଇଥିବା ଗଜେନ୍ଦ୍ର ବାବୁ । ଅଳସ ଉଦାସ ଅବସନ୍ନ ଶରୀର ଚାହୁଁ ନ ଥିଲା ଉଠିବାକୁ । ମୁହଁ କାନ ଘୋଡ଼ିଘାଡ଼ି ହୋଇ ଶୋଇ ପଡ଼ିଲେ । ହେଲେ ଶବ୍ଦ ଯେତେବେଳେ ପୁଣି ହେଲା, ନିଦ ଭାଙ୍ଗିଗଲା

– ଜାଣିଲେ କେହି ଜଣେ ଡାକୁଛନ୍ତି । ଉଠି କବାଟ ଖୋଲି ଦେଖନ୍ତେ ଦ୍ୱାରଦେଶକରେ ଦଣ୍ଡାୟମାନ ଦୀର୍ଘକାୟ ସନ୍ନ୍ୟାସୀ ଜଣେ ବଢ଼ାଇଦେଲେ ପ୍ରସାଦରେ ପରିପୂର୍ଣ୍ଣ ଏକ ଗହିରିଆ କଂସାଥାଳି । କହିଲେ, ତମେ ସବୁ କେହି ପ୍ରସାଦ ପାଇନାହଁ ପରା ! ନିଅ ସମସ୍ତେ ମିଶି ଏହାକୁ ପାଇଦିଅ ।

ଆଶ୍ରମରେ ସେତେବେଳେ ବିଜୁଳି ଆଲୁଅ ନ ଥିଲା । ଚିମିନି ବତୀ, ଲଣ୍ଠନ ଓ ପର୍ବପର୍ବାଣୀ ଉତ୍ସବ ସମୟରେ ପେଟ୍ରୋମାକ୍ସ ଓ ଡେ-ଲାଇଟ୍ ହିଁ ଥିଲା ସେ ସମୟର ଆଲୋକ ବ୍ୟବସ୍ଥା । କିଟିକିଟି ଅନ୍ଧାର ଭିତରେ ଥାଳିଟି ବଢ଼ାଇ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ ସନ୍ନ୍ୟାସୀ... ନିଦ ମଳମଳ ଆଖିରେ ଚିହ୍ନି ହେଉ ନ ଥିଲା ଚେହେରା । ଯାହାହେଉ ଗଜେନ୍ଦ୍ର ବାବୁ ଡାକି ଉଠାଇଲେ ଅନ୍ୟମାନଙ୍କୁ – ଭାଇ ଉଠ ! ବାବା ପ୍ରସାଦ ଆଣି ଦେଇଛନ୍ତି, ସମସ୍ତେ ପାଇବା ।

ଡାକ ଶୁଣି ଉଠିପଡ଼ିଲେ ସମସ୍ତେ । ମାତ୍ର ଶରତ ବାବୁଙ୍କର ନିଦ ଆଉ ଭାଙ୍ଗିଲାନି । ସହଜେ ତ ମୋଟା ଲୋକ । ତା'ଛଡ଼ା ରାଗମିଶା ଭୋକର ନିଦଟା ବେଶି ଗାଢ଼ ଭାବରେ ଘାରିଥିଲା ତାଙ୍କୁ । କୃପାସିନ୍ଧୁ ବାବୁ ଯିଏ ସବୁଠାରୁ ବେଶି ମର୍ମାହତ ହୋଇଥିଲେ ଏ ଘଟଣାରେ, ସିଏ ପ୍ରସାଦ ଦେଖି ଆନନ୍ଦରେ ଅଭିଭୂତ ହୋଇ ପଡ଼ିଲେ । କହିଲେ, ଭାଇ ! ଉଠ, ହେଇ ଦେଖ ଠାକୁରେ ତମ ପାଇଁ ପ୍ରସାଦ ଆଣି ଦେଇଛନ୍ତି ।

"ଠାକୁରେ ପ୍ରସାଦ ଆଣି ଦେଇଛନ୍ତି" କାନରେ ବାଜିବା କ୍ଷଣି ହଠାତ୍ ସମ୍ବିତ୍ ଫେରି ଆସିଲା ଶରତ ବାବୁଙ୍କର । ଧଡ଼ପଡ଼ ହୋଇ ଉଠିବସିଲେ ସିଏ । ନିଦ ଭାଙ୍ଗିଯିବାରୁ ପୁଣି ଆରମ୍ଭ ହୋଇଗଲା ଭୋକର ଜ୍ୱାଳା । ଦେଖିଲେ, ଥାଳିରେ ଉଷୁନା ଅନ୍ନପ୍ରସାଦ, ଗୋଟିଏ ପାଖରେ ଡାଲମା ପ୍ରସାଦ ଓ ଅନ୍ୟ ପାଖରେ ଶାଗଭଜା । କହିଲେ, ଏ ପ୍ରସାଦ ତ ମୋତେ ଏକା ନିଅଣ୍ଟ । ଯାକୁ ସମସ୍ତେ ପାଇବା କେମିତି ? ସମସ୍ତେ ଏକସ୍ୱରରେ କହିଉଠିଲେ, ହଉ ହେଲା । ତମେ ଆଗ ପାଅ, ବଳିଲେ ଆମେ ପାଇବୁ ନ ହେଲେ ନାହିଁ । "ନାଇଁ ନାଇଁ ସେକଥା ହୋଇପାରିବ ନାହିଁ । ତମେ ସମସ୍ତେ ନ ପାଇଲେ ମୁଁ ପାଇବି ନାହିଁ ।" ଏଇଆ କହି ପୁଣି ଶୋଇ ପଡ଼ିବାକୁ ଯାଉଥିଲେ ଶରତବାବୁ ।

"ହଉ ତେବେ ଉଠ ! ଆମେ ସମସ୍ତେ ଏକା ସାଙ୍ଗରେ ବସିବା" – କହିଲେ ସମସ୍ତେ । ଥାଳି ମଝିରେ ରହିଲା – ହାତ ମୁହଁ ଧୋଇ ତାକୁ ବେଢ଼ି ବସିଗଲେ ସମସ୍ତେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଯେଉଁ ପ୍ରସାଦ ତାଙ୍କୁ ଏକା ନିଅଣ୍ଟ ବୋଲି ଶରତବାବୁ କହୁଥିଲେ, ସେଥିରେ ଭୂରି ଭୋଜନ କଲେ ସମସ୍ତେ ଏବଂ ଶେଷକୁ ବଳିପଡ଼ିଲା ପ୍ରାୟ ଏକ ଚତୁର୍ଥାଂଶ । ଅନ୍ୟମାନେ ଶରତ ବାବୁଙ୍କୁ କହିଲେ, ଭାଇ ! ଆମର ପେଟ ପୂରି ଗଲାଣି । ଆଉ ଯାହା ରହିଲା, ତାହା ତୁମର । ପ୍ରତିବାଦ କଲେ ଶରତବାବୁ । କହିଲେ, ନା ନା, ମୁଁ ବି ଆଉ

ପାଇପାରିବି ନାହିଁ – ମୋ' ପେଟ ପୂରିଗଲାଣି । ତା'ପରେ ବଳକା ଅନ୍ନ, ଡାଲମା ଓ ଶାଗକୁ ଏକାଠି ଗୋଳେଇ ଦେଲେ ଶରତବାବୁ । ଚାରିଜଣ ବଡ଼ ମଣିଷଙ୍କ ପାଇଁ ଚାରିଟି ଗୁଳା କରିଦେଲେ । ଆଉ କହିଲେ, ଏବେ ଚାଲ ସମସ୍ତେ ମିଶି ଡାକୁ ପାଇଦେବା । ତାହା ହିଁ ହେଲା । ହାତ ମୁହଁ ଧୋଇଲା ପରେ ଥାଳିକୁ ଧୋଇ ମାଜି ରଖିଦେଲେ ଏବଂ ତା'ପରେ ପୁଣି ଶୋଇଗଲେ ସମସ୍ତେ ।

ସକାଳେ ଥାଳି ଫେରାଇବାର କଥା । ଯାହାକୁ ପଚାରିଲେ, ସମସ୍ତେ କହିଲେ, ଆମେ ତ ଜାଣିନୁ ତମକୁ କିଏ ପ୍ରସାଦ ଦେଇଥିଲା । ରୂପଭେକର ବର୍ଣ୍ଣନାରୁ କିଛି ଠଉରେଇବାର ସମ୍ଭବନା ନ ଥିଲା । ଆଶ୍ରମର ଯେତେ ବଳିଷ୍ଠ ବପୁ ଦୀର୍ଘକାୟ ସନ୍ନ୍ୟାସୀ ଥିଲେ, ସେ ସମସ୍ତଙ୍କୁ ଗୋଟି ଗୋଟି କରି ଭେଟିଲେ । ଥାଳି ଦେଖାଇଲେ । ସମସ୍ତେ କହିଲେ – ନା ଆମେ କେହି ଦେଇନୁ । ଚହଳ ପଡ଼ିଗଲା ଆଶ୍ରମରେ – ତା'ହେଲେ କାଲି ରାତି ଅଧରେ ତାଙ୍କୁ ନିଦରୁ ଉଠାଇ ପ୍ରସାଦ ଦେଲା କିଏ ?

ଶେଷରେ କଥା ଗଲା ଭଣ୍ଡାର ରକ୍ଷକ ପୂଜ୍ୟ କଣ୍ଠୁରୀ ବାବାଙ୍କ ପାଖକୁ । ବାବା ସମାଧି ମନ୍ଦିର ସାମ୍ନାରେ ଛିଡ଼ା ହୋଇଥାନ୍ତି । ସମସ୍ତ ବୃତ୍ତାନ୍ତ ଶୁଣିଲା ପରେ ସେ ତାଙ୍କର ମୋଟା ଚଷମା କାଚ ଦେଇ ଦୁଇ ତିନି ଥର ଆପାଦମସ୍ତକ ନିରୀକ୍ଷଣ କଲେ ଶରତବାବୁଙ୍କୁ । ଏବଂ ତାଙ୍କରି ଆଖିରେ ଆଖି ମିଳାଇ ଛଳଛଳ ବାଷ୍ପାକୁଳ କଣ୍ଠରେ କହି ପକାଇଲେ – ଆରେ କୋଉ ବାବାଜୀର ଗରଜ ପଡ଼ିଛି କିଏ ଖାଇଲା ନ ଖାଇଲା ବୁଝିବା ପାଇଁ ? ସମସ୍ତେ ତ ଯିଏ ଯୁଆଡ଼େ ପେଟେ ଲେଖାଏଁ ଖାଇସାରି ଯାଇ ଘୁଙ୍ଗୁଡ଼ି ମାରୁଛନ୍ତି । ଯା ଯା, ଯାହା ଛୁଆ ସିନା ଉପାସ ଶୋଇଛନ୍ତି, ତା'ର ଚିନ୍ତା । ଆଉ କିଏ କାହିଁକି ଚିନ୍ତା କରିବ ? ଯା, ଥାଳି ନେଇ ଭଣ୍ଡାରରେ ଅର୍ଜୁନ ବାବାଙ୍କୁ ଦେଇଦିଅ ।

ଥାଳି ଭଣ୍ଡାରରେ ନେଇ ଦେବାକୁ ଗଲାବେଳେ ଶରତବାବୁ ଲକ୍ଷ୍ୟ କଲେ, ବାବାଙ୍କ ଚକ୍ଷୁ ଯୁଗଳରୁ ବହିଚାଲିଛି ଆନନ୍ଦାଶ୍ରୁ । ଲୀଳାସଙ୍ଗୀ କଣ୍ଠୁରୀ ବାବାଙ୍କ ଆଖିର ଅଶ୍ରୁ ହିଁ ପ୍ରମାଣ କରୁଥିଲା ଏ ରାତି ଅଧିଆ ବନ୍ଧୁ ଆଉ କେହି ନୁହଁନ୍ତି – ଇଏ ସେଇ ବନ୍ଧୁ ମହାନ୍ତିର ବନ୍ଧୁ । ଇଏ କେବଳ ଯାଜପୁରିଆ ବନ୍ଧୁ ମହାନ୍ତିର ବନ୍ଧୁ ନୁହଁନ୍ତି । ଏଇ କେନ୍ଦ୍ରାପଡ଼ିଆ ଶରତ ମହାନ୍ତିର ବନ୍ଧୁ ... ଇଏ ସାରା ଜଗତର ବନ୍ଧୁ । ଖାଲି ବନ୍ଧୁ ଭାବରେ ତାଙ୍କୁ ସଙ୍ଖୋଳି ପାରିଲେ ହେଲା ।

ଶିରରେ ହାତ ରଖି ଆଶୀର୍ବାଦ କଲେ ବାବା । କହିଲେ, ତୁମେ ବହୁତ ଭାଗ୍ୟବାନ୍ ।

ବାବାଙ୍କ ପାଖରୁ ଫେରି ଶରତ ବାବୁ ଧାଇଁଗଲେ ଆଳତି ମନ୍ଦିରକୁ । ଗଛ କାଟିଲା ପରି କଚାଡ଼ି ହୋଇ ପଡ଼ିଗଲେ ଠାକୁରଙ୍କ ସିଂହାସନ ତଳେ । ଅପରାଧ ବୋଧର ବୋଝରେ

ଅବନତ ମଥା ଗଡ଼ୁଥିଲା ଠାକୁରଙ୍କ ପାଦ ତଳେ । ... ଅମାନିଆ ଅଶ୍ରୁ ବହି ଚାଲିଥିଲା ଅବିରତ ଭାବରେ । ଛୋଟ ଛୁଆଟିଏ ପରି ସେ ଭୋ ଭୋ ରଡ଼ି ଛାଡ଼ିଲେ । ବାରମ୍ବାର କ୍ଷମା ପ୍ରାର୍ଥନା କରି ଶପଥ ନେଲେ ସେଇଠି – ପ୍ରଭୁ! ଜୀବନରେ ଆଉ କେବେ ବି ତୋର କୈବଲ୍ୟ କଣିକାକୁ ମୁଁ ଅବମାନନା କରିବି ନାହିଁ । ପ୍ରସାଦ ମିଳିଲେ ଖୁସି, ନ ମିଳିଲେ ବି ଖୁସି । ହେଲେ ତୋତେ ଆଉ କେବେ ବି କଷ୍ଟ ଦେବିନି ।

ଗଜେନ୍ଦ୍ର ବାବୁ ଓ ତାଙ୍କ ପତ୍ନୀ ଏବେ ପରପାରିରେ । ଘଟଣାର ଏକମାତ୍ର ପ୍ରତ୍ୟକ୍ଷ ସାକ୍ଷୀ କୃପାସିନ୍ଧୁ ବାବୁ ଏବେ ରହୁଛନ୍ତି ତାଙ୍କର ପୈତୃକ ଗ୍ରାମ ଗୁଆଳିରେ । କ'ଣ ଥରେ ବୁଲି ଆସିବା କି ଯାଜପୁରର ଗୁଆଳିରୁ ନା ସାରନଗରୀ, ରାଉରକେଲାରୁ ? ପାଠକେ ! ଯୁଆଡ଼େ ଯାଉଛନ୍ତି ଯାଆନ୍ତୁ । ମୁଁ କିନ୍ତୁ ଚାଲିଲି କରମଳା, ଠାକୁରଙ୍କ ଜନ୍ମୋତ୍ସବକୁ ।



# କେଶବ ଧୃତ ବାମନ ରୂପ...

ବିଦ୍ୟମାନ କାଳରେ ଠାକୁର ଏବଂ କିଛି ଅନ୍ତରଙ୍ଗ ଭକ୍ତଙ୍କ ମଧ୍ୟରେ ପତ୍ରାଳାପ ହେଉଥିଲା । ଜୀବନ ସର୍ବସ୍ୱ ଭାବରେ ତାଙ୍କୁ ଯିଏ କାୟମନୋବାକ୍ୟରେ ଗ୍ରହଣ କରିଥିଲେ, ସେମାନେ ତାଙ୍କ ଜୀବନର କୌଣସି କଥା ଠାକୁରଙ୍କ ପାଖରେ ଗୋପ୍ୟ ରଖୁ ନ ଥିଲେ । ଦୁଃଖସୁଖ, ଭଲମନ୍ଦ, ଆପଦ ବିପଦ ସବୁଥିରେ ସେମାନେ ଆଗରେ ରଖୁଥିଲେ ଠାକୁରଙ୍କୁ । ଠାକୁରଙ୍କୁ ନ ପଚାରିଲେ ସେମାନେ କୌଣସି କାମରେ ହାତ ଦେଉ ନ ଥିଲେ । ଚରାଚର ବିଶ୍ୱର ବାର୍ତ୍ତା ଅଜଣା ନ ଥିଲା ଅନ୍ତର୍ଯ୍ୟାମୀଙ୍କୁ । ତଥାପି ସେମାନେ ସବୁକଥା ତାଙ୍କୁ ଜଣାଉଥିଲେ । ତାଙ୍କରି ଅନୁମତି ନେଇ, ଆଶୀର୍ବାଦ ଭିକ୍ଷା କରି ଶୁଭାରମ୍ଭ କରୁଥିଲେ ଯେ କୌଣସି କାର୍ଯ୍ୟର । ଯେତେବେଳେ ସାକ୍ଷାତ ଦର୍ଶନର ସୁଯୋଗ ନ ଥିଲା, ସେତେବେଳେ ଜଣାଉଥିଲେ ଚିଠିରେ । ଭକ୍ତର ଚିଠିରେ ଥିଲା ସମର୍ପଣର ଭାବ । ଆଉ ଠାକୁରଙ୍କ ଚିଠିରେ ଥିଲା ସରଳ ସମାଧାନର ସୂତ୍ର । ରାଶି ରାଶି ଆଶିଷର ବାରିପାତ । ଗହନ ଧର୍ମତତ୍ତ୍ୱର ସରଳ ବ୍ୟାଖ୍ୟା ।

ଥରେ ଜଣେ ଭକ୍ତ ଶ୍ରଦ୍ଧାରେ ଠାକୁରଙ୍କ ପାଇଁ ଗୋଟିଏ କାମିଜ୍ ସିଲେଇ କରିବା ଲକ୍ଷ୍ୟରେ ତାଙ୍କର ମାପ ପଠାଇବାକୁ ନିବେଦନ କରିଥିଲେ । ଚିଠିର ଉତ୍ତରରେ ଠାକୁର ଲେଖିଲେ – ଅମାପର ମାପ ନାହିଁ । ଚିଠି ପାଇ ସରମି ଗଲେ ଭକ୍ତ । କି ନିର୍ବୋଧ ସତରେ ସିଏ ? କାହାର ବା ସିଏ ମାପ ମାଗୁଛନ୍ତି ? ଅମାପକୁ ମାପିବା କ'ଣ ସତରେ ସମ୍ଭବ ? ତା'ଛଡ଼ା କେଉଁ ଦିଗରୁ ତାଙ୍କୁ ମାପିବ ? ସେ ମାପିବା ଲୋକଟି କିଏ ? ସିଏ କ'ଣ ତା' ସୃଷ୍ଟିର ଊର୍ଦ୍ଧ୍ୱରେ । ଆକାର ନାହିଁ ବୋଲି ତ ସିଏ ନିରାକାର । ଆଦି ଅନ୍ତ ନାହିଁ ବୋଲି ତ ସିଏ ଅନାଦି...ଅନନ୍ତ । ତା' କଥା ବର୍ଣ୍ଣନା କରିହେବ ନାହିଁ ବୋଲି ତ ସିଏ ଅବର୍ଣ୍ଣ । ତା' ବିଷୟରେ ଲେଖି ହେବ ନାହିଁ ବୋଲି ତ ସିଏ ଅଲେଖ । ହେଲେ ତାକୁ କଳନା କରିବ କିଏ, କେମିତି ?

ଛାଡ଼ନ୍ତୁ, ସିଏ ଏକ ଭିନ୍ନ ପ୍ରସଙ୍ଗ । କିନ୍ତୁ ଲୁଚିଛି ନା ଗୋଡ଼ ଦିଓଟି ଦିଶୁଛି ନ୍ୟାୟରେ ଠାକୁରେ ତାଙ୍କ ନିଜ ମୁହଁରେ ନିଜର ଗୋପନ ପରିଚୟଟି ପ୍ରକାଶ କରିଦେଲେ । ହାତକାଟି ଲେଖିଦେଲେ ସେଇ ଚିଠିଟିରେ ଯେ ସେ କିଏ ! କ'ଣ ବା ତାଙ୍କର ସ୍ୱରୂପ ।

ଖାଲି ଏଇଠି ବୋଲି ନୁହେଁ, ତାଙ୍କ ରଚନାବଳୀର ବହୁସ୍ଥାନରେ ସେ ନିଜକୁ ଜଣେ ସାଧାରଣ ମଣିଷ ବୋଲି ପରିଚୟ ଦେଇ ତାଙ୍କର ଐଶୀ ସତ୍ତା ଓ ଶକ୍ତିକୁ ଗୋପନ ରଖିବାକୁ ଚେଷ୍ଟା କରିଥିଲେ ହେଁ କେଉଁଠି ନା କେଉଁଠି ତାଙ୍କର ପ୍ରକୃତ ପରିଚୟଟି ସ୍ୱତଃ ପ୍ରକାଶ ପାଇଯାଇଛି, ଯାହା ତାଙ୍କୁ ଧରା ପକେଇ ଦେଇଛି ଭକ୍ତମାନଙ୍କ ପାଖରେ । ସାଧାରଣ ମଣିଷ ପାଇଁ ସେ ଜଣେ ରକ୍ତମାଂସ ଶରୀରଧାରୀ ସାଧାରଣ ମଣିଷର ପରିଚୟ ସୃଷ୍ଟି କରିଥିଲା ବେଳେ ଭକ୍ତ ପାଖରେ ଲୁଚି ରହିପାରିନି ତାଙ୍କର ଭଗବତ୍ ସତ୍ତା । ଅଲୌକିକ ଲୀଳା ମାଧ୍ୟମରେ ତାହା ପ୍ରକାଶିତ ହୋଇଛି ଭକ୍ତ ନିକଟରେ । ଆତ୍ମଗୋପନ ପାଇଁ କରମେଲା ପରି ଏକ ନିପଟ ମଫସଲ ଅଞ୍ଚଳକୁ ତାଙ୍କର ଜନ୍ମ ଓ ଲୀଳାଭୂମିର କ୍ଷେତ୍ର ଭାବରେ ବାଛିଥିଲେ ହେଁ ଭକ୍ତ ପାଖରେ ତାହା ଏକ ଅପହଞ୍ଚ ଇଲାକା ହୋଇ ରହିପାରିନି । କୃଷ୍ଣଙ୍କର ମୋହନ ବଂଶୀ ଗୋପୀମାନଙ୍କ ନାମ ଧରି ଡାକିଲା ପରି ତାଙ୍କର ମଧୁର ବଂଶୀସ୍ୱନ ମଧ୍ୟ ଡାକିଛି ଭକ୍ତମାନଙ୍କୁ । ସେ ଅନାହତ ଧ୍ୱନି ଯାହା କାନରେ ପଡ଼ିଛି, ସିଏ ସବୁ ଛାଡ଼ି ପାଗଳ ପରି ଧାଇଁ ଆସିଛି ତା' ଶ୍ରୀଚରଣ ତଳକୁ । ସମର୍ପି ଦେଇଛି ନିଜକୁ ସେହି ଅଭୟ ପଦ ପଙ୍କଜରେ । ବାସ୍, ତା'ପରେ ଲୀଳା ନାଟକରେ ଅଂଶଗ୍ରହଣ, ଅଭିନୟ । କେତେବେଳେ ଲଳିତା ତ କେତେବେଳେ ବିଶାଖା । କେତେବେଳେ ସୁବଳ ତ କେତେବେଳେ ମଧୁମଙ୍ଗଳ । ଆଃ... କି ସୁନ୍ଦର ସେ ପରିବେଶ । କି ସୁନ୍ଦର ବୃନ୍ଦାବନର ସେ କୁଞ୍ଜସଜ୍ଜା । କି ମନ ମୁଗ୍ଧକର ସେହି ଲତା ଗହଳର ଅମଳିନ ପୁଷ୍ପସ୍ତବକ!!! ତେବେ କାହ୍ନୁ କ'ଣ ଆସି ଏଇଠି ଲୁଚିଛି? ବୈକୁଣ୍ଠର ଐଶ୍ୱର୍ଯ୍ୟ ଲୀଳା ଛାଡ଼ି ସେ କ'ଣ ତେବେ ମାଧୁର୍ଯ୍ୟଲୀଳାରେ ଏଠି ମଗ୍ନ!!!

ଭକ୍ତ କହେ – ହଁ, ସିଏ ଏଇଠି ଅଛି... ଆମ ହୃଦୟ କନ୍ଦରରେ... ଆମରି ପ୍ରାଣ ପବନରେ... ଆମ ଦୃଷ୍ଟି ଅଗ୍ରରେ । ନା ନା, ତମେ କେହି ବି ତା' ଉପରେ ନଜର ପକାଅନା । ତାକୁ କିଛିଦିନ ପାଇଁ ଛାଡ଼ିଦିଅ ଆମ ଗହଣରେ । ଆମେ ଟିକେ ତାକୁ ମନ ପୂରାଇ ଦେଖିବୁ... ତା' ସାଙ୍ଗରେ ଖେଳିବୁ ।

ହେଲେ ସେ ଲୀଳା କେତେଦିନ ବା ଚାଲିଲା? ଲୀଳାସଙ୍ଗୀ ପାର୍ଷଦମାନଙ୍କୁ ଛାଡ଼ିଦେଲେ ବାକି ଭକ୍ତମାନେ କେତେଦିନ ବା ତାଙ୍କର ସଙ୍ଗସୁଖ ଲାଭ କଲେ? ଖୁବ୍ କମ୍ ଦିନ । କିଏ ପାଞ୍ଚ ସାତ ଥର ସେ ଦେବଦୁର୍ଲ୍ଲଭ ଦର୍ଶନର ସୁଯୋଗ ପାଇଛି ତ କିଏ ମାତ୍ର ଥରେ କି ଦୁଇଥର । ସେତିକିରେ କ'ଣ ନୟନର ତୃଷା ମେଣ୍ଟିଲା ନା ମନର ଭୋକ ମଲା? ପ୍ରଶମିତ ହେବା ପରିବର୍ତ୍ତେ ସେ ଅଗ୍ନି ଅଧିକ ପ୍ରଜ୍ୱଳିତ ହେଲା । ହେଲେ ସେ ହଠାତ୍ ଦିନେ ଲୁଚିଗଲା ସମସ୍ତଙ୍କୁ ଅନାଥ କରି । କେବଳ ଝୁରିବାକୁ ଛାଡ଼ି ଦେଇଗଲା ସେଇ ପ୍ରେମିକ ଭକ୍ତଶ୍ରେଣୀକୁ... ଆହା । ଦୀପତଳର ଅନ୍ଧାର ପରି ଏତେ ପାଖରେ ଥାଇ

ବି ଆମେ ତାକୁ ଜାଣିପାରିଲୁ ନାହିଁ.... ଚିହ୍ନିପାରିଲୁ ନାହିଁ । ଆଉ ଟିକିଏ ଆଗରୁ ସିଏ ଆମକୁ ତା' ପରିଚୟ ଦେଇ ନ ଥାନ୍ତା !

ସେହିଭଳି ଜଣେ ଭକ୍ତ ହେଉଛନ୍ତି ଶ୍ରୀ ଭ୍ରମରବର ପାଣିଗ୍ରାହୀ । ଘର ଢେଙ୍କାନାଳ ଜିଲ୍ଲା କରମୂଳ ପାଖ ଆମ୍ବପଡ଼ା ଗାଁରେ । ଯିଏ କି ମାତ୍ର ଦୁଇ ତିନି ଥର କରମଳା ଯାଇଛନ୍ତି ଠାକୁରଙ୍କ ବିଦ୍ୟମାନ କାଳରେ । କିନ୍ତୁ କୋଟି କନ୍ଦର୍ପଜିଣା ସେ ଅପରୂପ ରୂପଲାବଣ୍ୟ ତାଙ୍କ ହୃଦୟପଟରେ ଏମିତି ଅଙ୍କିତ ହୋଇ ଯାଇଛି ଯେ ଦୀର୍ଘ ପଞ୍ଚାବନ ଷାଠିଏ ବର୍ଷ ପରେ ମଧ ତାହା ସେହିଭଳି ଅମଳିନ ହୋଇ ରହିଛି ତାଙ୍କ ଚକ୍ଷୁ ସମକ୍ଷରେ । ଆଜି ଅଠାଅଶୀ ବର୍ଷ ବୟସରେ ପଦାର୍ପଣ କରିଥିଲେ ବି ତାଙ୍କ ନେତ୍ରର ଜ୍ୟୋତି ମଳିନ ପଡ଼ି ନାହିଁ । ଠାକୁରଙ୍କର ନୟନାଭିରାମ ରୂପ ଏବେ ବି ନାଚୁଛି ତାଙ୍କ ଦୃଷ୍ଟି ଅଗ୍ରରେ । ଆଖି ଖୋଲିଲେ ସିଏ, ଆଖି ବୁଜିଲେ ମଧ ସିଏ । ଖାଲି କଥାର କଥା ନୁହେଁ, ଯିଏ ତାଙ୍କୁ ଦେଖିଛି, ତାଙ୍କ ସହିତ ମିଶିଛି ଏକ ସରଳ ମନ ନେଇ, ସିଏ ହିଁ ଜାଣିଛି ଠାକୁରଙ୍କ ସହିତ ତାଙ୍କ ସମ୍ପର୍କଟା କେମିତି ? ତାଙ୍କ ମୁଖର ପ୍ରସନ୍ନତା ଓ ତୁଣ୍ଡର ହରିନାମ ହିଁ ସୂଚାଇଦିଏ ଠାକୁରେ ତାଙ୍କୁ ବା ସିଏ ଠାକୁରଙ୍କୁ କେତେ ପରିମାଣରେ ଆତ୍ମସାତ୍ କରିଛନ୍ତି... କେତେ ଆପଣାର କରି ନେଇଛନ୍ତି ।

ସେଦିନ ଦୁଇବନ୍ଧୁ (ଭ୍ରମରବର ପାଣିଗ୍ରାହୀ ଓ ଭ୍ରମରବର ପଣ୍ଡା) କଥା ହେଲେ ସପରିବାର କରମଳା ଯିବେ ଓ ଠାକୁରଙ୍କୁ ଦର୍ଶନ କରି ଆସିବେ । ଚନ୍ଦନଯାତ୍ରା ସମୟ । ଗାଁରୁ ଢେଙ୍କାନାଳ ଓ ତା'ପରେ ତାଳଚେର-ପୁରୀ ପାସେଞ୍ଜର ଗାଡ଼ିରେ ଯିବାର କଥା । ହେଲେ ଢେଙ୍କାନାଳରେ ଟିକଟ କଲାବେଳେ ପଣ୍ଡାପୁଅ କହିଲେ – ପୁରୀ ପର୍ଯ୍ୟନ୍ତ ଟିକଟ କରିବା । ପାଣିଗ୍ରାହୀ କହିଲେ, ମୁଁ କ'ଣ ପୁରୀ ଦେଖିନି ଯେ ପୁରୀ ଯିବା ? ଡେଲାଙ୍ଗ ପର୍ଯ୍ୟନ୍ତ ଗଲେ ତ ସେଇଠୁ କରମଳା ଯିବାକୁ ସୁବିଧା ହେବ । ଆଉ ପୁରୀ ଯିବା କାହିଁକି ? ଶେଷରେ ସମସ୍ତଙ୍କର ଟିକଟ ହେଲା ପୁରୀକୁ । ସ୍ଥିର ହେଲା, ଯିଏ ଜଗନ୍ନାଥଙ୍କୁ ଆଦୌ ଦର୍ଶନ କରି ନାହାନ୍ତି, ସେମାନେ ଟିକେ ଦର୍ଶନ କରିବେ । ତା'ପରେ ଯିବେ କରମଳା । ପୁରୀ ମରିଚିକୋଟ୍ ଗଳିରେ ଠାକୁରଙ୍କ ଆଶ୍ରମରେ ଯାଇ ରହିଲେ । ନିତ୍ୟକର୍ମ ସାରିଲା ପରେ ପଣ୍ଡା ଦମ୍ପତି ବାହାରିଲେ ବୁଲିବାକୁ । ପାଣିଗ୍ରାହୀଙ୍କୁ କହିଲେ, ତମେ ଟିକେ ସମସ୍ତଙ୍କୁ ନେଇ ବୁଲାଇ ଆଣ – ଆମେ ଆସୁଛୁ ।

ପାଣିଗ୍ରାହୀ କହିଲେ – ଆଉ ତମେ ? ଆମ ସାଙ୍ଗରେ ଯିବନି କି ?

– ନାଇଁ, ଆମର ଅନ୍ୟ କାମ ଅଛି, ତମେ ଯାଅ ।

ଏତିକି କହି ସ୍ୱାମୀ ସ୍ତ୍ରୀ ବାହାରିଗଲେ । କୁଆଡ଼େ ଗଲେ ଆଉ କହିଲେ ନାହିଁ । ପାଣିଗ୍ରାହୀଙ୍କୁ ଯାଙ୍କ ଢଙ୍ଗଢାଙ୍ଗ କିଛି ଭଲ ଲାଗୁ ନ ଥାଏ । ହେଲେ କରିବେ କ'ଣ ?

ପଣ୍ଡାଙ୍କ ମା' ଭଉଣୀ ଏବଂ ନିଜ ପରିବାରର ସଦସ୍ୟ, ସମସ୍ତଙ୍କୁ ସାଙ୍ଗରେ ନେଇ ବୁଲାଇବାକୁ ବାହାରିଲେ ଶ୍ରୀକ୍ଷେତ୍ର । ସମୁଦ୍ର, ଶ୍ୱେତଗଙ୍ଗା, ମାର୍କଣ୍ଡ, ଇନ୍ଦ୍ରଦ୍ୟୁମ୍ନ ଓ ନରେନ୍ଦ୍ର – ଏହି ପଞ୍ଚତୀର୍ଥ ଦେଖାଇଲା ପରେ ଚାଲିଲେ ଶ୍ରୀମନ୍ଦିର । ଜଗନ୍ନାଥଙ୍କ ଦର୍ଶନ କଲେ ଜଗମୋହନରୁ ଗୁରୁଡ଼ଙ୍କ ପୃଷ୍ଠଭାଗରେ ରହି । ହେଲେ ପଣ୍ଡିଆଣି ଓ ତାଙ୍କ ଝିଅ କହିଲେ– ଠାକୁର କାହାନ୍ତି ? କାହିଁ ଆମେ ତ କିଛି ଦେଖିପାରୁନୁ । ପାଣିଗ୍ରାହୀ ଭାବିଲେ– ସମସ୍ତେ ଦେଖୁଛନ୍ତି, ଆଉ ଏମାନେ ଦେଖି ପାରୁ ନାହାନ୍ତି କେମିତି ? କ'ଣ ଏମାନଙ୍କର ଭାଗ୍ୟରେ ନାହିଁ ? ମନ୍ଦିରକୁ ଆସି କ'ଣ ଖାଲି ଖାଲି ଏମାନେ ଫେରିଯିବେ ? ଆହା... ।

ଯାହାହେଉ ଠାକୁରଙ୍କ ଦର୍ଶନ ପରେ ଏମାନେ ପୁରୀ ଆଶ୍ରମକୁ ଫେରିଲା ବେଳକୁ ଆସି ପହଞ୍ଚିଲେ ପଣ୍ଡା ଦମ୍ପତି । କହିଲେ, ଚାଲ ଗାଁକୁ ଫେରିଯିବା । ଏବେ ଗାଡ଼ି ଅଛି । ଆଶ୍ଚର୍ଯ୍ୟଚକିତ ହୋଇ ତାଙ୍କ ମୁହଁକୁ ଚାହିଁଲେ ପାଣିଗ୍ରାହୀ ପୁଅ । ପଚାରିଲେ– ଇଏ କି କଥା ? ଘରୁ କରମଳା ଯିବା ପାଇଁ ବାହରିଲେ । ବାଟରେ ନିଷ୍ପତ୍ତି ବଦଳାଇ ପୁରୀ ଆସିଲ । ଏବେ ଗୁରୁଧାମ କରମଳା ନ ଯାଇ କ'ଣ ଘରକୁ ଫେରିବା କଥା କହିଲଣି ? ମୁଁ ତ ତମକଥା କିଛି ବୁଝିପାରୁନି । ତମେ ଘରକୁ ଯିବ ହେଲେ ଯାଅ । ମୁଁ କରମଳା ଯାଉଛି । ଠାକୁରଙ୍କ ଦର୍ଶନ ନ କରି ମୁଁ ଗାଁକୁ ଫେରିବି ନାହିଁ । ରାତି ତିନିଟାରେ ଘରକୁ ଫେରିବା ପାଇଁ ଗାଡ଼ି ଥାଏ । ଜଣେ ଟିକଟ କଲେ ଢେଙ୍କାନାଳ, ଆଉ ଜଣେ ଟିକଟ କଲେ ଡେଲାଙ୍ଗ । ପାଣିଗ୍ରାହୀ ପୁଅ ସପରିବାର ଓହ୍ଲାଇଲେ ଡେଲାଙ୍ଗରେ । ତଥାପି ରାତି ପାହି ନ ଥାଏ, ମୁସାଫିରଖାନାକୁ ଗଲେ ବିଶ୍ରାମ ପାଇଁ । ଭିତରେ ଚେମିଣିଆ ଗୃହ, ଆଣ୍ଠୁଏ ବହଳର ଧୂଳି, ଅଳିଆ ଦଳିଆ ଜମା ହୋଇଥାଏ । ବସିବାକୁ ବି ଜାଗା ନ ଥାଏ, ଶୋଇବେ କ'ଣ ? ପାଖରେ ଥିବା ଗଛର ଡାଳ ଲମ୍ବି ଆସିଥାଏ ଘର ଭିତରକୁ । ବିଲୁଆଗୁଡ଼ାକ ଦୁଆର ମୁହଁରେ ଧାଁ ଧଉଡ଼ ଲଗାଇଥାନ୍ତି । ହୁକେ ହୋ ରଡ଼ିଲେ କାନ ଫାଟି ଯାଉଥାଏ । ଗଛ ଡାଳରେ ପେଚା ରାବୁଥାଏ । ଅଜଣା ଅଚିହ୍ନା ଜାଗାରେ ଏ ଭୟଙ୍କର ପରିବେଶରେ ସମସ୍ତେ ଏକପ୍ରକାର ଭୟ ଭିତରେ ଥାଆନ୍ତି । ପାଣିଗ୍ରାହୀ ବାବୁ ଚଟାଣ ମଝିରେ କିଛି ଅଂଶ ଝଡ଼ାଝଡ଼ି କରି ସଫା କଲେ । କହିଲେ, ମୁଁ ଜଗି ବସୁଛି । ତମେ ସବୁ ଗଣ୍ଠିଲି ପତ୍ର ଏଇଠି ରଖି ଟିକିଏ ଶୋଇପଡ଼ । କିଛି ଭୟ କରନା । ଫର୍ଚ୍ଚା ହେଲେ ଦୋକାନ ସବୁ ଖୋଲିବ । ଦୋକାନୀମାନଙ୍କୁ ପଚାରି କରମଳା ଯିବାର ବ୍ୟବସ୍ଥା କରିବା ।

ରାତି ପାହିଲା । ନିତ୍ୟକର୍ମ ସାରି ସମସ୍ତେ ଜଳଖିଆ ଖାଇଲେ । ପାଣିଗ୍ରାହୀ ବାବୁ ପଚାରିଲେ ଦୋକାନୀମାନଙ୍କୁ – କଣାସ ବସ୍ କେତେବେଳେ ଆସିବ ? ସେମାନେ କହିଲେ, ବସ୍ ଆଉ ଆଜିକାଲି ଚାଲୁନି । ତେବେ ଉପାୟ ? ଡଙ୍ଗା ମିଳିବ ତ ?

– ଯାଅ ଦେଖ ।

ଏମାନଙ୍କୁ ସେଇ ବଜାରରେ ବସାଇ ଦେଇ ପାଣିଗ୍ରାହୀ ବାବୁ ଦଉଡ଼ିଲେ ନଈକୂଳକୁ । ପ୍ରାୟ ମାଇଲିଏ ଦୂରରେ ଦେଖା ଯାଉଥିଲା ଗୋଟିଏ ଡଙ୍ଗା । ଧାଇଁ ଧାଇଁ ଯାଇ ପହଞ୍ଚିଲେ ତା' ପାଖରେ । ପଚାରିଲେ, ଭାଇ ! କରମଳା ଯିବ ? ଆମେ ପାଞ୍ଚ ଛଅ ଜଣ ବହୁତ ଦୂରରୁ ଆସିଛୁ । ଠାକୁରଙ୍କ ପାଖକୁ ଯିବୁ । ଟିକିଏ ସାହାଯ୍ୟ କର । ନାଉରୀ ମନାକଲା । ଆହୁରି ଖଣ୍ଡେ ଦୂରରେ ଆଉ ଗୋଟିଏ ଡଙ୍ଗା ଦେଖା ଯାଉଥିଲା । ପୁଣି ଧାଇଁଲେ ତା' ପାଖକୁ । ସିଏ ବି ମନା କଲା । ଆଉ କିଛି ଦୂରରେ ଆଉ ଗୋଟିଏ ଡଙ୍ଗା ଦେଖାଗଲା । ତା' ପାଖକୁ ବି ଗଲେ । କିନ୍ତୁ ଶେଷକୁ ନିରାଶ ହୋଇ ଫେରିବାକୁ ପଡ଼ିଲା ତାଙ୍କୁ । ଲୋକଙ୍କୁ ପଚାରିଲେ, ଡଙ୍ଗା ତ ମିଳିଲା ନାହିଁ, ଆମେ ଯିବୁ କେମିତି ?

ଲୋକେ କହିଲେ, ଆଜି କଣାସ ହାଟ । ତମେ ସେଇଠିକି ଯାଅ । ହାଟରେ କିଛି ସୁବିଧା ମିଳିଯାଇପାରେ । କଣାସ ସେଠିକି ପ୍ରାୟ ପନ୍ଦର ମାଇଲ ବାଟ । ଉପାୟ ବା କ'ଣ ଅଛି ? ନିଜ ନିଜର ଗଣ୍ଠିଲି ଧରି ଗୋଟିଏ ଗୋଟିଏ ଚାଲିଲେ ସମସ୍ତେ । ଏପଟ ସେପଟ ଧାଇଁ ଧାଇଁ ଥକିଗଲେଣି ପାଣିଗ୍ରାହୀବାବୁ । ହେଲେ ଭରସା ତୁଟି ନ ଥାଏ । ଠାକୁରଙ୍କୁ ସ୍ମରଣ କରି କରି ଚାଲିଥାଆନ୍ତି ।

ହାଟରେ ଆଉ ଗାଡ଼ି ମଟର କିଛି ମିଳିଲାନି । ଟିକିଏ ବିଶ୍ରାମ ନେଇ ପୁଣି ଚାଲିଲେ ପଦବ୍ରଜରେ । ବୈଶାଖର ମୁଣ୍ଡଫଟା ଖରା । ତା' ସାଙ୍ଗକୁ ମୁଣ୍ଡରେ ଗଣ୍ଠିଲିର ବୋଝ । ଏମିତି ଚାଲୁ ଚାଲୁ ବାଟ ମଝିରେ ପଡ଼ିଲା ଏକ ଦୋଛକି । ବରଗଛଟିଏ ଥାଏ ସେଠି । ଚାରିଆଡ଼କୁ ଚାହିଁଲେ – କାଳେ କେହି ଯୁଟିଯିବେ ଭଲା ବାଟ ବତେଇବା ପାଇଁ । ହେଲେ ଏ ଟାଇଁ ଟାଇଁ ଖରାରେ ଲୋକବାକ ଭେଟିବେ କ'ଣ, କାଉ କୋଇଲିଟିଏ ବି ଦେଖିବାକୁ ମିଳିଲା ନାହିଁ । ପାଖରେ ଗାଁ ଗଣ୍ଡା କିଛି ନାହିଁ, କେଉ ବାଟରେ ଯିବେ ଜାଣିପାରୁ ନ ଥାନ୍ତି । କରମଳା ଆଡ଼େ ମୁହଁ କରି ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । କହିଲେ, ପ୍ରଭୁ ! ଆମେ କେମିତି ଯିବୁ ତମେ ଜାଣ । ହଠାତ୍ ଏତିକିବେଳେ ଦୁର୍ବଳ ସ୍ୱାସ୍ଥ୍ୟ କାଳିଆ ଲୋକଟିଏ ଆସି ପହଞ୍ଚିଲା ପଛପଟରୁ । କାନ୍ଧରେ ଗାମୁଛାଟିଏ ପକାଇଥାଏ । ପଚାରିଲା – ତମେ କୁଆଡ଼େ ଯିବ କି ?

– ଆମେ କରମଳା ଠାକୁରଙ୍କ ପାଖକୁ ଯାଉଛୁ । ହେଲେ ବାଟ ପାଉନୁ ।

– ଓ ଏଇକଥା – ଆସ ମୋ ସାଙ୍ଗରେ, ମୁଁ ବତେଇଦେବି । ମୁଁ ବି ସେଇଆଡ଼େ ଯାଉଛି ।

ସିଏ ଆଗରେ ଚାଲୁଥାଏ ବିଜୁଳି ବେଗରେ । ଅନ୍ୟମାନେ ତା' ପଛରେ । ଯେତେ ଜୋର୍‌ରେ ଧାଇଁଲେ ବି ତା' ପାଖରେ ପହଞ୍ଚି ପାରୁ ନ ଥାନ୍ତି ପାଣିଗ୍ରାହୀବାବୁ ।

ସନ୍ଧ୍ୟା ଆଗତପ୍ରାୟ । ବାଟରେ ପଡ଼ିଲା ଗୋଟିଏ ଗାଁ । ଲୋକଟି କହିଲା ରାତି ହେଇଯିବ, ଆଜି ଆଉ କରମଳାରେ ପହଞ୍ଚି ପାରିବା ନାହିଁ । ଏଇ ଗାଆଁରେ ରାତିଟା ରହି ଯା' । ରହିବା ପାଇଁ ଘର ଖଣ୍ଡିଏ ମଧ୍ୟ ଯୋଗାଡ଼ କରିଦେଲା । କହିଲା, ଏଇ ପାଖ ପୋଖରୀରୁ ପାଣି ଆଣିବ । ଏଇ ଦୋକାନରୁ ସଉଦାପତ୍ର ଆଣି ରୋଷେଇ କର । ମୁଁ ଏବେ ଯାଏ ମୋ କାମରେ ।

ଘର ଭିତରେ ମୂଷାମାଟି ଜମା ହୋଇଥାଏ । ରାତିରେ ରୋଷେଇ କରି ଖାଇଲେ, ଶୋଇଲେ । ଗାଁ ଲୋକେ ସବୁ ଯୋଗାଇଦେଲେ । ବାଟ କଢ଼େଇ ଆଣିଥିବା ଲୋକଟି କୁଆଡ଼େ ଅଦୃଶ୍ୟ ହୋଇଗଲା ଅନ୍ଧାର ଭିତରେ । ଗାଁ ଲୋକ ଯିଏ ଗାଁ ଆଉ ଆସିଲେ, ସମସ୍ତଙ୍କୁ ତା' କଥା ପଚାରିଲେ । କିନ୍ତୁ କେହି କହିପାରିଲେନି । ସମସ୍ତେ କହିଲେ, ଆମେ ତ କାହିଁ ଦେଖିନୁ ।

ଗଣ୍ଠିଲି ବୋହି ସକାଳୁ ସଞ୍ଜ ଚାଲି ଚାଲି ଥକି ପଡ଼ିଥିବା ଏ କରମଳା ଯାତ୍ରୀଙ୍କ ଭିତରେ କେହି ଜଣେ ହେଲେ ବି ଆଉ ଚାଲିବା ଅବସ୍ଥାରେ ନ ଥିଲେ । ତେଣୁ ଶଗଡ଼ ଗାଡ଼ି ଖଣ୍ଡିଏ ଯୋଗାଡ଼ କରିବାରେ ଲାଗିପଡ଼ିଲେ ପାଣିଗ୍ରାହୀବାବୁ । ଦୋକାନୀ ଜଣେ ଶଗଡ଼ିଆକୁ ଡକାଇଲା । ସିଏ କହିଲା, ମୁଁ ପାଞ୍ଚଟଙ୍କା ନେବି କରମଳାକୁ । ଯେତେଲୋକ ଥିଲେ ସମସ୍ତେ କହିଲେ, ହଇରେ ! ହିସାବରେ ତ ତୋର ଭଡ଼ା ଅଢ଼େଇ ଟଙ୍କା ହଉଚି, ଆଉ ତୁ ପାଞ୍ଚଟଙ୍କା କହୁଛୁ କେମିତି ? ପାଣିଗ୍ରାହୀ ବାବୁ କିନ୍ତୁ ପରିସ୍ଥିତି ଦେଖି ରାଜି ହୋଇଗଲେ ପାଞ୍ଚଟଙ୍କା ଦେବାକୁ ।

କଥାନୁସାରେ ବଡ଼ି ଭୋରରୁ ଆସି ପହଞ୍ଚିଲା ଶଗଡ଼ିଆ । ସ୍ତ୍ରୀ ପିଲା ସମସ୍ତେ ବସିଲେ ଶଗଡ଼ରେ । ଗଣ୍ଠିଲି ସବୁ ଲଦାଗଲା । ଶଗଡ଼ିଆର ପୁଅ ଗାଡ଼ି ଚଲେଇଲା । ଆଗେ ଆଗେ ଚାଲିଲା ସାଙ୍ଗରେ ଯାଇଥିବା ଭାଇ ହରି । ପଛରେ ଦଣ୍ଡା ଧରିଲେ ଶଗଡ଼ିଆ ଓ ପାଣିଗ୍ରାହୀ ବାବୁ ।

ଦିନ ପ୍ରାୟ ସାଢ଼େ ବାରଟା ଗୋଟାଏ ବେଳକୁ ଏମାନେ ପହଞ୍ଚିଲେ ଆଶ୍ରମରେ । ମହେନ୍ଦ୍ର ବାବା ଆଶ୍ରମର ଗାଈ ଚରାଉଥାନ୍ତି । ଠାକୁର ମଧ୍ୟାହ୍ନ ଧୂପ ପରେ ପହୁଡ଼ ଗଲେଣି । ବାବାମାନେ ମଧ୍ୟ ନିଜ ନିଜ କୁଟୀରରେ ବିଶ୍ରାମ କଲେଣି । ଧନୀବାବା ସମସ୍ତଙ୍କୁ ନେଇ ଧର୍ମଶାଳାରେ ରହିବାର ବ୍ୟବସ୍ଥା କଲେ । କହିଲେ, ଏବେ ଗାଧୁଆ ପାଧୁଆ କରି ପ୍ରସାଦ ପାଅ । ପହୁଡ଼ ଭାଙ୍ଗିଲେ ଉପର ଓଳି ଠାକୁରଙ୍କୁ ଦର୍ଶନ କରିବ । ସମସ୍ତେ ଲାଗି ପଡ଼ିଲେ ନିଜ ନିଜ କାମରେ । ହେଲେ ଭ୍ରମରବାବୁଙ୍କର ଏକା ଜିଦ୍ ଠାକୁରଙ୍କ ଦର୍ଶନ ନ କଲା ପର୍ଯ୍ୟନ୍ତ ପାଣି ଛୁଇଁବେ ନାହିଁ । ଆଉ ସେଇ ଦେବଦୁର୍ଲଭ ଦର୍ଶନାକାଂକ୍ଷା ନେଇ ଚାଲିଲେ ଛତାକୁ । ମା' କମଳିନୀ ମଧ୍ୟ ବାହାରିଲା ସାଙ୍ଗରେ ।

ଏଇ ତ ଯଥାର୍ଥ ଧର୍ମପତ୍ନୀ, ଯିଏ ସମସ୍ତ ଧର୍ମକର୍ମରେ ସ୍ୱାମୀଙ୍କର ସାହଚର୍ଯ୍ୟ କରନ୍ତି । ପ୍ରେରଣା ଯୋଗାନ୍ତି ଆଗକୁ ବଢ଼ିବା ପାଇଁ – ଚଲାପଥର କଣ୍ଟା କାଢ଼ି ଦେଇ ଯିଏ ବିଛାଇ ଦିଅନ୍ତି ସଜ ଗୋଲାପର କୋମଳ ପାଖୁଡ଼ା । ଭ୍ରମରବାବୁ ସିନା ଆଗରୁ ଆସିଛନ୍ତି – ଦର୍ଶନ କରିଛନ୍ତି ଠାକୁରଙ୍କର ସେ କମନୀୟ ରୂପ, କିନ୍ତୁ ମା' କମଳିନୀ ତ ନୂଆ । ତାଙ୍କୁ ଅବା ସିଏ ବାରଣ କରନ୍ତେ କାହିଁକି ? ଏତେଥର ଦେଖିଲା ପରେ ବି ସେ ନିଜେ ଯଦି ଅତୃପ୍ତ, ତେବେ ଏ ଚର୍ମଚକ୍ଷୁରେ ଥରଟିଏ ବି ଦେଖିବାର ସୁଯୋଗ ପାଇ ନ ଥିବା ଧର୍ମପତ୍ନୀଙ୍କୁ ସେ ବଞ୍ଚିତ କରନ୍ତେ କାହିଁକି ? କହିଲେ – ହଉ ଚାଲ । ତମେ ବି ଦେଖି ଆସିବ ସେ ଠାକୁରଙ୍କୁ, ଯାହାଙ୍କ ପ୍ରତିମୂର୍ତ୍ତି ତମେ ପୂଜା କରି ଆସୁଛ ଏତେଦିନ ଧରି । ଯାହାଙ୍କ ଅପରୂପ ଲାବଣ୍ୟର ବର୍ଣ୍ଣନା ଶୁଣିଛ ସିନା, ଦେଖିବା ସୁଯୋଗ ଏ ଯାଏଁ ପାଇନା । ଉତ୍ସାହିତ ହେଲା ମା' କମଳିନୀ ।

ଦୁହେଁ ସାଥୀ ହୋଇ ଚାଲିଲେ ଛତାକୁ । ଯିବା ବାଟରେ ଦେଖିଲେ ପୋଖରୀ ହୁଡ଼ାରେ ମାଳିଟିଏ ଧରି ବସିଛି, ଟୋକେଇରେ ଟୋକେଇଏ ପଦ୍ମଫୁଲର ହାର । କହିଲା, ବାବୁ ! ଠାକୁରଙ୍କର ଦର୍ଶନକୁ ଯାଉଛ ପରା ! ମାଳଟିଏ ନେବ ନାହିଁ ?

– ହଁ, ନେବୁ ଯେ... କେତେ ଦାମ୍ ?

– ଆଠଣା ।

ଆଜି ଯୁଗରେ ଆଠଣି ଆଉ ଦେଖିବାକୁ ମିଳୁନି, ଯଦି ବି ମିଳୁଛି, ତେବେ ତା'ର ମୂଲ୍ୟ କିଛି ନାହିଁ କହିଲେ ଚଳେ । କିନ୍ତୁ ସେତେବେଳେ ତା'ର ମୂଲ୍ୟ ଥିଲା । ଆଠଣିଟିଏ ଦେଇ ଭ୍ରମରବାବୁ ମାଳଟିଏ କିଣିଲେ । ଆଜିର ଦିନରେ ଶହେ ଟଙ୍କା ଦେଲେ ବି ସେମିତି ମାଳଟିଏ ମିଳିବ ନାହିଁ ।

ଉପର ମହଲା କବାଟ ବନ୍ଦ ଥାଏ । ଠାକୁର ଅନନ୍ତ ଶୟନରେ ପହୁଡ଼ ଯାଇଥାନ୍ତି । ଭ୍ରମରବାବୁ ଓ ମା' କମଳିନୀ ଯାଇ ପହଞ୍ଚିଲେ ସ୍ନାନ ମଣ୍ଡପ ପାଖରେ । ସତୃଷ୍ଣ ନୟନରେ ସେଇଠି ଠିଆ ହୋଇ ଚାହିଁ ରହିଲେ ଉପର ମହଲା ଆଡ଼କୁ । ମନରେ କେତେ ଭାବନା – ଅନ୍ତର୍ଯ୍ୟାମୀ ପ୍ରଭୁ କ'ଣ ସତରେ ଏ ଦୀନହୀନ ଅକିଞ୍ଚନକୁ ଦର୍ଶନ ଦେବେ ନାହିଁ ? ନିଶ୍ଚୟ ଦେବେ ।

ଯା ଭିତରେ ପ୍ରାୟ ଅଧଘଣ୍ଟାଏ ଛିଡ଼ା ହେଲେଣି । ଯେତିକି ବିଳମ୍ବ ହେଉଥାଏ, ମନର ବ୍ୟାକୁଳତା ସେତିକି ବଢୁଥାଏ । ଠାକୁର ଲେଖିଛନ୍ତି– "ଅତି ବ୍ୟାକୁଳରେ ଡାକିଲେ, ଦେଖା ମିଳେ ଅତି ଚଞ୍ଚଳେ ।" ସତକୁ ସତ ସେଇ ବ୍ୟାକୁଳତା ଠାକୁରଙ୍କୁ ଟାଣି ଆଣିଲା ତାଙ୍କ ପାଖକୁ । ହଠାତ୍ ପଛପଟୁ ଭାସି ଆସିଲା ଚନ୍ଦନ କର୍ପୂର ତୁଳସୀର ମୃଦୁମନ୍ଦ ସୁଗନ୍ଧ । ଭ୍ରମରବାବୁ ଜାଣିଲେ ଏହା ହେଉଛି ଠାକୁରଙ୍କ ଶ୍ରୀଅଙ୍ଗର ସୁବାସ । ବୁଲିପଡ଼ି ଦେଖନ୍ତି ତ

ଠାକୁରେ ବିଦ୍ୟମାନ । କୋଟି କନ୍ଦର୍ପ ଜିଣା ସେ ଅପରୂପ ରୂପ ମାଧୁରୀ ଏବଂ ଅଧରରୁ ଝରି ପଡୁଥିବା ଭକ୍ତ ମନଲୋଭା ସେ ହସକୁ ପ୍ରଥମ କରି ଦେଖିଲା ମା' କମଳିନୀ । ଆଖି ଲାଖିଗଲା ସେ ରୂପରେ । ସତେ ଯେମିତି ସିଏ ସମ୍ମୋହିତ କରି ନେଇଛନ୍ତି ତାଙ୍କର ପ୍ରଥମ ଦର୍ଶନରେ ।

ଭ୍ରମରବାବୁ ଫୁଲମାଳଟି ମା' କମଳିନୀ ହାତକୁ ବଢ଼ାଇ ଦେଇ ସାଷ୍ଟାଙ୍ଗ ପ୍ରଣାମ କଲେ । ମା' ପୁଣି ହାରଟି ସ୍ୱାମୀଙ୍କ ହାତକୁ ନେଇ ଠାକୁରଙ୍କୁ ପ୍ରଣାମ କଲା । ଭ୍ରମରବାବୁ ପୁଣି ଫୁଲମାଳଟି ବଢ଼ାଇଦେଲେ ମା' ହାତକୁ । କହିଲେ, ତମେ ଏ ଗୃହ ଜଞ୍ଜାଳ ଭିତରୁ ବାହାରି ପୁଣି କେବେ ଆସିପାରିବ କି ନାହିଁ, ତା'ର ଠିକଣା ନାହିଁ । ନିଅ, ତମେ ତମ ନିଜ ହାତରେ ମାଳଟି ଠାକୁରଙ୍କୁ ପିନ୍ଧାଇଦିଅ ।

ନୟନ ମଉସା (ନୟନ କିଶୋର ମହାନ୍ତି, ଚାଉଳିଆଗଞ୍ଜ, କଟକ) କହନ୍ତି, ଠାକୁରଙ୍କ ଚେହେରା ଏମିତି ଯେ ଲକ୍ଷେ ଭକ୍ତଙ୍କ ଭିତରେ ଛିଡ଼ା ହୋଇଥିଲେ, ସମସ୍ତଙ୍କ ଉପରେ ହାତେ ଚାଖଣ୍ଡେ ଉଚ୍ଚରେ ସିଏ ଦେଖାଯାଉଥିବେ । ହେଲେ ଏମିତି ଏକ ମେରୁ ପର୍ବତର ପାଦଦେଶରେ ଥିବା କ୍ଷୁଦ୍ରାଦିକ୍ଷୁଦ୍ର ଗୁଳ୍ମ ସଦୃଶ ଦଣ୍ଡାୟମାନ ମା' କମଳିନୀ ଫୁଲମାଳଟି ହାତରେ ଧରି ଦେଖିଲା, ତା' ହାତ ଅତି ବେଶିରେ ପାଉଛି ଠାକୁରଙ୍କ ବକ୍ଷସ୍ଥଳ ପର୍ଯ୍ୟନ୍ତ । ଭାବିଲା, ଏ ବିଶାଳ ଦ୍ରୁମ ସଦୃଶ ବିରାଟ ପୁରୁଷଙ୍କୁ ମୋ ଭଳି ଗୋଟାଏ ଖର୍ବକାୟ ମଣିଷ କେମିତି ପିନ୍ଧାଇବ ଏ ଫୁଲମାଳ ? ମୋ ହାତ କ'ଣ ତାଙ୍କ ଗଳା ପର୍ଯ୍ୟନ୍ତ ପାଇବ ?

ଠାକୁରେ ଠିଆ ହୋଇ ହସୁଥାନ୍ତି । ଭ୍ରମରବାବୁ କହୁଥାନ୍ତି– ବ୍ୟସ୍ତ ହୁଅନା । ଭକ୍ତ ଭାବଗ୍ରାହୀ ନିଶ୍ଚୟ ତମ ଭକ୍ତିପୁଷ୍ପ ଗ୍ରହଣ କରିବେ । ଆଉ କେମିତି କରିବେ, ତାହା କେବଳ ତାଙ୍କୁ ହିଁ ଜଣା । ସ୍ୱାମୀଙ୍କ କଥା ମାନି ମା' କମଳିନୀ ଛିଡ଼ା ହୋଇ ରହିଲା ଠାକୁରଙ୍କ ସମ୍ମୁଖରେ । ବେଶ୍ କିଛି ସମୟ ପାଇଁ ନୀରବତା । ନିଦାଘର ରୌଦ୍ରତାପରେ ଅସ୍ତବ୍ୟସ୍ତ ତିନିହେଁ । ବିନ୍ଦୁ ବିନ୍ଦୁ ଝାଳ ନିଗିଡ଼ି ପଡୁଛି ଶ୍ରୀଅଙ୍ଗରୁ । ଠାକୁରେ ଆଜି ଭକ୍ତ ପାଖରେ ନାଚାର । ନା ମା' କମଳିନୀର ହାତ ପାଉଛି ନା ଭ୍ରମରବାବୁ ତା' ହାତରୁ ମାଳ ନେଇ ଠାକୁରଙ୍କୁ ପିନ୍ଧାଉଛନ୍ତି ।

ମା' କମଳିନୀ ଠାକୁରଙ୍କ ଶ୍ରୀମୁଖକୁ ଚାହିଁ ଭାବୁଥାଏ, କ'ଣ ଆମେ ଏଇମିତି ଠିଆ ହୋଇଥିବା ପ୍ରଭୁ ! ଏ ଅଭାଗିନୀ ହାତରୁ କ'ଣ ଏ ମାଳ ତୁମେ ଗ୍ରହଣ କରିବ ନାହିଁ ? ମୁଁ କ'ଣ ମୋ ଇଚ୍ଛାରେ ଏମିତି ଗେଡ଼ା ହୋଇଛି ? ତମେ କ'ଣ କିଛି ଜାଣିନା ? ମୁଁ ସିନା ଡେଙ୍ଗା ହୋଇ ପାରିବିନି କିନ୍ତୁ ତୁମେ... ? ତମେ ତ ଇଚ୍ଛାମୟ । ତମେ ଚାହିଁଲେ କ'ଣ ବା ନ ହେବ... ?

ମନକୁ ଆସିଲା ସିନା, ହେଲେ ଭାବନାର ଖିଅକୁ ଆଉ ଅଧିକ ଲମ୍ବିବାକୁ ଦେଲା ନାହିଁ ମା' କମଳିନୀ । ଛିଉ କାମୁଡ଼ି ପକାଇଲା, ଯେତେବେଳେ ନିଜେ ପ୍ରକୃତିସ୍ଥ ହେଲା । ନିଜର ସ୍ୱାର୍ଥପର ମନୋଭାବକୁ ନେଇ ଧିକ୍କାର କଲା ନିଜକୁ । ଜଗତ ହିତରେ ସିନା ପ୍ରଭୁ ସ୍ୱୟଂ ବାମନ ଅବତାର ହୋଇଥିଲେ । କୋଉ ଅଧିକାରରେ ସେ ଏତେବଡ଼ କଥାଟେ ଚିନ୍ତା କରୁଥିଲା ? ସତରେ ଯଦି ଏମିତି କିଛି ଅଘଟଣ ଘଟିଯାଇଥାନ୍ତା, ତେବେ କ'ଣ ସେ ନିଜକୁ କ୍ଷମା କରିପାରିଥାନ୍ତା ? ନା, ନା, ଗଳାରେ ପିନ୍ଧାଇ ନ ପାରିଲା ନାହିଁ, ପାଦ ପଦ୍ମରେ ତ ସମର୍ପି ଦେଇପାରିବ ।

ଭକ୍ତ ଭାବଗ୍ରାହୀ ବୋଧହୁଏ ତାହା ହିଁ ଭାବୁଥିଲେ । ମନେ ପକାଉଥିଲେ ସତ୍ୟଯୁଗର କଥା, ଯେତେବେଳେ ଭକ୍ତରାଜ ବଳୀଙ୍କ ପାଇଁ ତାଙ୍କୁ ବାମନ ରୂପ ଧାରଣ କରିବାକୁ ପଡ଼ିଥିଲା । ହେଲେ ଆଜି ? ଆଜି କ'ଣ ସେ ଲୀଳାର ପୁନରାବୃତ୍ତି ହେବ ଏଇ ମା' ପାଇଁ ?

ସେତେବେଳେ ତ ଥିଲେ ଜନ୍ମରୁ ବାମନ । ଦାନବରାଜ ବଳୀଙ୍କୁ ଭ୍ରମିତ କରି ତିନିପାଦ ଭୂମିର ଦାନ ମାଗିବା ଥିଲା ସେହି ଅବତାରର ଉଦ୍ଦେଶ୍ୟ । କିନ୍ତୁ ଆଜି ପରିସ୍ଥିତି ସମ୍ପୂର୍ଣ୍ଣ ଭିନ୍ନ । ଆଜି ଭକ୍ତର ପ୍ରାର୍ଥନା – ତୁମେ ବାମନ ହୋଇଯାଅ ।

ଠାକୁରେ ଲେଖିଛନ୍ତି– "ମୁହିଁ ଯନ୍ତ୍ର ତୁମ୍ଭେ ଯନ୍ତ୍ରୀ ସବୁ ଯୁଗେ ଯୁଗେ । ମୁଁ ଯନ୍ତ୍ରୀ ନୋହିଲେ ତୁମ୍ଭେ ଖେଳିବ କା ସଙ୍ଗେ ।" ସତରେ ଭକ୍ତ ଭଗବାନ ଖେଳରେ ଅସଲ ମଜା ସେତିକିବେଳେ ଆସେ, ଯେତେବେଳେ ଭଗବାନ ହୋଇଯାଆନ୍ତି ଯନ୍ତ୍ର ଆଉ ଭକ୍ତ ହୁଏ ଯନ୍ତ୍ରୀ । ଭକ୍ତର ମନବାଞ୍ଛା ପୂର୍ଣ୍ଣ କରିବାକୁ ଯାଇ ଭଗବାନଙ୍କୁ ଯେତେବେଳେ ତା'ର ଅଧୀନତା ସ୍ୱୀକାର କରିବାକୁ ପଡ଼େ ।

ଏବେ ଆସିଲା ଲୀଳା ନାଟକର ଅନ୍ତିମ ପର୍ଯ୍ୟାୟ । ମା' କମଳିନୀ ଫୁଲମାଳ ଧରି ସେଇମିତି ଛିଡ଼ା ହୋଇଥାଏ ଠାକୁରଙ୍କ ସାମ୍ନାରେ । ହଠାତ୍ ଠାକୁରଙ୍କ ବିରାଟ ଶରୀରର ଉଚ୍ଚତା କମିଗଲା, ଯେମିତି ଚାରିଫୁଟ୍ ଉଚ୍ଚତା ବିଶିଷ୍ଟ ମା' କମଳିନୀର ହାତ ପାଇବ । ଅମାପରୁ ମାପ ଭିତରକୁ ଆସିଗଲେ ଠାକୁର । ମା' ପିନ୍ଧାଇ ଦେଲା ଫୁଲମାଳ । ଲୋଟିଗଲା ପାଦତଳେ । ଭ୍ରମର ବାବୁଙ୍କର ମନେ ପଡ଼ିଗଲା କବି ଜୟଦେବଙ୍କର ଦଶାବତାର ସ୍ତୋତ୍ର । ଗାଇ ଉଠିଲେ – ଛଳୟସି ବିକ୍ରମଣେ ବଳୀମଦ୍ଭୂତ ବାମନ, ପଦନଖନୀରଜନିତ ଜନ ପାବନ, କେଶବ ଧୃତ ବାମନ ରୂପ ଜୟ ଜଗଦୀଶ ହରେ, ଜୟ ଜଗଦୀଶ ହରେ... ।

ସେ ମଧ୍ୟ ଲୋଟି ପଡ଼ିଲେ ପ୍ରଭୁଙ୍କ ପାଦ ତଳେ । ଉଠି ଦେଖନ୍ତି, ସେ ବାମନ ରୂପ ଆଉ ନାହିଁ । ଠାକୁରେ ତାଙ୍କ ନିଜସ୍ୱ ରୂପରେ ଛିଡ଼ା ହୋଇ ହସୁଛନ୍ତି ।

ଏତିକିବେଳେ କାହିଁକି କେଜାଣି ନାଗେଶ୍ୱର ବାବା ବାହାରିଲେ ତାଙ୍କ କୋଠରୀରୁ । ତାଙ୍କ ନଜରରେ ପଡ଼ିଗଲା ଦିନ ଦି'ପହରେ ନିର୍ଧୂମ ଖରାରେ ଠିଆ ହୋଇଛନ୍ତି ଭ୍ରମରବାବୁ ଓ ତାଙ୍କ ପତ୍ନୀଙ୍କ ସମ୍ମୁଖରେ । ସେଇଠି ଥାଇ ସେ ପାଟି କରି ଉଠିଲେ– ଆରେ ଦେଖ ହୋ ଏ ଭକ୍ତଙ୍କୁ । ଠାକୁରଙ୍କୁ କେମିତି ଏ ଟାଣ ଖରାଟାରେ ଠିଆ କରେଇଛନ୍ତି । ପାଟି ଶୁଣି ଶଙ୍କିଗଲେ ଭ୍ରମରବାବୁ । ଅପରାଧବୋଧର ବୋଝରେ ଝାଉଁଳି ପଡ଼ିଲେ ପତି ପତ୍ନୀ । ଆହା କେଡ଼େ ବଡ଼ ଅପରାଧଟେ ସତରେ କରି ନ ପକାଇଲେ ସେମାନେ ।

ବାବାଙ୍କ ପାଟି ଶୁଣି ଅନ୍ୟ ବାବାମାନେ ଯେଝା କୁଟୀରରୁ ବାହାରି ଆସିଲେ । ଛତ୍ର, ଚାମର, ଖୋଳ, କରତାଳ ଆଣି ପାଛୋଟି ନେଲେ ଠାକୁରଙ୍କୁ । ବସାଘରକୁ ଫେରିଲେ ଭ୍ରମରବାବୁ ଓ ତାଙ୍କ ପତ୍ନୀ ଆଖିରେ ଆଖିଏ ଲୁହ ଧରି । କିନ୍ତୁ ସେତେବେଳକୁ ନା ଥିଲା ସେ ମାଳୀ ନା ପଦ୍ମଫୁଲର ସେ ଟୋକେଇ । ଲୀଳାମୟଙ୍କର ଲୀଳା ରହସ୍ୟ ଭେଦ କରିବା ଥିଲା ତାଙ୍କ ମନବୁଦ୍ଧିର ଅଗମ୍ୟ ।



# ଗୁରୋର୍ବାକ୍ୟଂ ସଦା ସତ୍ୟଂ...

ସତ୍ୟ । ସତ୍ୟ କ'ଣ ? କ'ଣ ତା'ର ପରିଭାଷା ? କେହି କେହି କହନ୍ତି, ଦେଖିଲା ଜିନିଷକୁ ଦେଖିଲା ପରି ଏବଂ ଶୁଣିଲା ଜିନିଷକୁ ଶୁଣିଲା ପରି କହିବା ହିଁ ସତ୍ୟ । ଅର୍ଥାତ୍ ଯାହା ଦେଖିଥିବ ତାହାକୁ କୌଣସି ରଙ୍ଗ ବା ପୁଟ ନ ଦେଇ ଅବିକଳ ସେହିପରି କହିବା ହିଁ ସତ୍ୟ । କବି କହେ, ଯିଏ ଦେଖିଲା ତା'ର କହିବାର ଶକ୍ତି ନାହିଁ । ଆଉ ଯିଏ କହୁଛି, ସିଏ ଆଦୌ ଦେଖିନାହିଁ । ତେବେ କଥାଟା ସତ୍ୟ ବୋଲି କି ପ୍ରମାଣ ଅଛି ? କଥାର ତାତ୍ପର୍ଯ୍ୟ ହେଲା – ପ୍ରତ୍ୟେକ ଘଟଣାର ପ୍ରକୃତ ଦ୍ରଷ୍ଟା ହେଉଛି ଆଖି । ସେ ହିଁ ପ୍ରତ୍ୟକ୍ଷଦର୍ଶୀ ସାକ୍ଷୀ, କିନ୍ତୁ ସେ ବଚନରହିତ... କଥା କହିପାରିବ ନାହିଁ । ଅନ୍ୟପକ୍ଷରେ ଘଟଣାର ବର୍ଣ୍ଣନାକାରୀ ହେଉଛି ପାଟି ବା ତୁଣ୍ଡ, ଯିଏ କିଛି ଦେଖିନାହିଁ ବା ଯାହାର ଦେଖିବାର ଶକ୍ତି ହିଁ ନାହିଁ । ତେବେ ସତ୍ୟ ପ୍ରତିପାଦିତ ହେବ କିପରି ? କିଏ କରିବ ସେ କାର୍ଯ୍ୟ ।

କେହି କରିବା ଦରକାର ନାହିଁ । ଶାସ୍ତ୍ର କହେ ସତ୍ୟ ସ୍ୱପ୍ରକାଶ । ସାତ ତାଳ ପଙ୍କ ଭିତରେ ଲୁଚାଇ ରଖିଲେ ବି ସତ୍ୟ ସ୍ୱତଃ ପ୍ରକାଶିତ ହୁଏ । ସମୟ ଆସିଲେ ସେହି ପଙ୍କ ଭିତରୁ ଫୁଟି ବାହାରେ । ସତ୍ୟକୁ ଢାଙ୍କି ରଖିବାର ସକଳ ପ୍ରୟାସ ନିଷ୍ଫଳ ହୁଏ । ସୁତରାଂ ଆବଶ୍ୟକତା ଅଛି କେବଳ ସେହି ଉପଯୁକ୍ତ ସମୟକୁ ଅପେକ୍ଷା କରିବାର... ଆବଶ୍ୟକତା ଅଛି ସତ୍ୟ ଉପରେ ଅଖଣ୍ଡ ବିଶ୍ୱାସ ରଖିବାର । ହେଲେ ବିନା ପ୍ରମାଣରେ କ'ଣ ବିଶ୍ୱାସ ଆସେ ? କିଛି ନ ଜାଣି କ'ଣ କାହା ଉପରେ ବିଶ୍ୱାସ କରିହୁଏ ? ହଁ, ସତକଥା । ବାହ୍ୟ ଜଗତରେ ଏହା ଷୋଳଣା ଠିକ୍ । ଆଖି ବୁଜି ଯାହାକୁ ପାରେ ତାକୁ ବିଶ୍ୱାସ କଲେ ଠକେଇ ହେବାର ଅନେକ ସମ୍ଭବନା ଅଛି । କିନ୍ତୁ ଅଧ୍ୟାତ୍ମ ରାଜ୍ୟର କଥା ସମ୍ପୂର୍ଣ୍ଣ ଭିନ୍ନ । ସେ ରାଜ୍ୟରେ ଶାସ୍ତ୍ରବାଣୀ ଓ ଗୁରୁବାକ୍ୟକୁ ସତ୍ୟ ଭାବରେ ଗ୍ରହଣ କରାଯାଏ । କାରଣ ତାହା ବହୁ ପରୀକ୍ଷିତ... ଅନୁଭବ ସିଦ୍ଧ ସିଦ୍ଧାନ୍ତର ମର୍ମବାଣୀ । ତଥାପି ଠାକୁର କହିଲେ – ଗୁରୁ ଗ୍ରହଣ କରିବା ପୂର୍ବରୁ ହଜାରେ ଅବିଶ୍ୱାସ କର, ହଜାରେ ପରୀକ୍ଷା କର । ସେଥିକି ମନା ନାହିଁ; କିନ୍ତୁ ଗୁରୁ ଗ୍ରହଣ କଲା ପରେ ଆଉ ନୁହେଁ । ଗୁରୁ ରୂପେ ବରଣ କଲା ପରେ ଆଉ ସନ୍ଦେହ ବା ଅବିଶ୍ୱାସର ସ୍ଥାନ ନାହିଁ । ତେଣିକି ତାଙ୍କ ଉପରେ କେବଳ ଦୃଢ଼

ବିଶ୍ୱାସ ସ୍ଥାପନ କରି ଅଗ୍ରସର ହେବାର କଥା । ଯେମିତି ପରୀକ୍ଷା କରିଥିଲେ ଶ୍ରୀରାମକୃଷ୍ଣଙ୍କୁ ଯୁବକ ନରେନ୍ଦ୍ରନାଥ, ସ୍ୱାମୀ ବିବେକାନନ୍ଦ ହେବା ପୂର୍ବରୁ ।

ତେବେ ସତ୍ୟର ସ୍ୱରୂପ କ'ଣ ? ସତ୍ୟ ନିତ୍ୟ... ସତ୍ୟ ଶାଶ୍ୱତ... ସତ୍ୟ ସନାତନ । ସତ୍ୟ ଅପରିବର୍ତ୍ତନୀୟ... ସତ୍ୟ ଅବିନାଶୀ । ଜଗତର ସବୁକିଛି ପରିବର୍ତ୍ତନଶୀଳ କେବଳ ସତ୍ୟକୁ ଛାଡ଼ି । ତେଣୁ ଜଗତ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ କହିଲେ– "ବ୍ରହ୍ମ ସତ୍ୟଂ ଜଗତ୍ ମିଥ୍ୟା ।" ସତ୍ୟ ସ୍ୱରୂପ ସେହି ପରମତତ୍ତ୍ୱ ପରଂବ୍ରହ୍ମ, ପରମାତ୍ମା ବା ଭଗବାନଙ୍କୁ ଲାଭ କରିବାକୁ ହେଲେ ସତ୍ୟକୁ ହିଁ ଆଶ୍ରୟ କରିବାକୁ ପଡ଼ିବ ବୋଲି ସମସ୍ତ ଶାସ୍ତ୍ରପୁରାଣ, ବେଦ ଉପନିଷଦ ଓ ସାଧୁ ସନ୍ଥ ମହାପୁରୁଷ ବକ୍ର ଘୋଷଣା କରି ଯାଇଛନ୍ତି । ସତ୍ୟ ଉପରେ ଗୁରୁତ୍ୱାରୋପ କରି ଠାକୁରେ ମଧ ଲେଖିଛନ୍ତି–

ସତ୍ୟ କହ ତୁ ନିତ୍ୟ ତୁଣ୍ଡେ, କେବେ ହେଁ ନ ରହ ପାଷାଣ୍ଡେ ।
ସତ୍ୟକୁ ପୁତ୍ର ପ୍ରାୟେ ମଣ, ସତ୍ୟକୁ ଦିନ ଚୁମ୍ବଦାନ ।
ସତ୍ୟକୁ କୋଳେ ଥାଅ ଧରି, ସତ୍ୟକୁ ଧରି ଭଜ ହରି ।
ନିତ୍ୟ ତୁ କର ସତ୍ୟ ହିତ, ହସି କହନ୍ତି ଶଚୀ ସୁତ ।
ସତ୍ୟରେ ନିତ୍ୟ କର ଧ୍ୟାନ, ତେବେ ଦେଖିବୁ ଭଗବାନ ।

× × ×

ସତ୍ୟ ଅନନ୍ତ ନାମ ମୋର, ସତ୍ୟେ କରଇ କାରବାର ।
ସତ୍ୟକୁ ଧରିଥିବ ଯେହି, ତାଙ୍କୁ ତାରିବି ନିଶ୍ଚେ ମୁହିଁ ।

(କଳି ଭାଗବତ)

ଉପରୋକ୍ତ ପଦାବଳୀକୁ ଅନୁଧ୍ୟାନ କଲେ ଏତିକି ସ୍ପଷ୍ଟ ହୁଏ ଯେ ଠାକୁରେ କେବଳ ସତ୍ୟକୁ ଆଶ୍ରୟ କରି ଜୀବନଯାପନ କରିବାକୁ ନିର୍ଦ୍ଦେଶ ଦେଇ ନାହାନ୍ତି, ସତ୍ୟାଶ୍ରୟୀ ଭକ୍ତକୁ ଯେ ସେ ନିଶ୍ଚୟ ଏ ତ୍ରିତାପ ପୀଡ଼ିତ ଭବସାଗରରୁ ଉଦ୍ଧାର କରିବେ, ତା'ର ଏକ ନିର୍ଭର ପ୍ରତିଶ୍ରୁତି ପ୍ରଦାନ କରିଛନ୍ତି । ନିଷ୍ପତ୍ତି ଏବେ ଆମ ହାତରେ – କେଉଁ ମାର୍ଗରେ ଆମେ ଯିବା । ସତ୍ୟ ଧର୍ମର ପ୍ରଶସ୍ତ ପଥରେ ନା ମିଛମାୟାର କର୍ଦ୍ଦମାକ୍ତ ପଥରେ । ଦିବ୍ୟାଲୋକରେ ଉଦ୍ଭାସିତ ଉଜ୍ଜ୍ୱଳ ପଥରେ ନା ଘନ ଅନ୍ଧକାରର କଣ୍ଟକିତ ପଥରେ । ଚିରଶାନ୍ତିର ଆନନ୍ଦମୟ ପଥରେ ନା ବିପଦସଙ୍କୁଳ, ଭୟଙ୍କର ପଥରେ । ଆମର ନିଷ୍ପତ୍ତି ଯଦି ନିର୍ଭୁଲ ଏବଂ ଆମର ଚୟନ ପ୍ରକ୍ରିୟା ଯଦି ତ୍ରୁଟିଶୂନ୍ୟ, ତେବେ ବୁଝିବାକୁ ହେବ ଯେ ଶ୍ରୀ ଶ୍ରୀ ଠାକୁର, ଯାହାଙ୍କ ଶ୍ରୀଚରଣରେ ଆମେ ଆଶ୍ରୟ ନେଇଛନ୍ତି, ସେ ନିଶ୍ଚୟ ତାଙ୍କର ପ୍ରତିଶ୍ରୁତି ରକ୍ଷା କରିବେ ।

କଥା ପ୍ରସଙ୍ଗରେ ଆମର ବାବାମାନେ ପ୍ରାୟ କହନ୍ତି– ଠାକୁର ସତ୍ୟ, ତାଙ୍କର ନାମ ସତ୍ୟ ଓ ତାଙ୍କର ଧାମ ସତ୍ୟ । ତା' ତ ଠିକ୍ । କିନ୍ତୁ ତା' ଭିତରେ ଆଉ ଯେଉଁ ଦୁଇଟି ସତ୍ୟ ଉହ୍ୟ ରହିଗଲା, ତାହା ହେଉଛ ଠାକୁରଙ୍କ ବାଣୀ ବା ବାକ୍ୟ ଓ ଠାକୁରଙ୍କ ଲୀଳା । ଏଥର ଆସନ୍ତୁ ଶୁଣିବା, ସେହି ସତ୍ୟକୁ ପ୍ରତିପାଦିତ କରୁଥିବା ପୂଜ୍ୟ ଶାନ୍ତି ବାବାଙ୍କ ଜୀବନର ଏକ ଅନନ୍ୟ ଅନୁଭୂତି ।

କାହ୍ନୁବାବା ଆଶ୍ରମରେ ଥିଲାବେଳେ ଠାକୁରେ ତାଙ୍କୁ ଗୋଟିଏ ସେବା ଦେଇଥାନ୍ତି । ଆଶ୍ରମରେ ଯେଉଁ କେତୋଟି କାନ୍ଥଘଣ୍ଟା ଥାଏ, ସେଗୁଡ଼ିକରେ ସେ ପ୍ରତିଦିନ ଚାବି ଦିଅନ୍ତି । ଥରେ ସେ କୌଣସି କାମରେ କଟକ ଯାଇଥାନ୍ତି । ଆଉ ସେବାର ଦାୟିତ୍ୱ ନ୍ୟସ୍ତ କରିଥାନ୍ତି ଶାନ୍ତିବାବାଙ୍କ ଉପରେ । ବାବାଙ୍କ ଅନୁପସ୍ଥିତିରେ ଶାନ୍ତିବାବା ମଧ୍ୟ ଠିକ୍ ଠିକ୍ ଦାୟିତ୍ୱ ତୁଲାଉଥାନ୍ତି । ସେତେବେଳେ ତ ଶାନ୍ତିବାବା ପିଲା । ଅଠର ବର୍ଷରେ ସିନା ବାବାଜୀ ହେଲେ; କିନ୍ତୁ ଆଶ୍ରମ ଜୀବନ କାଟୁଥାନ୍ତି ପ୍ରାୟ ଦଶ / ବାର ବର୍ଷ ବୟସରୁ ପିତାମାତାଙ୍କ ସହିତ । ତେଣୁ ବାଳକ ସୁଲଭ ଚପଳତା ଥାଏ । ତଳମହଲା ଘଣ୍ଟାରେ ଚାବି ଦେଲା ପରେ ବାବା ସିଡ଼ି ବାଟେ ଧାଇଁ ଧାଇଁ ଉଠିଗଲେ ଉପରକୁ । ତାଙ୍କର ଧାରଣା ନାହିଁ ଯେ ଠାକୁରେ ଉପର ମହଲାରେ ଅଛନ୍ତି ବୋଲି । ଦେଖିଲା ବେଳକୁ ଠାକୁରେ ଚୌକିରେ ବସିଛନ୍ତି । କୃଷ୍ଣା ମା', ପାଞ୍ଚାଳୀ ମା' ଓ ଆଉ ଦୁଇ ତିନିଜଣ ମା' ଟେବୁଲ ପାଖରେ ଛିଡ଼ା ହୋଇଛନ୍ତି ।

ଠାକୁରଙ୍କୁ ଦେଖି ବାବା ପୁଣି ଧାଇଁ ଧାଇଁ ତଳକୁ ଚାଲି ଆସିଲେ । ଏ ଭିତରେ ଠାକୁରଙ୍କର ନଜର ତାଙ୍କ ଉପରେ ପଡ଼ି ଯାଇଛି । କୃଷ୍ଣା ମା'ଙ୍କୁ କହିଲେ– ଦେଖିଲୁ ପିଲାଟା କାହିଁକି ଆସିଥିଲା, ପଳାଇଲା ?

ଡାକରା ପାଇ ଶାନ୍ତିବାବା ଉପରକୁ ଗଲେ । ପ୍ରଣାମ କରିସାରି ଉଠି ଠିଆ ହେଲେ । ଠାକୁର ପଚାରିଲେ – କ'ଣ କିଛି କାମ ଥିଲା କି ?

ଶାନ୍ତିବାବା – ଆଜ୍ଞା ହଁ, ଘଣ୍ଟାରେ ଚାବି ଦେବାକୁ ଆସିଥିଲି ।

ଠାକୁର – ଆଉ ପଳାଇଲୁ କାହିଁକି ?

ଶାନ୍ତିବାବା – ଭୟ ଲାଗିଲା ।

ଠାକୁର – ହଉ ଯା, ଚାବି ଦେଇ ଦେ ।

ଠାକୁରଙ୍କ ଅନନ୍ତ ଶୟନ ପଲଙ୍କ ଓ ଟେବୁଲ ମଝିରେ ଯେଉଁ ଫାଙ୍କ ଥାଏ, ସେଇବାଟେ ଗଲେ ଯାଇଁ ଆରପାଖ କାନ୍ଥରେ ଥିବା ଘଣ୍ଟାରେ ସେ ଚାବି ଦେବେ । ସେଠି ଛିଡ଼ା ହୋଇଥିବା ମା'ମାନେ ବାଟ ଛାଡ଼ିଦେଲେ । ହାତ ତ ପାଉ ନ ଥାଏ । ବାବା ଆରପଟକୁ ଯାଇ ଗୋଟିଏ ଚୌକି ଉପରେ ଚଢ଼ି ଘଣ୍ଟାରେ ଚାବି ଦେଲେ ।

ଶାନ୍ତିବାବାଙ୍କ କାନରେ ପଡୁଥାଏ । ଆଶ୍ରମ ହତାକୁ ଲାଗିଥିବା ଖଣ୍ଡିଏ ଜମି ଆଶ୍ରମ

ପାଇଁ କିଣିବାର ଯୋଜନା ଚାଲିଥାଏ । ଠାକୁର କହିଲେ– ସେ ଜମିଟା ଶାନ୍ତିବାବାଙ୍କ ନାଁରେ କରିଦେବା । ବାବା କିଛି ବୁଝି ପାରୁ ନ ଥାନ୍ତି । କିନ୍ତୁ କୃଷ୍ଣା ମା' ପ୍ରତିବାଦ କରି କହିଲେ– ଶାନ୍ତିବାବାଙ୍କ ତ ଛୋଟ ପିଲାଟେ, ତା' ନାଁରେ କ'ଣ ଜମି କିଣିବା ?

ଠାକୁର ଟିକିଏ ଗମ୍ଭୀର ହୋଇଗଲେ । ପ୍ରସ୍ତାବ ସେତିକିରେ ରହିଲା । ଶାନ୍ତିବାବା ଘଣ୍ଟାରେ ଚାବି ଦେଇସାରି ତଳକୁ ଚାଲିଆସିଲେ । ଏ ଥିଲା ୧୯୬୦ ମସିହାର ଘଟଣା । କାଳକ୍ରମେ ସବୁକଥା ଭୁଲିଗଲେ ଶାନ୍ତିବାବା ।

ଏ ଭିତରେ ଦୀର୍ଘ ଚାଳିଶି ବର୍ଷ ବିତିଗଲା । ଏଇ ଚାଳିଶି ବର୍ଷର ଘଟଣା ପ୍ରବାହରେ ପିତାମାତାଙ୍କ ଏକମାତ୍ର ପୁତ୍ର ସନ୍ତାନ ଭାବରେ ଶେଷ ଜୀବନରେ ତାଙ୍କର ସେବା ପାଇଁ ଠାକୁରଙ୍କ ନିର୍ଦ୍ଦେଶରେ ଶାନ୍ତିବାବାଙ୍କ ସନ୍ନ୍ୟାସ ପରିଛଦ ପରିତ୍ୟାଗ ପୂର୍ବକ ଗୃହକୁ ପ୍ରତ୍ୟାବର୍ତ୍ତନ, ଶ୍ରୀ ଶ୍ରୀ ଠାକୁରଙ୍କ ସ୍ଥୂଳଲୀଳାର ଅବସାନ, କେନ୍ଦ୍ର ସରକାରଙ୍କ ଅଧୀନରେ ଚାକିରୀ, ପିତାମାତାଙ୍କ ସନ୍ନ୍ୟାସ ଭେକ ଗ୍ରହଣ ପୂର୍ବକ ତିରୋଧାନ, ଚାକିରୀରୁ ଅବସର ଓ ପୁନର୍ବାର ସନ୍ନ୍ୟାସ ଗ୍ରହଣ ଭଳି ଅନେକ ଘଟଣା ଘଟିଗଲା ।

ଏଇଠି ବେଶ୍ ଲକ୍ଷ୍ୟ କରିବାର କଥା ଯେ ଗୁରୁଗତ ପ୍ରାଣ ଶାନ୍ତିବାବା ଗୈରିକ ବସ୍ତ୍ର ତ୍ୟାଗକରି ଶୁକ୍ଳବସ୍ତ୍ର ପରିଧାନ କଲେ ସିନା, କିନ୍ତୁ ଠାକୁରଙ୍କ ରଙ୍ଗରେ ରଞ୍ଜିତ ତାଙ୍କର ଦେହ ମନ ରହିଲା ଠିକ୍ ପୂର୍ବ ପରି । ସେଥିରେ ଦାଗ ଲାଗିବା ପାଇଁ ଦେଲେନି ସିଏ । ତାଙ୍କର ଜୀବନଚର୍ଯ୍ୟା, ନୀତିକାନ୍ତି ବା ଚାଲିଚଳନରେ କୌଣସି ପରିବର୍ତ୍ତନ ଘଟିଲା ନାହିଁ । ଯାହା ଜଣେ ନୈଷ୍ଠିକ ସନ୍ନ୍ୟାସୀର ଜୀବନଠାରୁ କୌଣସି ଗୁଣରେ କମ୍ ନ ଥିଲା । ସେଇଥିପାଇଁ ତ ସେ ତାଙ୍କ ଅଫିସ୍‌ରେ ପାଉଥିଲେ ଜଣେ ସନ୍ନ୍ୟାସୀର ମର୍ଯ୍ୟାଦା । ତାଙ୍କ ଜୀବନରୁ ଅନେକ କିଛି ଶିଖିବାର ଅଛି ଆମ ସମସ୍ତଙ୍କର । ତେଣିକି ଆମେ ଯେଉଁଠି ଥାଉନା କାହିଁକି, ଗୃହସ୍ଥାଶ୍ରମରେ ଶିଷ୍ୟଭକ୍ତ ଭାବରେ ବା ସନ୍ନ୍ୟାସୀ ଆଶ୍ରମରେ ସାଧୁ ବା ବ୍ରହ୍ମଚାରୀ ଭାବରେ ।

× × ×

୨୦୦୦ ମସିହା । ସେତେବେଳକୁ ଶ୍ରୀ ଅଭିରାମ ସେବା ସଂଘ ଗଢ଼ା ହେଲାଣି । ସମ୍ପାଦକ ଥା'ନ୍ତି ଶେଷାନନ ବାବା । କୋଷାଧ୍ୟକ୍ଷ ଥାଆନ୍ତି ଶାନ୍ତିବାବା । ଶାନ୍ତିବାବା ରହୁଥାନ୍ତି ଠାକୁରଙ୍କର ଖଣ୍ଡଗିରି ଆଶ୍ରମରେ । କଥା ସ୍ଥିର ହେଲା ସେହି ନିର୍ଦ୍ଦିଷ୍ଟ ଜମି, ଯାହା ସ୍ନାନ ପୋଖରୀ ପୂର୍ବପଟ ହୁଡ଼ାକୁ ଲାଗିଛି ଏବଂ ଏବେ ଯେଉଁଠି ଭକ୍ତମାନଙ୍କ ପାଇଁ ପାଇଖାନା ତିଆରି ହେବା ସଙ୍ଗେ ସଙ୍ଗେ କଦଳୀ ବଗିଚା ଅଛି ଓ ଅନ୍ୟାନ୍ୟ ପନିପରିବା ଚାଷ ହେଉଛି, ତାହା ଶେଷାନନ ବାବାଙ୍କ ନାମରେ କିଣା ହେବ ।

ଦିନବାର ଧାର୍ଯ୍ୟ ହେଲା । କବଲା କରିବାକୁ ଯିବା ପୂର୍ବରୁ ଶେଷାନନ ବାବା ଖବର ଦେଲେ ଶାନ୍ତିବାବାଙ୍କୁ– ବାବା ! ଆପଣ ଟିକିଏ ଆଶ୍ରମ (କରମଳା)କୁ ଆସନ୍ତୁ । ମୁଁ ସିନା ଓଡ଼ିଆ ବହି ବା ଛାପା ଅକ୍ଷର ପଢ଼ି ଦେଉଛି । ହେଲେ କବଲାର ହାତଲେଖା ଅକ୍ଷର ଠିକ୍ ଭାବରେ ପଢ଼ିପାରିବିନି । (ଶେଷାନନ ବାବାଙ୍କ ମାତୃଭାଷା ତେଲୁଗୁ) ଆପଣ ଆସିଲେ ସେ ଲେଖା ପଢ଼ି ମୋତେ ଶୁଣାଇବେ ଓ ମୁଁ ସେଥିରେ ଦସ୍ତଖତ କରିଦେବି ।

ନିର୍ଦ୍ଦିଷ୍ଟ ସମୟରେ ଶାନ୍ତିବାବା ଆସି ଶାନ୍ତିଧାମରେ ପହଞ୍ଚିଲେ । ଆଶ୍ରମ ଜିପ୍ କଣାସ ଯିବା ପାଇଁ ପ୍ରସ୍ତୁତ । ଶାନ୍ତିବାବା ପହଞ୍ଚିବାର ଅଳ୍ପ ସମୟ ପରେ ପୁଣି ଯିବାକୁ ବାହାରିବାର ଦେଖି କେତେକ ଯୁବକ ସନ୍ନ୍ୟାସୀ ପଚାରିଲେ – କ'ଣ ବାବା ! ଆପଣ ଆଶ୍ରମରେ ଆସି ପହଞ୍ଚିଛନ୍ତି କି ନାହିଁ ପୁଣି କୁଆଡ଼େ ବାହାରିଲେଣି ?

ବାବା ସବୁକଥା କହିଲେ । ସେମାନେ ପୂର୍ବରୁ ଏକଥା ଜାଣି ନ ଥିଲେ । ଜାଣିଲା ପରେ ସମସ୍ତେ ଏହାର ପ୍ରତିବାଦ କଲେ ଓ ପ୍ରସ୍ତାବ ଦେଲେ ଶେଷାନନ ବାବାଙ୍କ ବଦଳରେ ଶାନ୍ତିବାବାଙ୍କ ନାମରେ ଜମି କିଣିବାକୁ । ଆଚାର୍ଯ୍ୟ ଅର୍ଜୁନ ବାବା ନିକଟରେ ବସିଥାନ୍ତି । ଶେଷାନନ ବାବା ଫାଇଲ୍ ଆଣିବାକୁ ଯାଇଥାନ୍ତି ତାଙ୍କ ବସାଘରକୁ । ଆସିଲା ପରେ କଣାସ ଯିବାର କଥା ଜମି ରେଜିଷ୍ଟ୍ରି ପାଇଁ । ଇତିମଧ୍ୟରେ ଘଟଣା ସମ୍ପୂର୍ଣ୍ଣ ଓଲଟ ପାଲଟ ହୋଇ ଯାଇଥିଲା ।

ଆଚାର୍ଯ୍ୟ, ଶେଷାନନ ବାବାଙ୍କୁ ଡାକି କହିଲେ– ଦେଖ ସମସ୍ତେ କହୁଛନ୍ତି, ଶାନ୍ତିବାବାଙ୍କ ନାମରେ ଜମି କିଣାଯାଉ । ତେଣୁ ତମେ ଆଉ କାହିଁକି ଯିବ ?... ନା କ'ଣ କହୁଛ ?

"ଏ ତ ଅତି ଆନନ୍ଦର କଥା । ମୁଁ ଆଉ କ'ଣ କହିବି ?" – ଏତକ କହି ସେ ଫାଇଲ୍‌ଟି ଶାନ୍ତିବାବାଙ୍କ ହାତକୁ ବଢ଼ାଇଦେଲେ ।

ଜିପ୍‌ରେ ବସିଲେ ଶାନ୍ତିବାବା । ଅନ୍ୟମାନେ ବି ବସିଲେ । ହେଲେ ବାବାଙ୍କ ଭିତରେ ଉଠିଲା ଦୀର୍ଘ ଚାଳିଶି ବର୍ଷ ତଳର ସେଇ ସ୍ମୃତିର ଝଡ଼ । ଠାକୁରଙ୍କ ଇଚ୍ଛା କେମିତି ପୂରଣ ହୁଏ, ତାଙ୍କର ବାକ୍ୟ କିଭଳି ଅକାଟ୍ୟ ତାହା ଚିନ୍ତା କରି ସେ ଆତ୍ମବିଭୋର ହୋଇ ଉଠିଲେ । ପ୍ରେମାଶ୍ରୁର ଅବଗାହନରେ ଅନ୍ତର ତାଙ୍କର ସିକ୍ତ ହୋଇଗଲା । ଲୁଚାଇ ଲୁଚାଇ ଆଖିରୁ ଝରି ପଡ଼ିଥିବା କେତୋଟି ଲୋତକ ବିନ୍ଦୁକୁ ସେ ଲୁଗାକାନିରେ ପୋଛି ପକାଇଲେ । ହେଲେ ଠାକୁରଙ୍କର ଏ ଲୀଳା ପ୍ରକାଶ କରିପାରିଲେନି କାହାରି ଆଗରେ ।

କଣାସ ରେଜେଷ୍ଟ୍ରି ଖାନାରେ ବିକ୍ରେତା ଅବସରପ୍ରାପ୍ତ ପ୍ରଧାନଶିକ୍ଷକ ଶ୍ରୀ ଫକୀର ପଟ୍ଟନାୟକ ଯେତେବେଳେ ଜାଣିବାକୁ ପାଇଲେ ଯେ ତାଙ୍କର ପିଲାଦିନର ସାଥୀ ଶାନ୍ତିବାବାଙ୍କ ନାମରେ ସେ ଜମି ରେଜିଷ୍ଟ୍ରି କରିବାକୁ ଯାଉଛନ୍ତି, ସେତେବେଳେ ସେ ମଧ୍ୟ ଆନନ୍ଦରେ ଆତ୍ମହରା ହୋଇଉଠିଲେ ।

ଏଇ ତ ହେଉଛି ଶ୍ରୀ ଶ୍ରୀ ଠାକୁରଙ୍କ ବାଣୀର ମହତ୍ତ୍ୱ । ଯେତେବେଳେ ଯେଉଁଠି ଯାହା ସିଏ କହି ଦେଇଛନ୍ତି, ତାହା ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହୋଇଛି ! ସେ ସତ୍ୟସ୍ୱରୂପ, ସତ୍ୟଦ୍ରଷ୍ଟା, ସତ୍ୟ ନାରାୟଣ ! ତାଙ୍କଠାରେ ଯିଏ ବିଶ୍ୱାସ ସ୍ଥାପନ କରିଛି, ଅକପଟ ହୃଦୟରେ ନିଜକୁ ସମର୍ପଣ କରିଛି, ସିଏ ଅନୁଭବ କରିଛି ତାଙ୍କ ଲୀଳାର ମାହାତ୍ମ୍ୟ ।



# ଚୈତନ୍ୟ ଚନ୍ଦ୍ର ବୈଦ୍ୟ ଯା'ର...

୧୯୮୦ ମସିହାର ଘଟଣା । ଆଳି ବାଙ୍କେଶ୍ୱରର ଭକ୍ତ ଶ୍ରୀ ଶରତ ଚନ୍ଦ୍ର ମହାନ୍ତି ରାଉରକେଲା ସାର ନଗରୀର କନ୍‌ଷ୍ଟ୍ରକ୍‌ସନ୍ କଲୋନୀରେ ରହୁଥାନ୍ତି ସପରିବାର । ପତ୍ନୀ ଶାନ୍ତିଙ୍କର ଦ୍ୱିତୀୟ ଗର୍ଭ ସନ୍ତାନ ଜନ୍ମ ହେବାକୁ ଥାଏ । ତିନି ଚାରିମାସ ଧରି ଯନ୍ତ୍ରଣା ଲାଗି ରହିଲା । ଚିକିତ୍ସାରେ ଅବହେଳା ନାହିଁ । କିନ୍ତୁ ଯନ୍ତ୍ରଣା ଉପଶମ ହେବାର ନାଁ ଧରୁ ନ ଥାଏ । ଠିକ୍ ଏତିକିବେଳେ ଧରିଲା ମେଲେରିଆ ଜ୍ୱର ଶରତବାବୁଙ୍କୁ । ବଡ଼ପୁଅର ବୟସ ସେତେବେଳେ ମାତ୍ର ତିନିବର୍ଷ । ତାକୁ ଛାଡ଼ିଦେଲେ ଘରେ ଆଉ କେହି ବଡ଼ ମଣିଷ ନ ଥାନ୍ତି । କିଏ ବା ଏମାନଙ୍କ କଥା ବୁଝିବ ? ଖବର ପାଇ ଗାଁରୁ ବୁଢ଼ୀ ମା ଆସି ପହଞ୍ଚିଲା । ଦେଖିଲା, ଗୋଟିଏ ଖଟରେ ବୋହୂ ଛଟପଟ ହେଉଛି । ଆଉ ଆର ଖଟରେ ପୁଅ । ଜ୍ୱର ୧୦୩/୧୦୪ ଡିଗ୍ରୀରୁ କେତେବେଳେ ହେଲେ କମୁନି । ଚାରି, ପାଞ୍ଚ ଦିନର ଜ୍ୱର ତାଙ୍କର ଅଣ୍ଟା ଭାଙ୍ଗିଦେଲାଣି । ବୁଦ୍ଧି ଦିଶିଲା ନାହିଁ ବୁଢ଼ୀକୁ । ବିଦେଶ ଜାଗା । କାହାକୁ ଚିହ୍ନିଛି ଯେ କହିବ ? ଧାଇଁଗଲା ପଡ଼ିଶା ଘରକୁ । କହିଲା, ପୁଅ ! ଟିକେ ଆସିଲ ଦେଖିବ । ପୁଅ ବୋହୂ ଦି'ଟା ଖଟରେ ପଡ଼ିଛନ୍ତି । ମୁଁ ଏବେ ବୁଢ଼ୀ ମଣିଷଟା କ'ଣ କରିବି କହିଲ ? ସ୍ୱାମୀ ସ୍ତ୍ରୀ ଉଭୟ କହିଲେ, ମାଉସୀ ! ତମେ ଜମା ବ୍ୟସ୍ତ ହୁଅନି । ଆମେ ଯାଉଛୁ ଦେଖିବୁ ଏବଂ ସଙ୍ଗେ ସଙ୍ଗେ ଧାଇଁ ଆସିଲେ ଶରତ ବାବୁଙ୍କ ଘରକୁ । ଖବର ଦେଲେ ସରୋଜିନୀ ଦିଦିଙ୍କୁ (ଚୌଧୁରୀ ସରୋଜିନୀ ପଟ୍ଟନାୟକ), ଯିଏ କି ନିକଟସ୍ଥ ଡାକ୍ତରଖାନାରେ ଷ୍ଟାଫ୍ ନର୍ସ ଭାବେ କାମ କରୁଥିଲେ ଓ ସେଇ ଘର ସାମନାରେ ରହୁଥିଲେ ।

ଆମ୍ବୁଲାନ୍‌ସ ମଗାଇ ସେ ସଙ୍ଗେ ସଙ୍ଗେ ଶାନ୍ତିଙ୍କୁ ଡାକ୍ତରଖାନା ନେବାର ବ୍ୟବସ୍ଥା କଲେ । ହେଲେ ଶରତବାବୁ ନିଜ ଜିଦ୍‌ରେ ଅଟଳ । ସିଏ ଡାକ୍ତରଖାନା ଯିବେ ନାହିଁ କି ଔଷଧ ଖାଇବେ ନାହିଁ । ହେଲେ ଏମିତି ଅବୁଝା ହେଲେ ଚଳିବ କେମିତି ? "ହଉ ହେଲା, ଡାକ୍ତରଖାନା ନ ଗଲେ ନାହିଁ, ମୁଁ ଔଷଧ ଆଣି ଦେଉଛି, ଖାଆନ୍ତୁ ।" –କହିଲେ ସରୋଜିନୀ ଦିଦି ।

ତେଣେ ଡାକ୍ତର ଦେଖିଲେ ଶାନ୍ତିଙ୍କର ଅବସ୍ଥା ବେଳକୁ ବେଳ ଜଟିଳ ହେବାରେ ଲାଗିଛି । ନଅ ମାସର ଗର୍ଭ । ଡାକ୍ତରୀ ପାଠ ଅନୁସାରେ ପ୍ରସବ ବେଳ ଆସନ୍ନ । ମାତ୍ର

ପେଟରେ ଅସହ୍ୟ ଯନ୍ତ୍ରଣା । ତେବେ ଯାହାହେଉ ଠାକୁରଙ୍କ କୃପାରୁ ଭୂମିଷ୍ଠ ହେଲା ଏକ ପୁତ୍ର ସନ୍ତାନ । କିନ୍ତୁ ଏ କ'ଣ ? ପିଲାଟା କ'ଣ ଜମା କାନ୍ଦୁନି ? ହଲଚଲ୍ ନାହିଁ । ଦେଖିଲା ବେଳକୁ କ'ଣ ନା, ମଲା ଛୁଆଟା । ମା' ପେଟରୁ ମରିଯାଇଛି କେବେଠାରୁ । "ଆହା" ! ବିଚାରୀ ମା'ଟା କେତେ କଷ୍ଟ ପାଇଲା ଯା ପାଇଁ! ପରସ୍ପର ଭିତରେ କଥା ହେଲେ ନର୍ସମାନେ ।

ସଂଜ୍ଞାହୀନ ମା' ଶାନ୍ତିର କିନ୍ତୁ ଚେତା ଫେରି ନ ଥିଲା ସେତେବେଳଯାଏଁ । ଏ ଦୁଃସମ୍ବାଦ ତାକୁ ପ୍ରଦାନ କରିବାକୁ ଉଚିତ ମଣି ନ ଥିଲେ ସେମାନେ ।

ପିଲା ଜନ୍ମ ହେଲା ପରେ ବି ଯେତେବେଳେ ଗର୍ଭ ଯନ୍ତ୍ରଣା ଉପଶମ ହେଲା ନାହିଁ, ସେଠାକାର ଡାକ୍ତର ଆଉ ଅଧିକ ଜଟିଳତାର ଆଶଙ୍କା କରି ତାଙ୍କୁ ପଠାଇଦେଲେ ରାଉରକେଲା ଇସ୍ପାତ୍ କାରଖାନାର ସବୁଠାରୁ ବଡ଼ ଡାକ୍ତରଖାନା ଯାହା ଆଇ.ଜି.ଏଚ୍ ନାମରେ ପରିଚିତ ଓ ଯେଉଁଠି ସମସ୍ତ ପ୍ରକାର ଉନ୍ନତ ଚିକିତ୍ସା ଓ ଅତ୍ୟାଧୁନିକ ଯନ୍ତ୍ରପାତି ଉପଲବ୍ଧ ।

ସେଠାରେ ଶାନ୍ତି ଜନ୍ମ ଦେଲେ ଆଉ ଏକ କନ୍ୟା ସନ୍ତାନକୁ ଯିଏ ଅଳ୍ପ ସମୟ ପରେ ଆଖି ବୁଜିଦେଲା ଦୁନିଆକୁ ଦେଖିବା ପୂର୍ବରୁ ।

ବିପଦ ଏଥର ଟଳିଗଲା ଶାନ୍ତିଙ୍କ ମୁଣ୍ଡ ଉପରୁ । କ୍ରମଶଃ ସୁସ୍ଥ ହେବାକୁ ଲାଗିଲେ ସିଏ ।

ବିପଦ ଏଥର ଟଳିଗଲା ଶାନ୍ତିଙ୍କ ଉପରୁ । କ୍ରମଶଃ ସୁସ୍ଥ ହେବାକୁ ଲାଗିଲେ ସିଏ ।

ଆଉ ଅନ୍ୟ ପକ୍ଷରେ ଘରେ ଜ୍ୱରରେ କମ୍ପୁଥିଲେ ଶରତବାବୁ । ଠାକୁର ସିନା ଲେଖିଛନ୍ତି, "ଚୈତନ୍ୟ ଚନ୍ଦ୍ର ବୈଦ୍ୟ ଯା'ର, ଔଷଧ କି ହୋଇବ ତା'ର"; ହେଲେ ଶରୀର ଅସୁସ୍ଥ ହେଲେ ବା ଦେହରେ କୌଣସି ରୋଗ ହେଲେ ତା'ର ପ୍ରତିକାର କରିବାକୁ ବା ଔଷଧ ଖାଇବାକୁ ସେ କାହାକୁ ମନା କରିନାହାନ୍ତି । ଠାକୁରଙ୍କ ଭକ୍ତ ମହଲରେ କିନ୍ତୁ ଏଭଳି କିଛି ଭକ୍ତ ଅଛନ୍ତି, ଯିଏ କିଛି ବୁଝନ୍ତିନି । ଯାହା ଥରେ ମୁଣ୍ଡରେ ପଶିଗଲା, ଗଲା । ଯେତେ ଯାହା କଲେ ବି ଆଉ ବାହାରିବାର ନାହିଁ । ତେଣିକି ପରିସ୍ଥିତି ଯାହା ହେଉନା କାହିଁକି ।

ସେତେବେଳକୁ ମେଲେରିଆର ଅବ୍ୟର୍ଥ ଔଷଧ କ୍ଲୋରୋକୁଇନ୍ ଡାକ୍ତରଖାନାରୁ ଆଣି ଦେଉଥାଆନ୍ତି ସରୋଜିନୀ ଦିଦି । ହେଲେ ଔଷଧ ନ ଖାଇଲେ ଜ୍ୱର ଛାଡ଼ିବ କେମିତି ? ଶରତ ବାବୁ ଔଷଧ ହାତରେ ଧରନ୍ତି । ପଚାରିଲେ ଖାଉଛନ୍ତି ବୋଲି କହନ୍ତି । କିନ୍ତୁ ପ୍ରକୃତରେ ଔଷଧ ଖାଆନ୍ତି ନାହିଁ । ସବୁ ରଖି ଦିଅନ୍ତି ତାଙ୍କର ତକିଆ ତଳେ । କାରଣ ଆଉ

କିଛି ନୁହେଁ । କାରଣ ହେଉଛି ଠାକୁରଙ୍କ ଉପରେ ଅଭିମାନ । ସେ କାହିଁକି ମା'କୁ କନ୍ଦାଇଲେ । ଆଉ ଯଦି କନ୍ଦାଇଲେ, ତେବେ ସେ ମରିଯିବେ ସିନା, ଔଷଧ ଖାଇବେ ନାହିଁ । ତେଣିକି କଳା ବୋଳାହେଲେ ଠାକୁରଙ୍କ ମୁହଁରେ ବୋଳା ହେବ ।

ସତରେ ଏ ଭକ୍ତମାନଙ୍କ କଥା ବେଳେବେଳେ ବଡ଼ ଅଜବ ଲାଗେ । ବୁଝି ହୁଏନା ସେମାନଙ୍କ କାରବାର । ମା' ବୁଢ଼ୀକୁ ଖାଇବା ପିଇବା କିଛି ରୁଚୁ ନ ଥାଏ । ଦିନରାତି ପାଖରେ ବସି ମୁଣ୍ଡ ଆଉଁସି ଦେଉଥାଏ । ଆଉ ବିକଳରେ ଖାଲି ଅଶ୍ରୁ ଝରାଉଥାଏ ଠାକୁରଙ୍କୁ ଚାହିଁ ।

ମା' ଆଖିର ଏହି ଲୁହକୁ କିନ୍ତୁ ସହିପାରନ୍ତି ନାହିଁ ମାତ୍ର ଏଗାର ବର୍ଷ ବୟସରେ ବାପାଙ୍କୁ ହରାଇଥିବା ଶରତବାବୁ ।

ସାମ୍ନା କାନ୍ଥରେ ରହିଥାନ୍ତି ଠାକୁରଙ୍କର ଏକ ସୌମ୍ୟକାନ୍ତ ପ୍ରତିମୂର୍ତ୍ତି । ଦୃଷ୍ଟିପଡ଼େ ଥରେ ମା'ଙ୍କ ଉପରେ ତ ଆଉ ଥରେ ଠାକୁରଙ୍କ ଉପରେ । ଧୀରେ ଧୀରେ ଦୃଷ୍ଟି ନିବଦ୍ଧ ହେଲା ଠାକୁରଙ୍କ ମୁଖମଣ୍ଡଳରେ । ଆହା କି ସୁନ୍ଦର ସେ ହସ । ସତେ ଯେମିତି ମୁକ୍ତା ଝରି ପଡୁଛି ସେ ହସରୁ । ଯେଉଁ ମନଲୋଭା ହସ ସାରା ଜଗତକୁ ବିମୋହିତ କରେ, ଯେଉଁ ହସ ସବୁରି ମୁହଁରେ ହସ ଫୁଟାଏ, ଯେଉଁ ହସ ଜନ୍ମ ଜନ୍ମାନ୍ତରର ଦୁଃଖ ହରଣ କରିନିଏ, ସିଏ ଆଜି ଅସହ୍ୟ ବୋଧ ହେଲା ଶରତବାବୁଙ୍କ ପାଇଁ । ମା'ର ମମତା ପାଖରେ ସେ ଅନ୍ଧ ହୋଇଗଲେ । ପ୍ରାଣ ପ୍ରିୟ ପ୍ରଭୁଙ୍କ ଓଠରେ ଉକୁଟି ଉଠୁଥିବା ହସର ଜୁଆର ତାଙ୍କୁ ଆହ୍ଲାଦିତ କରିବା ପରିବର୍ତ୍ତେ କଲା ବିଷଣ୍ଣ । ମା' ଆଖିର ଲୁହ ଆଗରେ ସେ ହସ ଯେମିତି ଫିକା ପଡ଼ିଗଲା – ତା'ର ସମସ୍ତ ଗୁରୁତ୍ୱ ହରାଇ ବସିଲା ଶରତ ବାବୁଙ୍କ ପାଇଁ । ଠାକୁରଙ୍କ ଆଡ଼କୁ ଆଉ ଚାହିଁବାକୁ ଇଚ୍ଛା ହେଲାନି । ମୁହଁ ବୁଲାଇ ନେଲେ ଅପର ପାର୍ଶ୍ୱକୁ । ହେଲେ ଏ ଅଭିମାନ, ଏ ଆଡ଼ରୁଷା କାହାର ରହିଛି ଯେ ଯାଙ୍କର ରହିବ ? ମୁହୂର୍ତ୍ତକ ପରେ ପୁଣି ମୁହଁ ବୁଲିଗଲା ସେଇ ରସିକ ଶେଖରଙ୍କ ଆଡ଼କୁ । ଦେଖିଲେ ଠାକୁରେ ହସୁଛନ୍ତି ଏବଂ ଖାଲି ହସୁଛନ୍ତି ନୁହେଁ, ଏଥର ଯେମିତି ଆଗ ଅପେକ୍ଷା ଆହୁରି ଅଧିକ ଜୋର୍‌ରେ ହସୁଛନ୍ତି ।

—କ'ଣ ହେଲା, ତମେ ପୁଣି ହସୁଛ ? କାହିଁକି ? କ'ଣ ପାଇଁ ? କୋଉ ଖୁସିରେ ?

ଅଭିମାନ କ୍ରମଶଃ ବଦଳିଗଲା ରାଗରେ । ଆଉ ରାଗିବା ଲୋକ ଆଗରେ ହସିଲେ ତା' ରାଗ ଯେମିତି ବଢ଼ିଯାଏ, ଶରତ ବାବୁଙ୍କ ରାଗ ସେମିତି ବଢ଼ିଗଲା ଠାକୁରଙ୍କ ହସ ଦେଖି । ତା'ପରେ ବର୍ଷଣ ହେଲା ଗାଳି । ମନର ରାଗ ସୁଝାଇବା ପାଇଁ ପାଟିକୁ ଯାହା ଆସିଲା ବକିଗଲେ । ରହିଲା ନାହିଁ ଗୁରୁଜ୍ଞାନ । ରହିଲା ନାହିଁ ପ୍ରଭୁ ଜ୍ଞାନ ।

– "ଅଲଜ୍ୟା, ଥୋବରା । ତୋ' ମୁହଁକୁ ଯଦି ଲାଜସରମ ଥାଆନ୍ତା, ତୁ କ'ଣ ଏମିତି ହସି ପାରନ୍ତୁ? ଛି ଛି, କୋଉ ଅଲଜ୍ୟା ମୁହଁରେ ତୁ ହସୁଛୁ କେଜାଣି? ମା' ବୁଢ଼ୀଟା କେତେ କାନ୍ଦୁଛି, ତତେ କ'ଣ ଦେଖାଯାଉନି? ମତେ ଯଦି ତୋ'ର କଷ୍ଟ ଦେବାର ଥିଲା, ମତେ କନ୍ଦାଇବାର ଥିଲା, ତୁ କ'ଣ ତାହା ଅନ୍ୟ ପ୍ରକାରରେ କରିପାରି ନ ଥାନ୍ତୁ? ଏ ମା'ଟା କ'ଣ ତୋ' ମା' ନୁହେଁ? ସତକୁ ସତ ଯଦି ତୋ' ରାଧା ମା' ଏଇମିତି ନ ଖାଇ ନ ପିଇ ଭୋକ ଉପାସରେ ବସି କାନ୍ଦୁଥାଆନ୍ତା, ତୁ କ'ଣ ସହିପାରନ୍ତୁ?"

– "ଛାଡ଼୍, ଛାଡ଼୍! ତୁ'ଟା ଗୋଟାଏ ଶୁଖିଲା କାଠ – ନିଦା ପଥର । ତୁ ଯଦି ମଣିଷ ହୋଇ ଥାଆନ୍ତୁ, ତୋ'ର ଯଦି ହୃଦୟ ବୋଲି ଗୋଟାଏ କିଛି ଥାଆନ୍ତା, ତା'ହେଲେ ସିନା ତୁ ବୁଝିପାରନ୍ତୁ? ତା' ହେଲେ ସିନା ତୁ ଜାଣି ପାରନ୍ତୁ ମା' କ'ଣ? ତୁ କୋଉଠୁ ଜାଣିବୁ ସେ କଥା?

– "ଛାଡ଼୍, ମୁଁ ନିଜେ ଅଲଜ୍ୟା ବୋଲି ତତେ ତୁଚ୍ଛାଟାରେ ଏତେ କଥା କହୁଛି । ନ ହେଲେ...."

ଯେଉଁଠି ଯେତେ ଆପଣାର ଭାବ, ସେଠି ସେତେ ରାଗରୁଷା... ଅଭିମାନ ଥାଏ । ଆଉ ଏଇ ଭାବର ପ୍ରାବଲ୍ୟ ହିଁ, ବେଳେବେଳେ ସୃଷ୍ଟି କରେ ଏକ ବ୍ୟବଧାନ । ଯେଉଁଠି ଆପଣାର ଭାବ ନାହିଁ ସେଠି ଅଧିକାର ନାହିଁ, ସେଠି ରାଗରୁଷା ବା ଅଭିମାନର ମୂଲ୍ୟ ମଧ୍ୟ ନାହିଁ ।

ମନଇଚ୍ଛା ବହେ ଗାଳି ଦେଲା ପରେ ମନ ଟିକିଏ ହାଲୁକା ହୋଇଗଲା ଶରତ ବାବୁଙ୍କର ।. ସେ ପୁଣି ମୁହଁ ବୁଲାଇ ନେଲେ ଅପର ପାର୍ଶ୍ୱକୁ । ସ୍ଥିର କଲେ ଆଉ ସିଆଡ଼କୁ ଚାହିଁବେନି କି ସେ ଅଲଜ୍ୟା ହସକୁ ଆଉ ଦେଖିବେନି ।

ମୁହଁ ସିନା ଫେରେଇନେଲେ । ଆଖି ସିନା ବୁଜିଦେଲେ । ହେଲେ ମନ? ମନରୁ କ'ଣ ଅନ୍ତର କରିହେବ ସେ ଅପାଶୋରା ଅପରୂପ ଲାବଣ୍ୟ? ସେ ଭୁବନମୋହନ ସ୍ମିତହାସ୍ୟ? ଏଇ ହସ ପରା ସବୁକିଛି କିଣି ନେଇଛି! ଆଉ ବାକି ଅଛି କ'ଣ ଯେ?

କଥାରେ ଅଛି ଭଗବାନ ଗାଳି ସହନ୍ତି, ଗର୍ବ ସହନ୍ତି ନାହିଁ । ଖାଲି କଥାରେ ନୁହେଁ, ଏହା ଅକ୍ଷରେ ଅକ୍ଷରେ ସତ୍ୟ । କବିସୂର୍ଯ୍ୟ ବଳଦେବ କାଳସର୍ପ ବୋଲି ଗାଳି ଦେଲେ ଆଉ କିଏ ତ ଚୋର ବୋଲି ଗାଳି ଦେଲେ । ହେଲେ ତା'ର କ'ଣ କିଛି ଫରକ୍ ପଡୁଛି? ଭକ୍ତର ଗାଳି ସତେ ଯେପରି ତା'ର ଚନ୍ଦନ... ଦେହଯାକ ବୋଲି ହୋଇଯିବାର ଅଙ୍ଗରାଗ । କାରଣ ମନ ତା' ଦ୍ୱାରା ନିର୍ମଳ ହୋଇଯାଏ । ଆଉ ନିର୍ମଳ ମନରେ ହିଁ ସୃଷ୍ଟି ହୁଏ ନିର୍ମାଲ୍ୟ । ଠାକୁର ଲେଖିଲେ– "ନିର୍ମଳ ଭକତି ଭାବ, ନ ଥାଇ ଜୀବର ଶଙ୍କା ।

ଚକାନୟନଙ୍କୁ ଚକା, ବେଳକୁ ନ ଥିବ ଦକା ।" ପୁଣି – "ଯାହାର ଗୃହ ନିରିମଳ ପ୍ରଭୁ ବସିବେ ତହିଁ ।" ସିଏ ତ ସେଇଆ ଚାହାନ୍ତି... ତାଙ୍କର ଆଉ କ'ଣ ଲୋଡ଼ା କି ?

ଯା ଭିତରେ କେତେବେଳେ ଯେ ତାଙ୍କୁ ଛାଇନିଦ ଲାଗି ଯାଇଛି, ଜାଣି ପାରି ନାହାନ୍ତି ଶରତବାବୁ । ଆଉ ତା'ରି ଭିତରେ ସ୍ୱପ୍ନରେ ତାଙ୍କ ରୋଗଶଯ୍ୟା ନିକଟରେ ଆବିର୍ଭୂତ ହୋଇଛନ୍ତି ଠାକୁର । ତାଙ୍କର ବରଦ ହସ୍ତକୁ ଥାପି ଦେଇଛନ୍ତି ଶିରରେ । ଆଉଁସି ଦେଇଛନ୍ତି ସର୍ବାଙ୍ଗ ଶରୀରକୁ । କହୁଛନ୍ତି କ'ଣ ମୋ ଉପରେ ରାଗିଛୁ ? ଅଭିମାନ କରିଛୁ ? ଗର୍ଭଧାରିଣୀ ମା' ରାଧା ଆଉ ଏଇ ଦ୍ରୌପଦୀ ମା' ଭିତରେ କ'ଣ କିଛି ଫରକ୍ ଅଛି ଭାବୁଛୁ । ନାଁରେ, କିଛି ବି ଫରକ୍ ନାହିଁ । ମାଆ ତ ମାଆ । ତା' ଭିତର ଫରକ୍ ଆସିଲା କୁଆଡୁ ? ମାଆ ଜଗଜ୍ଜନନୀ । ରମା, ଉମା, ବାଣୀ, ରାଧା – ସବୁ ସେଇ । ତା'ଛଡ଼ା କୋଉଠି କିଛି ନାହିଁ । ସେ ଆଦ୍ୟାଶକ୍ତି । ସେ ସୃଷ୍ଟିକାରିଣୀ, ପୁଣି ସଂହାରକାରିଣୀ । ସେ ପ୍ରକୃତି ରୂପିଣୀ । ତୁ ତା' ଭିତରେ ଭିନ୍ନତା ଆଣୁଛୁ କାହିଁକି ? ହଉ ଯା' ମା' ଏଥର ଆଉ କାନ୍ଦିବନି ।

ଏତିକି କହି ଶ୍ରୀମତୀଙ୍କର ମାନଭଞ୍ଜନର ଶେଷ ଅସ୍ତ୍ର ପ୍ରୟୋଗ କରିବାର ଲକ୍ଷ୍ୟ ନେଇ ଯେତେବେଳେ ଠାକୁରେ ତାଙ୍କର ପଦପ୍ରାନ୍ତରେ ବସି ପଡ଼ିଛନ୍ତି, ସେତିକିବେଳେ ସବୁ ରାଗରୁଷା ଅଭିମାନ କୁଆଡ଼େ ପାଣି ପରି ମିଳେଇ ଯାଇଛି ଶରତ ବାବୁଙ୍କର । ଧଡ଼ପଡ଼ ହୋଇ ସେ ଉଠିପଡ଼ିଛନ୍ତି ଶେଯରୁ ଆଉ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରିଛନ୍ତି ଠାକୁରଙ୍କୁ । ଠାକୁରେ ମଧ୍ୟ ସସ୍ନେହରେ କୋଳେଇ ନେଇଛନ୍ତି ତାଙ୍କୁ । ହଜିଲା ଧନକୁ ପାଖରେ ପାଇ ବହି ଚାଲିଛି ଆନନ୍ଦାଶ୍ରୁ । ଗାଳି ଦେଲା ପରେ ମନ ତ ହାଲୁକା ହୋଇଥିଲା, ଏବେ ଦେହ ମଧ୍ୟ ହାଲୁକା ହୋଇଯାଇଛି । ଆସିଛି ଶୀତଳତାର ଅନୁଭବ ।

ହଠାତ୍ ଏତିକିବେଳେ, ନିଦ ଭାଙ୍ଗିଯାଇଛି ଶରତ ବାବୁଙ୍କର । ଚମକି ପଡ଼ିଛନ୍ତି ସିଏ ? ଏ କ'ଣ ? ସ୍ୱପ୍ନ ନା ସତ୍ୟ ? ଅଗୁରୁ ଚନ୍ଦନ ବାସନାରେ ଘର ମହକି ଯାଉଚି । ଦେହରେ ଜ୍ୱର ନାହିଁ । ବହି ଚାଲିଛି ଲୁହ ଆଉ ଦେହରୁ ଝାଳ, ଅବିଶ୍ରାନ୍ତ ଭାବରେ ।

ଏଥର ଆଉ ନିଜକୁ ସମ୍ଭାଳି ପାରିଲେନି ଶରତବାବୁ । ଛୋଟ ପିଲାଟି ପରି ଭୋ ଭୋ ରଡ଼ି ଛାଡ଼ିଲେ କରୁଣାମୟ ପ୍ରଭୁଙ୍କ ଲୀଳା ସ୍ମରଣ କରି ।

ମା' ପଚାରିଲେ, ଆରେ ସୁକୁଟି ! କ'ଣ ହେଲା ? କାହିଁକି ଏମିତି କାନ୍ଦୁଛୁ ? କହ, କ'ଣ ହେଲା ? ହେଲେ ମୁଖରେ ଭାଷା ନ ଥିଲା ଶରତ ବାବୁଙ୍କର । ଆହୁରି ଜୋର୍‌ରେ ସେ କେବଳ କାନ୍ଦି ଚାଲିଥିଲେ । ଦେହରେ ହାତ ମାରି ମା' ଦେଖିଲେ ସଦ୍ୟସ୍ନାତ ଶରୀର ପରି ଦେହ ତାଙ୍କର ଝାଳରେ ଜୁଡୁବୁଡୁ । ଝାଳ ପୋଛିବାରେ ଗୋଟାଏ

ଗାମୁଛା ଭିଜିଗଲା । ପୂର୍ବରୁ ସାତ ଆଠ ଥର ମେଲେରିଆ ଜ୍ୱର ହୋଇଥିଲେ ବି ଏମିତି ଝାଳ ବୋହିବା କେବେ ଦେଖି ନ ଥିଲେ ଶରତବାବୁ ।

ସନ୍ଧ୍ୟାରେ ଶରତବାବୁଙ୍କୁ ଦେଖିବାକୁ ଆସିଲେ ସରୋଜିନୀ ଦିଦି ଓ ତାଙ୍କ ସ୍ୱାମୀ । ସେଦିନ ତାଙ୍କର ରାତି ଡିଉଟି ଥାଏ । ମନେ ମନେ ସିଆଡୁ ସେ ସ୍ଥିର କରି ଆସିଥାନ୍ତି ଯେ, ଯେମିତି ହେଲେ ତାଙ୍କୁ ଡାକ୍ତରଖାନାରେ ନେଇ ଭର୍ତ୍ତି କରିବେ । ଆଜି ତାଙ୍କର କୌଣସି କଥା ଆଉ ଶୁଣାଯିବ ନାହିଁ । ହେଲେ ସେ ଆସି ଯାହା ଦେଖିଲେ, ସେଥିରେ ତାଙ୍କର ବୁଦ୍ଧି ହଜିଗଲା ।

ଡାକ୍ତରଖାନା ଯିବାକୁ ପୂର୍ବରୁ ନାହିଁ ନାହିଁ କରୁଥିବା ଶରତବାବୁ ଏଥର ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । କହିଲେ, ହଁ ଚାଲ । ଏଥର ମୁଁ ଯିବା ପାଇଁ ପ୍ରସ୍ତୁତ । କିନ୍ତୁ ଗୋଟିଏ କଥା ଜାଣିରଖ, ତମେ କି ତମ ଡାକ୍ତର କେହି ବି ମୋ ଦେହରେ ଆଉ ଜ୍ୱର ଦେଖିବାକୁ ପାଇବ ନାହିଁ । ଆଉ ଏକଥା ବି ଜାଣିରଖ ଯେ ତମେ ଆଣି ଦେଇଥିବା ଔଷଧ ସବୁ ମୋ ତକିଆ ତଳେ ଥୁଆ ହୋଇଛି । ସେଥିରୁ ଗୋଟିଏ ବି ମୁଁ ଖାଇ ନାହିଁ ।

ଔଷଧ ଖାଇ ନାହାନ୍ତି, ଅଥଚ ଜ୍ୱର ଛାଡ଼ିଯାଇଛି । ଇଏ କେମିତି କଥା ? ଦିଦି ଦେଖିଲେ ସତକୁ ସତ ଔଷଧ ସବୁ ହାତରେ ଧରି ଦେଖାଉଛନ୍ତି ଶରତବାବୁ । ଦେହରେ ତାଙ୍କର ଜ୍ୱର ନାହିଁ । ବିନା ଔଷଧରେ ଏତେଦିନର ଭୟଙ୍କର ମେଲେରିଆ ଜ୍ୱର ଭଲ ହେବା ଦେଖି ଏବଂ ଶରତ ବାବୁଙ୍କ ଦୃଢୋକ୍ତି ଶୁଣି ସେ ହତବାକ୍ ହେଲେ ।

ଯାହାହେଉ ଏବେ ବିନା ଆପତ୍ତିରେ ଶରତ ବାବୁ ଡାକ୍ତରଖାନା ଗଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ଜ୍ୱର ନାହିଁ । ତଥାପି ମେଲେିଆ ଜ୍ୱର କାଳେ ପୁଣି ଲେଉଟିବ, ଏଇ ଭାବନାରେ ତାଙ୍କୁ ଗୋଟାଏ ରାତି ଅଟକାଇ ରଖିଲେ ତୀକ୍ଷ୍ଣ ନଜରରେ । ଶରତ ବାବୁ ବଡ଼ କୌତୂହଳର ସହିତ ଲକ୍ଷ୍ୟ କରୁଥିଲେ ସେମାନଙ୍କ ଗତିବିଧି ତଥା ପରୀକ୍ଷା ଫଳକୁ । କାରଣ ସେ ସ୍ଥିର ନିଶ୍ଚିତ ଥିଲେ ଯେ ଠାକୁରଙ୍କ ଅଶେଷ କରୁଣାରୁ ଏବେ ସେ ରୋଗମୁକ୍ତ ।

ପରଦିନ ସକାଳେ ଶାନ୍ତି ଆଇ.ଜି.ଏଚ୍‌ରୁ ଫେରିଲେ ଘରକୁ । ଦୁଇ ଦୁଇଟି ସନ୍ତାନକୁ ଜନ୍ମ ଦେଇଥିଲେ ବି ଦୁର୍ବଳତାର କୌଣସି ଚିହ୍ନବର୍ଣ୍ଣ ନ ଥିଲା ତାଙ୍କର ଦେହ ବା ମନରେ । ଘରେ ଆସି ଶୁଣିଲେ ଶରତବାବୁ ମଧ ଡାକ୍ତରଖାନା ଯାଇଛନ୍ତି । ଶାଶୂବୁଢ଼ୀଙ୍କୁ ବିଦା କରିଦେଇ ସେ ନିଜେ ପଶିଲେ ରୋଷେଇ ଘରେ । ପ୍ରସ୍ତୁତ କଲେ ମଧାହ୍ନ ଭୋଜନ । ଠାକୁରଙ୍କୁ ଭୋଗ ଲଗାଇଲା ପରେ ସିଏ ଯେତେବେଳେ ଟିଫିନ୍ କ୍ୟାରିୟରରେ ଖାଦ୍ୟ ଧରି ଚାଲି ଚାଲି ଯାଇ ଡାକ୍ତରଖାନାରେ ପହଞ୍ଚିଲେ, ସେତେବେଳେ ଶରତ ବାବୁଙ୍କ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । କହିଲେ, କ'ଣ ତମେ ମୋ ପାଇଁ ଖାଦ୍ୟ ଧରି ଆସିଛ ?

– ହଁ, ମୁଁ ସକାଳେ ଫେରିଲି । ଏବେ ସମ୍ପୂର୍ଣ୍ଣ ସୁସ୍ଥ । ଆଉ ତମେ ?

ମୁଁ ବି ସୁସ୍ଥ । ଠାକୁର ଅଭିମରାଙ୍କ ପରି ପ୍ରଭୁ, ଦ୍ରୌପଦୀ ପରି ମା' ଆଉ ଶାନ୍ତି ପରି ପତ୍ନୀ ଯେଉଁଠି ବିଦ୍ୟମାନ, ସେଠି ଅସୁସ୍ଥତା କ'ଣ ବେଶି ସମୟ ରହିପାରିବ ?

ମାତା ଦ୍ରୌପଦୀ ଓ ପତ୍ନୀ ଶାନ୍ତି ଏବେ ପରପାରିରେ । ଶରତ ବାବୁଙ୍କର ପାଖରେ ଅଛନ୍ତି କେବଳ ଠାକୁର ଅଭିରାମ । ସିଏ ଆଉ ଯିବେ କୁଆଡ଼େ ? ସିଏ ତ ଇହ ଓ ପର କାଳର ସାଥୀ – ହୃଦୟ ବିହାରୀ । ତାଙ୍କୁ କ'ଣ ଛାଡ଼ିହେବ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ।



# ଠକ ଠାକୁର ଠକିଦେଲେ

ଅକ୍ଷରକୁ ନେଇ ଶବ୍ଦ ଗଠିତ । ସେଇ ଏକା ଅକ୍ଷରକୁ ଟିକିଏ ଓଲଟ ପାଲଟ କରି ମାତ୍ରାର ସାମାନ୍ୟ ପରିବର୍ତ୍ତନ କରିଦେଲେ ଅନେକ ଶବ୍ଦ ଗଠିତ ହୋଇଯାଏ ଏବଂ ଯେ କୌଣସି ଭାଷାର ବାଣୀଭଣ୍ଡାର ସମୃଦ୍ଧ ହୋଇଯାଏ ସେହିସବୁ ଶବ୍ଦକୁ ନେଇ । ଏହି ପରିପ୍ରେକ୍ଷୀରେ ଆମ ଓଡ଼ିଆ ଭାଷାର ବାଣୀଭଣ୍ଡାର କିଛି କମ୍ ସମୃଦ୍ଧ ନୁହେଁ । ଏହି ଶବ୍ଦସମ୍ଭାରକୁ ଉପଯୋଗ କରି ଆମର କବିଗଣ କେତେ ଯେ କାବ୍ୟର କୋଣାର୍କ ଗଢ଼ି ଯାଇଛନ୍ତି, ତା'ର ହିସାବ ନାହିଁ । କିନ୍ତୁ ଚିହ୍ନରା ଗ୍ରାହକ ନ ହେଲେ ସେହି ଶବ୍ଦାବଳୀର ସଠିକ୍ ବ୍ୟବହାର ବା ମୂଲ୍ୟାୟନ ହୋଇପାରେନା । ଅନଧିକାରୀ ବା ଅଯୋଗ୍ୟ ବ୍ୟକ୍ତି ସେଥିପାଇଁ ଅନେକ ସମୟରେ ଅର୍ଥକୁ ଅନର୍ଥ କରିପକାଏ । ଶବ୍ଦ ଭିତରେ ଲୁକ୍‌କାୟିତ ଥିବା ଆକ୍ଷରିକ ଅର୍ଥ ତଥା ଭାବାର୍ଥକୁ ବୁଝିବାରେ ଅସମର୍ଥ ସେହି ବ୍ୟକ୍ତି ତାକୁ ବିକୃତ କରିପକାଏ । ଅମୃତ ପରିବେଷଣ କରିବା ପରିବର୍ତ୍ତେ ସେ ଓକାଳି ପକାଏ ଖାଲି ବିଷ ଆଉ ବିଷ । ବିଷୟବସ୍ତୁରେ ପ୍ରବେଶ ନ ଥାଇ ମଧ୍ଯ ସେ ବିଶେଷଜ୍ଞ ଭଳି କଥା କହେ – ବ୍ୟାଖ୍ୟା କରିବସେ ଜଟିଳ ତତ୍ତ୍ୱଜ୍ଞାନ ।

ସେଦିନ ମୁଁ ଅଫିସରେ କାର୍ଯ୍ୟରତ ଥାଏ । ବହିରାଗତ କିଛି ଭଦ୍ରବ୍ୟକ୍ତି ଓ ଭଦ୍ର ମହିଳାଙ୍କ ମଧ୍ୟରେ ଚର୍ଚ୍ଚା ଚାଲିଥାଏ ଅଳ୍ପ ପାଣିରେ ଗାଧୋଇବାର କଥା । ଆଲୋଚନାରେ ଅଂଶଗ୍ରହଣ କରି ଶୁକ୍ଳ ବସ୍ତ୍ରାବୃତା ଜଣେ କେରଳୀ ଧର୍ମାନ୍ତରୀତ ଖ୍ରୀଷ୍ଟିୟାନ୍ ଭଗିନୀ (ସିଷ୍ଟର) କହିଲେ– ପାଣି କମ୍ ଥିଲେ ସାଷ୍ଟାଙ୍ଗ ପଡ଼ିଯିବ । ଆଉ ଅସୁବିଧା କ'ଣ ?

କଥାଟା ମୋ କାନରେ ପଡ଼ିବାରୁ କୌତୂହଳବଶତଃ ମୁଁ ପଚାରିଦେଲି– ଆଚ୍ଛା ସିଷ୍ଟର ! ସାଷ୍ଟାଙ୍ଗ ଶବ୍ଦର ଅର୍ଥ କ'ଣ କୁହନ୍ତୁ ତ !

ଅତି ସହଜ ଭାବରେ ସେ ଉତ୍ତର ଦେଲେ – ଷଷ୍ଠ ଅଙ୍ଗ ସାଷ୍ଟାଙ୍ଗ । ଆଉ କ'ଣ ?

ବ୍ୟାକରଣର ନିୟମାନୁସାରେ ସନ୍ଧି କଲେ ଷଷ୍ଠ +ଅଙ୍ଗ = ଷଷ୍ଠାଙ୍ଗ ହେବ ଅର୍ଥାତ୍ ଷଷ୍ଠ ସ୍ଥାନରେ ଥିବା ଅଙ୍ଗକୁ ହିଁ ବୁଝାଇବ ଏବଂ କସ୍ମିନ୍ କାଳେ ସାଷ୍ଟାଙ୍ଗ ହେବ ନାହିଁ, ଏକଥା ଆଉ ତାଙ୍କୁ ବୁଝାଇବାର ଆବଶ୍ୟକତା ନ ଥିଲା । ତଥାପି ସ + ଅଷ୍ଟାଙ୍ଗ ଅର୍ଥାତ୍

ଅଷ୍ଟାଙ୍ଗ ବା ଆଠଟି ଅଙ୍ଗ ( ଦୁଇ ପାଦ, ଦୁଇ ହାତ, ବକ୍ଷ, ମସ୍ତକ, ନାସା ଓ ମୁଖ) ସହିତ ଯେଉଁ ଦଣ୍ଡପ୍ରଣାମ କରାଯାଏ, ତାକୁ ସାଷ୍ଟାଙ୍ଗ ପ୍ରଣାମ କୁହାଯାଏ ବୋଲି ବୁଝାଇବାକୁ ଚେଷ୍ଟା କରିଥିଲି ମୋର ସୀମିତ ଜ୍ଞାନରେ ।

ଏ ତ ଗଲା ବିଦେଶାଗତ ଧର୍ମଧାରାର ଜଣେ ଅଣଓଡ଼ିଆ ଭଗିନୀଙ୍କର ବ୍ୟାଖ୍ୟା । ଏଥର ଆସନ୍ତୁ ଶୁଣିବା ଆମ ସନାତନ ହିନ୍ଦୁଧର୍ମର କୌଣସି ଏକ ସମ୍ପ୍ରଦାୟର ଜଣେ ଓଡ଼ିଆ ସାଧୁଙ୍କ ବ୍ୟାଖ୍ୟା ଏବଂ ତାହା ପୁଣି ଠାକୁର ଶ୍ରୀ ଶ୍ରୀ ଅଭିରାମ ପରମହଂସଙ୍କ ସମ୍ପର୍କରେ ।

ପୁରୀ ଅବସ୍ଥାନ କାଳରେ ପୂଜ୍ୟ ପ୍ରେମାନନ୍ଦ ବାବା ପ୍ରାୟ ପ୍ରତ୍ୟହ ସନ୍ଧ୍ୟାରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ଦର୍ଶନକୁ ଯାଉଥିଲେ । ଦିନେ ଦର୍ଶନ ସାରି ଫେରୁଛନ୍ତି, ହଠାତ୍ ତାଙ୍କର ପାଦ ଅଟକିଗଲା ଶ୍ରୀମନ୍ଦିରର ପାଟ ଅଗଣାରେ ଠାକୁରଙ୍କର ନାଆଁ ଶୁଣି ।

କିଛି ଭକ୍ତଙ୍କ ମେଳରେ ବସିଥାନ୍ତି ଜଣେ ଜଟାଜୁଟ ବିମଣ୍ଡିତ ଯୁବକ ସାଧୁ । ବୟସ ପଚିଶି ତିରିଶି ଭିତରେ ହେବ । ସେ କହୁଥାନ୍ତି– ସିଏ ଯେଉଁ ପର୍ଯ୍ୟନ୍ତ ଅଭିରାମ ବାବା ଥିଲେ, ସେ ପର୍ଯ୍ୟନ୍ତ ଠିକ୍ ଥିଲେ । ଆଉ ଯେଉଁଦିନଠାରୁ ଠାକୁର ହୋଇଗଲେ, ସେ ଖରାପ ହୋଇଗଲେ । ପରମହଂସ କ'ଣ ଜାଣିଛ ? ପରମକୁ ହିଂସା କରିବାରୁ ସେ ହେଲେ ପରମହଂସ ।

ବାଃ ! କି ଚମତ୍କାର ବ୍ୟାଖ୍ୟା । ଏମିତି ବ୍ୟାଖ୍ୟା ବୋଧହୁଏ କୌଣସି ଶାସ୍ତ୍ରରେ ନ ଥିବ ବା କୌଣସି ସାଧୁ ସନ୍ଥ ମହାତ୍ମା କରି ନ ଥିବେ । ଦୀର୍ଘଦିନର ସନ୍ନ୍ୟାସୀ ଜୀବନରେ ଏମିତି ବ୍ୟାଖ୍ୟା ତ କାହିଁ କେବେ ସେ ଶୁଣି ନାହାନ୍ତି ? ଏ ବ୍ୟାଖ୍ୟାକାର ସାଧୁ ଜଣକ କ'ଣ ସତରେ ଜଣେ ସାଧୁ ନା କୁଟୁମ୍ବ ପୋଷି ନ ପାରି ସାଧୁ ବେଶ ଧାରଣ କରିଥିବା ଜଣେ ପଳାୟନପନ୍ଥୀ ? 'ହଂସ' ଓ 'ହିଂସା' – ଏ ଦୁଇ ଶବ୍ଦ ଭିତରେ ସାଧାରଣ ଅକ୍ଷରଗୁଡ଼ିକ ହେଲା 'ହ', 'ସ' ଓ 'ଂ'(ଅନୁସ୍ୱାର) । କିନ୍ତୁ ଦ୍ୱିତୀୟ ଶବ୍ଦ 'ହିଂସା'ରେ ଅଧିକ ଲାଗିଛି ଦୁଇଟି ମାତ୍ରା । ମାତ୍ର ଶବ୍ଦ ଦୁଇଟିର ଅର୍ଥରେ ରହିଛି ଆକାଶ ପାତାଳର ପାର୍ଥକ୍ୟ । ହଂସ ହେଉଛି ଏଭଳି ଏକ ପକ୍ଷୀ, ଯାହାର ଚଞ୍ଚୁ ଲାଗିବା ମାତ୍ରେ କ୍ଷୀରରେ ଥିବା କ୍ଷୀର ଓ ନୀର ପୃଥକ୍ ହୋଇଯାଏ ଏବଂ ସିଏ ନୀର (ଜଳ)କୁ ଛାଡ଼ି କେବଳ କ୍ଷୀର (ସାରପଦାର୍ଥ) କୁ ହିଁ ଖାଇଥାଏ । ସୃଷ୍ଟିର ଅନ୍ୟ କୌଣସି ପ୍ରାଣୀକୁ ଭଗବାନ ଏ ଶକ୍ତି ଦେଇନାହାନ୍ତି । ତେଣୁ ଶାସ୍ତ୍ରପୁରାଣରେ ଏକ ପକ୍ଷୀର ହେଲେ ହେଁ ହଂସକୁ ଅତି ଉଚ୍ଚସ୍ଥାନ ଦିଆଯାଇଛି । ଭଲମନ୍ଦ ବାଛି ପାରୁଥିବା ମଣିଷର ବିଚାରଶକ୍ତି ବା ବିବେକକୁ 'ବିବେକ ହଂସ' ବୋଲି କୁହାଯାଇଛି । ଠାକୁର ଲେଖିଲେ–

"ହଂସ କେଡ଼େ ଚତୁର ତୁହି, କି ମନ୍ତ୍ର ରଖିଛୁ ଥଣ୍ଟେ ପୂରାଇ
ନୀର କ୍ଷୀର ଦୁଇ ମିଶି ରହିଥିଲେ, ନୀର ଛାଡ଼ି କ୍ଷୀର ଦେଲୁ ତୁ ଖାଇ ।
(ଭଜନ ନୀଳପଦ୍ମ)

ଅନ୍ୟପକ୍ଷରେ ହିଂସା ଏକ ଦୁର୍ଗୁଣ । କାୟ ମନୋବାକ୍ୟରେ କାହାରିକୁ କଷ୍ଟ ଦେବା ହେଉଛି ହିଂସା । ବ୍ୟାଘ୍ର, ଭାଲୁ ପ୍ରଭୃତି ବନ୍ୟ ହିଂସ୍ରଜନ୍ତୁ ପରି ଅନ୍ୟର ଅନିଷ୍ଟ କରିବା, କ୍ଷତି କରିବା ହେଉଛି ହିଂସ୍ର ବ୍ୟକ୍ତିର ସ୍ୱଭାବ ।

'ହଂସ'ସହିତ 'ହିଂସା'ର କୌଣସି ସମ୍ବନ୍ଧ ନ ଥିଲା ବେଳେ ସମ୍ପୃକ୍ତ ସାଧୁଙ୍କର ଏତାଦୃଶ ବିଚିତ୍ର ବ୍ୟାଖ୍ୟା ବାବାଙ୍କୁ ମର୍ମାହତ କଲା । ହେଲେ ଆଲୋଚନାରେ ହସ୍ତକ୍ଷେପ ନ କରି ସେ ଅର୍ବାଚୀନ ସାଧୁଙ୍କୁ ପ୍ରକୃତ ଜ୍ଞାନ ବୁଝାଇବାର ଅବକାଶ ନ ଥିଲା ସେତେବେଳେ । କିନ୍ତୁ ସୌଭାଗ୍ୟକୁ ଆଲୋଚନାରେ ହସ୍ତକ୍ଷେପ କରିଥିଲେ ଅନତିଦୂରରେ ଉପବେଶନ କରିଥିବା ଅନ୍ୟ ଜଣେ ଯୁବକ ସାଧୁ, ଯାହା ଆଶ୍ୱସ୍ତ କରିଥିଲା ବାବାଙ୍କୁ ।

ସେ କହିଥିଲେ – ସେକଥା ନୁହେଁ । ସାରା ସଂସାରର ସକଳ ପ୍ରାଣୀଙ୍କ ହୃଦୟରେ ଅଭିନ୍ନ ଭାବରେ ବିଦ୍ୟମାନ ଥାଇ ସମସ୍ତଙ୍କ ଶ୍ୱାସପ୍ରଶ୍ୱାସରେ ଯିଏ ହଂସ ରୂପରେ ବିହାର କରୁଛନ୍ତି, ସିଏ ହେଉଛନ୍ତି ଅଭିରାମ ପରମହଂସ । ତାଙ୍କ ସମ୍ପର୍କରେ ଏଭଳି ଅସମ୍ମାନ ଜନକ ବାକ୍ୟ ପ୍ରୟୋଗ କରିବା ଠିକ୍ ନୁହେଁ ।

ଏବେ ଫେରିବା ବିଷୟବସ୍ତୁକୁ । ଠକ କହିଲେ ଆମେ ସାଧାରଣତଃ ଯାହା ବୁଝୁ, ଠାକୁର ସେମିତିକା ଠକ ନ ଥିଲେ ଯଦିଓ ତାଙ୍କ ବିଦ୍ୟମାନ କାଳରେ ତାଙ୍କୁ ଅନେକ ଲୋକ ଠକ, ଭଣ୍ଡ ବୋଲି କହିଛନ୍ତି । ଆଉ ଏକଥା ବି ସତ ଯେ ଯେଉଁମାନେ ଏଭଳି କହିଛନ୍ତି, ସେମାନେ କେହି ତାଙ୍କୁ ଦେଖିନାହାନ୍ତି, ତାଙ୍କ ପାଖକୁ ଯାଇ ନାହାନ୍ତି ବା ତାଙ୍କ ବିଷୟରେ କିଛି ବି ଜାଣି ନାହାନ୍ତି । ତେବେ ସେ କେମିତିକା ଠକ ? କାହାକୁ ଠକିଲେ ? କ'ଣ ଠକିଲେ ? କ'ଣ କାହାକୁ ସର୍ବସ୍ୱାନ୍ତ କରିଦେଲେ ? ହଁ କହିଲେ ଠିକ୍, ନା କହିଲେ ବି ଠିକ୍ । ମା' ଛୁଆକୁ ଭୁଲାଇବା ପାଇଁ କଣ୍ଢେଇ ଦେଇ ଭଣ୍ଡେଇ ଦେବା ପରି ସେ ପ୍ରାୟ ସମସ୍ତଙ୍କୁ ଭଣ୍ଡେଇ ଦେଇଛନ୍ତି ମାୟାରେ । ନାନାଦି ପ୍ରଲୋଭନ ଦେଖାଇ ସେ ନିଜେ ଖସି ଯାଇଛନ୍ତି ଅତି କୌଶଳରେ । ସହଜରେ ଧରା ଦେଇ ନାହାନ୍ତି କାହାକୁ । ଦ୍ୱାପରରେ ଗୋପୀମାନଙ୍କୁ ଚାରିଦିନର କଣ୍ଢ ଦେଇ ଚାଲି ଯାଇଛନ୍ତି ମଥୁରାକୁ ଓ ତା'ପରେ ଦ୍ୱାରକାକୁ ସବୁଦିନ ପାଇଁ । ହାତ ଦେଖି "ତୁ ଆଉ ନଅ ବର୍ଷ ବଞ୍ଚିବୁ" ବୋଲି କହି ଗର୍ଭଧାରିଣୀ ମା' ରାଧାଙ୍କୁ ଠକି ଦେଇଥିଲା ବେଳେ ପ୍ରକୃତ ପକ୍ଷେ ଆଉ ମାତ୍ର ନଅଦିନ ପରେ ହିଁ ତାଙ୍କର ଜୀବନଦୀପ ଲିଭିଯାଇଛି । ଅବଶ୍ୟ ମା'ଙ୍କଠାରୁ ଫେରିବା ବେଳେ ସେ ଅନ୍ୟମାନଙ୍କୁ କହିଛନ୍ତି ଯେ ବୁଢ଼ୀ ଆଉ ବେଶିଦିନ ନୁହେଁ । ହୋଇପାରେ ଏହା ଏକ

ସାଙ୍କେତିକ ଉତ୍ତର । କିନ୍ତୁ ସାଧାରଣ ଦୃଷ୍ଟିରୁ ଏହା କ'ଣ ତାଙ୍କ ଠକବିଦ୍ୟାର ଆଉ ଏକ ନମୂନା ନୁହେଁ? ସାଧାରଣ ଦୃଷ୍ଟିରେ କାହାକୁ ଠକି ତା'ର ସର୍ବସ୍ୱ ଲୁଣ୍ଠନ କରିନାହାନ୍ତି ସିନା, ଭକ୍ତର ଯାହା କିଛି ନିଜସ୍ୱ ସେ ସମସ୍ତ ସେ ହରଣ କରି ନେଇଛନ୍ତି ତା'ର ଅଲକ୍ଷ୍ୟରେ । ସବୁଠାରୁ ବେଶି ଯଦି କେହି ତାଙ୍କ ଠକାମୀର ଶିକାର ହୋଇଥାଏ, ତେବେ ସେ ହେଉଛି ତାଙ୍କର ଅନନ୍ୟ ଭକ୍ତ । ଜୀବନସର୍ବସ୍ୱ ଭାବରେ ଯିଏ ତାଙ୍କୁ କାୟମନୋବାକ୍ୟରେ ଗ୍ରହଣ କରିଛି ଧନଦାରାସୁତ ଆଦିକୁ ପର କରି, ତାକୁ ସିଏ ବେଶି ଠକିଛନ୍ତି – ବେଶି କନ୍ଦାଇଛନ୍ତି ଏବଂ ଶେଷରେ ତାକୁ ନିଃସ୍ୱ କରି, ସମ୍ପୂର୍ଣ୍ଣ ଏକାକୀ କରି ଫେରି ଯାଇଛନ୍ତି ତାଙ୍କର ନିତ୍ୟଧାମକୁ । ଛାଡ଼ି ଯାଇଛନ୍ତି ତାକୁ କେବଳ ଝୁରିବା ପାଇଁ ।

ତେଣୁ ଭକ୍ତ ତାଙ୍କୁ କହେ ଠକ । ସିଏ ନିଜେ ମଧ୍ୟ ସ୍ୱୀକାର କରିଛନ୍ତି ଭକ୍ତର ଏଇ ପ୍ରେମପୂର୍ଣ୍ଣ 'ଠକ' ଡାକକୁ । ଆଉ ଏଇ ସ୍ୱୀକାରୋକ୍ତି ପ୍ରକାଶ ପାଇଛି ତାଙ୍କ ଲେଖନୀରେ–

କୋଇଲି ଲୋ, ଠକ କଥା ଠିକେ ନାଶ ଯିବ ।
ଠକ ଅଭିରାମ ପରା ଗ୍ରିଣୀ ଖାଉଥିବ ଲୋ । (କୋଇଲି ଶିକ୍ଷା)

ହେଲେ ସେ ଏସବୁ କରନ୍ତି କାହିଁକି? ଭକ୍ତ ପ୍ରତି ଏହା ତାଙ୍କର ଅବିଚାର ନା କରୁଣା? ଏହା କ'ଣ ଭକ୍ତ ପ୍ରତି ତାଙ୍କ ଭଲ ପାଇବାର ନିଦର୍ଶନ? ଏହାର ମର୍ମ କେବଳ ପ୍ରକୃତ ଭକ୍ତ ହିଁ ବୁଝେ । ସିଏ ଯାହାକୁ ଆପଣାର କରିନିଅନ୍ତି, ଯାହାକୁ ସିଏ ନିଜର ଖେଳସାଥୀ ବା ଖେଳନା ଭାବେ ନିର୍ବାଚନ କରନ୍ତି, ସିଏ ଚାହାନ୍ତି ନାହିଁ ଯେ ତା' ଉପରେ ଆଉ କାହାର ଅଧିକାର ରହୁ । ତେଣୁ ଭକ୍ତର ଭକ୍ତିରେ ସାମାନ୍ୟତମ ମାଳିନ୍ୟ ଥିବା ପର୍ଯ୍ୟନ୍ତ ସେ ନିଶ୍ଚିନ୍ତ ହୋଇ ବସିପାରନ୍ତି ନାହିଁ, ବସିପାରିବେ ନାହିଁ ମଧ୍ୟ । ବାରମ୍ବାର ଛେଚି କଚାଡ଼ି ସମ୍ପୂର୍ଣ୍ଣ ନିଷ୍କଳଙ୍କ କରି ତାକୁ ଶୁଦ୍ଧ ସୁବର୍ଣ୍ଣରେ ପରିଣତ ନ କରିବା ପର୍ଯ୍ୟନ୍ତ, ତାଙ୍କର ବିଶ୍ରାମ ନାହିଁ । ଭକ୍ତ ଭଗବାନଙ୍କର ଏ ଯେଉଁ ଖେଳ ଚାଲିଛି, ଏଥିରେ ତାଙ୍କର ପ୍ରଧାନ ଅସ୍ତ୍ର ହେଉଛି ତାଙ୍କ ଠକ ବିଦ୍ୟା । ସେ ଠକିବେ, ଭକ୍ତ ଠକିବ ଆଉ ଶିଖିବ । ଏହା ହିଁ ହେଉଛି ଭକ୍ତ ପାଇଁ ଏକମାତ୍ର ଉନ୍ନତିର ପଥ, ଏହାର ଅନ୍ୟ ବିକଳ୍ପ ନାହିଁ । ସେ ନିଶ୍ଚୟ ଧରାଦେବେ, କିନ୍ତୁ ନିର୍ମଳ ଭକ୍ତିରେ । ତେଣୁ ଲେଖିଲେ– "ନିର୍ମଳ ଭକତି କରିଲେ ପ୍ରଭୁ ଦୂରେ ନାହାନ୍ତି, ଯା'ର ଭକ୍ତିରେ ମଳି ଥାଇ ତାକୁ ଭୁଲାଇ ଦ୍ୟନ୍ତି ।" (କୋଇଲି ଶିକ୍ଷା)

ଅନ୍ୟ ଭାଷାରେ କହିଲେ ଏଇ ଭୁଲାଇଦେବା ହିଁ ତାଙ୍କର ଠକାମୀ । ଏହା ଚାଲିଛି ଓ ଚାଲିଥିବ ଅନନ୍ତ କାଳ ଯାଏ ।

ଆମେ ଜାଣୁନା କେଉଁଟା ଆମ ପାଇଁ ମଙ୍ଗଳ । କେଉଁଟା କରଣୀୟ ଆଉ କେଉଁଟା ବର୍ଜନୀୟ । କେଉଁଥିରେ ଆମର ହିତ ନିହିତ ଓ କେଉଁଥିରେ ଅହିତ ବିଦ୍ୟମାନ । କାରଣ ଆମେ ଅଜ୍ଞ । ଆମର ଦୃଷ୍ଟି ସୀମିତ । କିନ୍ତୁ ସେ? ସେ ସର୍ବଜ୍ଞ, ଭୂତ ଭବିଷ୍ୟ ବର୍ତ୍ତମାନ

ସବୁ ତାଙ୍କୁ ଜଣା । "ଜଗବନ୍ଧୁ ପରି ଜଣେ ସାମନ୍ତ, ନାହିଁ ନାହିଁ ତ । ଚଉଦ ଭୁବନ ବାରତା ଜାଣନ୍ତି ଚକ୍ରରେ ଫେଡ଼ନ୍ତି ଆରତ ।" ତେଣୁ ଥରଟିଏ ତାଙ୍କର ଶରଣାପନ୍ନ ହୋଇଗଲେ, ଭକ୍ତର ସମସ୍ତ ଦାୟିତ୍ୱ ସେ ନିଜ ଉପରକୁ ନେଇଯାଆନ୍ତି । ଯେଉଁ ଗୋଟିକ ଆମ ପାଇଁ ମଙ୍ଗଳ ତାହା ହିଁ ସେ କରିବାକୁ ଅନୁମତି ଦିଅନ୍ତି, ତାହା ହିଁ କରାଇ ନିଅନ୍ତି ଆମ ମାଧ୍ୟମରେ ଏବଂ ଯାହା ଅମଙ୍ଗଳ, ଅହିତକର ତାହା କେବେ ବି କରିବାକୁ ଦିଅନ୍ତିନି । ଆଉ ସେତିକିବେଳେ ଆମେ ତାଙ୍କୁ ବୁଝି ନ ପାରି କହିଥାଉ ଠକ । ତାଙ୍କ କଥାରେ ପ୍ରକାଶ କରୁ ସଂଶୟ । ଏହା କ'ଣ ସତ ? ଠାକୁର ଯାହା କହିଲେ ତା' କ'ଣ ସତରେ ସମ୍ଭବ ନା ମିଛରେ ଆମକୁ ଠକିଦେଲେ ?

ଥରେ ନୁହେଁ ଦୁଇ ଦୁଇଥର ଏଭଳି ଧାରଣାର ବଶବର୍ତ୍ତୀ ହୋଇଛନ୍ତି ଭକ୍ତ ହରିହର ପଟ୍ଟନାୟକ (ବଳରାମପୁର ତଳଗଡ଼, ଯାଜପୁର / ବଙ୍ଗାଳି ସାହି, କଟକ) ତାଙ୍କର କର୍ମମୟ ଜୀବନରେ । ଆଉ ଠାକୁରଙ୍କ ଶ୍ରୀମୁଖ ବାଣୀ ସତ୍ୟରେ ପରିଣତ ହେଲା ବେଳକୁ ହୁଏତ ଅନେକ ବିଳମ୍ବ ହୋଇଯାଇଛି, ଠାକୁରେ ତାଙ୍କ ସ୍ଥୂଳଲୀଳାର ଅବସାନ ଘଟାଇ ବାହୁଡ଼ି ଯାଇଛନ୍ତି ତାଙ୍କର ନିତ୍ୟଧାମକୁ ।

ହରିବାବୁ ଥିଲେ ଉଦ୍ଭିଦ ବିଜ୍ଞାନ ବିଭାଗର ଅଧ୍ୟାପକ । ରାଜ୍ୟ ସରକାରଙ୍କ ଅଧୀନରେ ଚାକିରୀ । ଗେଜେଟେଡ୍ ପାହ୍ୟା । ତଥାପି ଦରମା ସେତେବେଳେ ବହୁତ କମ୍ । ସେ ତୁଳନାରେ କେନ୍ଦ୍ର ସରକାରଙ୍କ ଅଧୀନରେ ଥିବା ଚାକିରୀମାନଙ୍କରେ ଦରମା ଭଲ । ଯୁବକ ସୁଲଭ ବୟସରେ ଅଧିକ ରୋଜଗାରର ନିଶା ତାଙ୍କୁ ଘାରିଲା । ଖବରକାଗଜର ବିଜ୍ଞାପନ ଦେଖି ଦରଖାସ୍ତ କଲେ କେନ୍ଦ୍ର ସରକାରଙ୍କ ଚାକିରୀ ପାଇଁ । ଫରେନ୍‌ସିକ୍ ଲାବୋରେଟୋରୀ, ଯେଉଁଠି ଅପରାଧୀକୁ ଠାବ କରିବା ପାଇଁ ହୁଏ ବୈଜ୍ଞାନିକ ଅନୁସନ୍ଧାନ – ନାନାଦି ପରୀକ୍ଷା ନିରୀକ୍ଷା । ଅପରାଧ ଘଟାଇ ଅପରାଧୀ ଫେରାର୍ ହୋଇ ଯାଇଥିଲେ ଟିପଚିହ୍ନ ଓ ସନ୍ଧାନୀ କୁକୁର ସାହାଯ୍ୟରେ ତା' ଦେହର ଗନ୍ଧ ବାରି ତା'ର ସନ୍ଧାନ ନେବାଠାରୁ ଆରମ୍ଭ କରି ମଣିଷ ଶରୀରର ଯେ କୌଣସି ଅଂଶ ଏପରିକି ଶୁଖିଲା ରକ୍ତଦାଗ ଓ କେଶକୁ ମଧ୍ୟ ବୈଜ୍ଞାନିକ ପଦ୍ଧତିରେ ପରୀକ୍ଷା କରି ବ୍ୟକ୍ତି ସମ୍ପର୍କରେ ବହୁ ଅଜଣା ତଥ୍ୟ ହାସଲ କରିବା ପର୍ଯ୍ୟନ୍ତ କାର୍ଯ୍ୟ ଏହି ଫରେନ୍‌ସିକ୍ ବିଜ୍ଞାନ ବଳରେ ସମ୍ଭବ ହୋଇଥାଏ ଏବଂ ପୋଲିସ୍ ଓ ଅନ୍ୟ ତଦନ୍ତକାରୀ ଦଳକୁ ଏହା ବହୁଳ ଭାବରେ ସାହାଯ୍ୟ କରିଥାଏ । ଇଏ ହେଉଛି ସେଇ ବିଭାଗର ଚାକିରୀ ।

ସେତେବେଳର ପରିସ୍ଥିତି ଭିନ୍ନ ଥିଲା । ଶିକ୍ଷାଗତ ଯୋଗ୍ୟତା ଥିଲେ କେବଳ ଦରଖାସ୍ତ ଉପରେ ଅନେକ ସମୟରେ ନିଯୁକ୍ତି ମିଳି ଯାଉଥିଲା । ସାକ୍ଷାତକାରର ଆବଶ୍ୟକତା ପଡୁ ନ ଥିଲା । ଶିକ୍ଷିତ ବେକାର ପ୍ରାୟ କେହି ନ ଥିଲେ । ପଦବୀ ତୁଳନାରେ

ଶିକ୍ଷିତ ଲୋକଙ୍କ ସଂଖ୍ୟା ପ୍ରାୟ କମ୍ ଥିଲା । ତେଣୁ ଜଣେ ଜଣେ ପାଞ୍ଚ ସାତଟା ପର୍ଯ୍ୟନ୍ତ ଚାକିରୀ ଛାଡ଼ି ଛାଡ଼ି ଶେଷକୁ ତାଙ୍କ ପସନ୍ଦଯୋଗ୍ୟ ପଦବୀରେ ହିଁ ସ୍ଥାୟୀ ଭାବରେ ରହୁଥିଲେ ।

ଦରଖାସ୍ତ କରିବାର ଖୁବ୍ କମ୍ ଦିନ ଭିତରେ ଆସିଗଲା ନୂତନ ନିଯୁକ୍ତିପତ୍ର । ନୂଆ କର୍ମକ୍ଷେତ୍ରରେ ଯୋଗ ଦେବାର ଇଚ୍ଛା ବଳବତୀ ହୋଇଉଠିଲା ହରିବାବୁଙ୍କର । ଏବେ ଅପେକ୍ଷା କେବଳ ଠାକୁରଙ୍କ ନିର୍ଦ୍ଦେଶକୁ । ଆଉ ସେଇ ନିର୍ଦ୍ଦେଶ ପାଇଁ ସେ ଧାଇଁଗଲେ କରମଳା ।

ସବୁକଥା ଶୁଣି ସାରିଲା ପରେ ଠାକୁର ପଚାରିଲେ – ଶିକ୍ଷା ବିଭାଗ ଛାଡ଼ିବା କ'ଣ ନିହାତି ଆବଶ୍ୟକ ? ଏଠି କ'ଣ ତମକୁ କମ୍ ଦରମା ମିଳୁଛି ? କିନ୍ତୁ ମୋତେ ଯାହା ଜଣାପଡୁଛି, ତମକୁ ଏ ବିଭାଗରେ ସର୍ବୋଚ୍ଚ ସ୍ଥାନ ମିଳିବ ।

ଚମକି ପଡ଼ିଲେ ହରିବାବୁ । ଠାକୁରେ ଏମିତି କ'ଣ କହୁଛନ୍ତି ?

ତାଙ୍କର ସବୁ ହିସାବ ଗୋଳମାଳ ହୋଇଗଲା । କାରଣ ତାଙ୍କ ହିସାବରେ ଶିକ୍ଷା ବିଭାଗର ସର୍ବୋଚ୍ଚ ସ୍ଥାନ ହେଉଛି ଡି.ପି.ଆଇ. (ଡାଇରେକ୍ଟର ଅଫ୍ ପବ୍ଲିକ୍ ଇନ୍ଷ୍ଟ୍ରକ୍ସନ୍, ଓଡ଼ିଶା) । ସେତେବେଳର ପରମ୍ପରା ଅନୁସାରେ କଟକ ରେଭେନ୍ସା କଲେଜର ଅଧ୍ୟକ୍ଷ ପଦବୀ ମଣ୍ଡନ କରୁଥିବା ବ୍ୟକ୍ତି ହିଁ ଏହି ପଦରେ ଆସୀନ ହୁଅନ୍ତି । ଶିକ୍ଷା ବିଭାଗ କହିଲେ ଏଭଳି ଗୋଟିଏ ବିଭାଗକୁ ବୁଝାଏ, ଯାହାର ପରିସୀମା ପ୍ରାଥମିକଠାରୁ ଆରମ୍ଭ କରି ଉଚ୍ଚଶିକ୍ଷା ପର୍ଯ୍ୟନ୍ତ ପରିବ୍ୟାପ୍ତ ଏବଂ ଯାହାର ଏକମାତ୍ର କର୍ତ୍ତା ହେଉଛନ୍ତି ଡି.ପି.ଆଇ । ଆଜିକାଲି ପରି ଏ ବିଭାଗ ବହୁ ଭାଗରେ ବିଭକ୍ତ ହୋଇ ନ ଥାଏ ।

ହରିବାବୁଙ୍କ ମନ ଭିତରେ ଉଙ୍କି ମାରିଲା ପ୍ରଶ୍ନ । କେଡ଼େ କେଡ଼େ ମହାନ୍ ହସ୍ତୀ ତାଙ୍କ ଉପରେ ଥାଉଁ ଥାଉଁ ସେ କ'ଣ ସତରେ ଏହି ସର୍ବୋଚ୍ଚ ଆସନ ପର୍ଯ୍ୟନ୍ତ ପହଞ୍ଚିପାରିବେ ? ଏକକୁ ଆରେକ ବଳି ଏ ହସ୍ତୀଗଣ । ବହୁ ଅଭିଜ୍ଞତାର ଅଧିକାରୀ ଏମାନେ । ଏମାନଙ୍କ ତୁଳନାରେ ତାଙ୍କର ସ୍ଥିତି କେଉଁଠି ? ଏ ସମସ୍ତଙ୍କୁ ଅତିକ୍ରମ କରି ସେ କ'ଣ ସତରେ... ? ନା, ଏହା କେବେ ବି ସମ୍ଭବ ନୁହେଁ । ଯଦି ହୁଏ ତେବେ ଅତି ବେଶିରେ ସେ ଯାଇ ଯାଇ ପହଞ୍ଚି ପାରନ୍ତି ରେଭେନ୍ସା କଲେଜର ଅଧ୍ୟକ୍ଷ ପର୍ଯ୍ୟନ୍ତ । ତା' ଆଗକୁ ଆଉ ନୁହେଁ । ତା' ଛଡ଼ା ଯଦି ବି ହେଲା, ତେବେ କଲେଜର ଚିନ୍ତା ଅଛି । ନାନା ପ୍ରକାର ସମସ୍ୟା ଅଛି । କିନ୍ତୁ ଫରେନ୍ସିକ୍ ଲାବୋରେଟୋରୀ ଚାକରୀ ସମ୍ପୂର୍ଣ୍ଣ ନିରୋଳା । ସେଠିକା ଶାନ୍ତି କ'ଣ ଏ ଶିକ୍ଷା ବିଭାଗରେ ମିଳିବ ? ଠାକୁରେ କାହିଁକି ବୁଝୁ ନାହାନ୍ତି କେଜାଣି ?

ସମସ୍ତ ବିଦ୍ୟାବୁଦ୍ଧି ପ୍ରୟୋଗ କରି ଠାକୁରଙ୍କୁ ରାଜି କରାଇବାକୁ ଚେଷ୍ଟା କଲେ ହରିବାବୁ । ତୁଳନାତ୍ମକ ଚିତ୍ର ଆଙ୍କି ବୁଝାଇବାକୁ ଚେଷ୍ଟା କଲେ ଯେ ଶିକ୍ଷା ବିଭାଗ ଅପେକ୍ଷା ଏ ନୂଆ ବିଭାଗ ତାଙ୍କ ପାଇଁ ଢେର ଭଲ ।

ଠାକୁରେ ସବୁ ଶୁଣିଲେ । ହସି ହସି ଶେଷରେ ତାଙ୍କର ନିଷ୍ପତ୍ତି ଶୁଣାଇଦେଲେ– ନା, ତମେ ଶିକ୍ଷା ବିଭାଗ ଛାଡ଼ନା । ତମର ଏଇଠି ଉନ୍ନତି ହେବ । ତମେ ଏ ବିଭାଗର ସର୍ବୋଚ୍ଚ ସ୍ଥାନକୁ ଯିବ ।

ଠାକୁରଙ୍କ କଥାକୁ ଶିରୋଧାର୍ଯ୍ୟ କରି ଫେରିଆସିଲେ ହରିବାବୁ । କିନ୍ତୁ ଅବୋଧ ରହିଗଲା ସେ କେଉଁ ସର୍ବୋଚ୍ଚ ସ୍ଥାନ କଥା କହୁଛନ୍ତି । ପ୍ରଶ୍ନ ନୁହେଁ, କେବଳ ପ୍ରତୀକ୍ଷା ହିଁ ଥିଲା ସେତେବେଳର ଏକମାତ୍ର ଉତ୍ତର ।

× × ×

ରାଜନୀତି କରୁଥିବା ଲୋକେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ହେବାର ଆଶା ପୋଷଣ କଲା ପରି ଶିକ୍ଷାକ୍ଷେତ୍ରରେ ଥିବା ବିଦ୍ୱାନଗଣ ପ୍ରାୟ ଆଶା କରନ୍ତି ଦେଶ ବିଦେଶର ନାମକରା ବିଶ୍ୱବିଦ୍ୟାଳୟମାନଙ୍କରେ ଉଚ୍ଚଶିକ୍ଷା ଲାଭ କରିବାକୁ ଓ ଗବେଷଣା କରିବାକୁ । ସେଇମିତି ହରିବାବୁଙ୍କ ମନରେ ଜାଗି ଉଠିଲା ବିଦେଶଯାତ୍ରାର ଅଭିଳାଷ । ପାସପୋର୍ଟ ତିଆରି ହେଲା । ଆମେରିକାର ଚିକାଗୋ ନଗରୀସ୍ଥିତ ଇଲିନଏସ୍ ବିଶ୍ୱବିଦ୍ୟାଳୟର ଜଣେ ପ୍ରଫେସରଙ୍କ ଅଧୀନରେ ଏକ ବର୍ଷିକିଆ ପାଠ୍ୟକ୍ରମରେ ନାମାଙ୍କନ (ରେଜିଷ୍ଟ୍ରେସନ୍) କଲେ ହରିବାବୁ । ବର୍ଷକର ବୃତ୍ତି (ସ୍କଲରସିପ୍) ମିଳିବାର ବ୍ୟବସ୍ଥା ଥାଏ । କିନ୍ତୁ ଯିବା ଆସିବାର ଖର୍ଚ୍ଚ ନିଜ ହାତରୁ । ଟିକେଟ ବି ହୋଇଗଲା, ଯାହାର ମୂଲ୍ୟ ସେ ସମୟରେ ଦଶ / ପନ୍ଦର ହଜାର ଟଙ୍କା ।

ସମସ୍ତ ପ୍ରସ୍ତୁତି ସରିଯିବା ପରେ ହରିବାବୁ ଗଲେ ଠାକୁରଙ୍କ ପାଖକୁ । ଆଶୀର୍ବାଦ ନେଇ ଏଥର ଗନ୍ତବ୍ୟ ପଥରେ ଅଗ୍ରସର ହେବାର କଥା ।

ବିଦେଶ ଯାତ୍ରା ଓ ଉଚ୍ଚଶିକ୍ଷା ସମ୍ପର୍କୀୟ ସମସ୍ତ ବୃତ୍ତାନ୍ତ ହରିବାବୁଙ୍କଠାରୁ ଅବଗତ ହେଲା ପରେ ଠାକୁର କହିଲେ– ଯାତ୍ରାର ସମସ୍ତ ପ୍ରସ୍ତୁତି ତ ସରିଯାଇଛି । ତେବେ ମୋ ମତରେ ତମେ ଏବେ ବିଦେଶ ନ ଯାଇ ଟିକିଏ ଡେରିରେ ଗଲେ ଭଲ ହୁଅନ୍ତା ।

ହରିବାବୁ ଭାବିଲେ, ବୋଧହୁଏ ଏ ଯୋଜନା ବି ସଫଳ ହେବ ନାହିଁ । ନ ହେଲେ ଠାକୁରେ ଏମିତି କାହିଁକି କହିଥାନ୍ତେ ? ତଥାପି ମନ ବୁଝିଲା ନାହିଁ । ପ୍ରଶ୍ନ ଉଠିଲା ମନରେ "ଏତେଗୁଡ଼ାଏ ଟଙ୍କା ତେବେ କ'ଣ ପାଣିରେ ପଡ଼ିଯିବ ।" ପୁଣି ଥରେ ଅଳି କଲେ ଠାକୁରଙ୍କ ନିକଟରେ । ହେଲେ ଠାକୁରେ ଏଥର ଆଉ କିଛି କହିଲେ ନାହିଁ । ଚୁପ୍ ରହିଲେ । ଏଥର ବି ନିରାଶ ହୋଇ ଫେରିବାକୁ ପଡ଼ିଲା ହରିବାବୁଙ୍କୁ ।

କଟକ ଫେରିବା ପରେ ଚିଠି ଆସିଲା ଆମେରିକାରୁ ଏକ ଦୁଃସମ୍ବାଦ ବହନ କରି । ଯେଉଁ ପ୍ରଫେସରଙ୍କ ପାଖରେ ଗବେଷଣା (ରିସର୍ଚ୍ଚ) କରିବାର ଥିଲା, ତାଙ୍କର

ଦେହାନ୍ତ ହୋଇଯାଇଛି ଏକ ସଡ଼କ ଦୁର୍ଘଟଣାରେ । ଯଦି ଇଚ୍ଛା କରନ୍ତି ତେବେ ସେ ଅନ୍ୟ ପ୍ରଫେସରଙ୍କ ପାଖରେ ଗବେଷଣା କରିପାରିବେ । କିନ୍ତୁ ଏ ବିକଳ୍ପକୁ ସେ ଗ୍ରହଣ କରିପାରିଲେନି, କାରଣ ବିଷୟବସ୍ତୁ ଥିଲା ସମ୍ପୂର୍ଣ୍ଣ ଭିନ୍ନ । ନାସ୍ତିବାଚକ ଉତ୍ତର ସହିତ ପ୍ରସଙ୍ଗର ପରିସମାପ୍ତି ଘଟିଲା ସେଇଠି ।

ନୈରାଶ୍ୟଜନିତ ଦୁଃଖ ତ ଥାଏ ମନରେ । ତେବେ ତାକୁ କିଛି ପରିମାଣରେ ଲାଘବ କରିବା ଆଶାରେ ସେ ପୁଣି ବାହାରିଲେ କରମଳାର ଶାନ୍ତି ଆନନ୍ଦାଶ୍ରମକୁ । କରମଳାଚନ୍ଦ୍ରଙ୍କ ସାନ୍ନିଧ୍ୟକୁ । ଠାକୁର ଲେଖିଛନ୍ତି– "ଶାନ୍ତି ଆନନ୍ଦ ଆଶ୍ରମେ ମୋତେ ରଖ, ଯହିଁ ନ ବାଧିବ ମୋତେ ଦୁଃଖ ସୁଖ ।" ଦୁଃଖ ସୁଖ ହେଉଛି ସଂସାରର ନୀତି । ଯେ କୌଣସି ସ୍ଥାନରେ ରହିଲେ ବି ଦୁଃଖ ଓ ସୁଖ ଅଛି ଓ ରହିବ । ଶାନ୍ତି ଆନନ୍ଦାଶ୍ରମ ମଧ୍ୟ ଏଥିରୁ ବାଦ୍ ଯାଇ ନାହିଁ । କିନ୍ତୁ ପାର୍ଥକ୍ୟ ଏତିକି ଯେ ଅନ୍ୟ ସ୍ଥାନରେ ସୁଖଦୁଃଖର ଯେଉଁ ପ୍ରଭାବ ଆମ ଉପରେ ଅଛି, ତାହା ଶାନ୍ତି ଆନନ୍ଦାଶ୍ରମରେ ନାହିଁ । ଦୁଃଖ ସୁଖ ସେଠି ପ୍ରଭାବହୀନ । କାରଣ ସେଠି ଶାନ୍ତି ଓ ଆନନ୍ଦର ରାଜୁତି । ଏ ରହସ୍ୟ ବୁଝିଥିବା ଭକ୍ତ ତେଣୁ ଧାଇଁଯାଏ ଶାନ୍ତିଧାମକୁ ଅକାଳେ, ସକାଳେ, ଯେତେବେଳେ ପାରେ ସେତେବେଳେ । କେବଳ ମେଳା ମହୋତ୍ସବରେ ନୁହେଁ ।

ଠାକୁର ବୁଝାଇଲେ– ଦେଖ ହରିବାବୁ ! ବିଦେଶ ଯାତ୍ରା ବନ୍ଦ ହେଲା ବୋଲି ଆଦୌ ବ୍ୟସ୍ତ ହୁଅନା । ମନ ଦୁଃଖ କରନା । ତମେ ନିଶ୍ଚୟ ବିଦେଶ ଯିବ ଓ ଯାଇ ଫେରିଆସିବ ସମ୍ମାନର ସହିତ ।

ହରିବାବୁଙ୍କ ସଂଶୟାତ୍ମକ ମନ କିନ୍ତୁ ଏକଥା ବୁଝିବାକୁ ପ୍ରସ୍ତୁତ ନ ଥିଲା । ସେ ଭାବିଲେ– ଠାକୁରେ ଠକୁଛନ୍ତି । ମନ ଭୁଲାଇବା ପାଇଁ ଏମିତି କହୁଛନ୍ତି ।

କିନ୍ତୁ ତା'ର ମହତ୍ତ୍ୱ ବୁଝିଲେ ଠିକ୍ ବର୍ଷକ ପରେ ଯେତେବେଳେ କମନ୍ ୱେଲ୍‌ଥ କଣ୍ଟ୍ରି ସ୍କଲରସିପ୍ ଯୋଜନାରେ ମନକୁ ମନ ସୁଯୋଗ (ଅଫର୍) ଆସିଲା ବିଲାତ (ଲଣ୍ଡନ) ଯିବା ପାଇଁ । ଡି.ପି.ଆଇ. ଡାକି କହିଲେ, ଯଦି ଯିବ ତେବେ ବ୍ୟକ୍ତିଗତ ବିବରଣୀ (ବାଇଓଡ଼ାଟା) ଦିଅ । ଚାରି ଛଅଦିନ ଭିତରେ ହରିବାବୁ ସବୁ କାଗଜପତ୍ର ଦାଖଲ କଲେ ଏବଂ ତା'ପରେ ଆସିଲା ତାଙ୍କର ବିଲାତ ଯିବାର ପତ୍ର । ଆମେରିକା ପାଠ୍ୟକ୍ରମର ଅବଧି ଥିଲା ଏକବର୍ଷ ଏବଂ ବୃତ୍ତିର ପରିମାଣ ଥିଲା ସ୍ୱଳ୍ପ । ପି.ଏଚ୍.ଡ଼ି. ଡିଗ୍ରୀର ସୁବିଧା ସେଥିରେ ନ ଥିଲା । କିନ୍ତୁ ଏ ବିଲାତି ପାଠ୍ୟକ୍ରମର ଅବଧି ଥିଲା ତିନିବର୍ଷ । ଅଧିକ ବୃତ୍ତିର ବ୍ୟବସ୍ଥା ସାଙ୍ଗକୁ ଯିବା ଆସିବା ଖର୍ଚ୍ଚ, ଚାକିରୀର ନିୟମିତ ଦରମା ମିଳିବାର ବ୍ୟବସ୍ଥା ମଧ୍ୟ ଥିଲା । ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି କରିବାର ସୁବିଧା ମଧ୍ୟ ଥିଲା । କୃତଜ୍ଞତା ଜ୍ଞାପନ ପୂର୍ବକ ଠାକୁରଙ୍କ ଚରଣ ଧୂଳି ମସ୍ତକରେ ଧାରଣ କରି ହରିବାବୁ ଚାଲିଲେ ବିଲାତ

ପଥେ । ବିଶ୍ୱବିଦ୍ୟାଳୟର ଅନତି ଦୂରରେ ଜଣେ ଭଦ୍ରବ୍ୟକ୍ତିଙ୍କ ଘରେ ସେ ରହିଲେ ଭଡ଼ାରେ ଜଣେ ପେଇଂଗେଷ୍ଟ (ଭଡ଼ାଟିଆ ଅତିଥି) ଭାବରେ । ଯାହା ପଇସା ମିଳିଲା, ସେଥିରୁ ସମସ୍ତ ଖର୍ଚ୍ଚ ଯାଇ ବଳିଲା । ଅଢ଼େଇ ବର୍ଷରେ ଗବେଷଣା କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଯିବାରୁ ଆଉ ତିନିବର୍ଷ ରହିବାକୁ ପଡ଼ିଲା ନାହିଁ ।

କିନ୍ତୁ ଏତେ ସବୁ ସୁବିଧା ସତ୍ତ୍ୱେ ସେଇ ବିଲାତ ରହଣି କାଳରେ ଏମିତି ଏକ ଘଟଣା ଘଟିଲା, ଯାହା ତାଙ୍କ ମନପ୍ରାଣକୁ ଗଭୀର ଭାବରେ ଆନ୍ଦୋଳିତ କରିଦେଲା । ଏକ ବିରାଟ ଶୂନ୍ୟତା ସୃଷ୍ଟି କରିଦେଲା ତାଙ୍କର ହୃଦୟରେ ।

ଘର ପରିବାରଠାରୁ ଦୂରରେ ସମ୍ପୂର୍ଣ୍ଣ ଏକ ଭିନ୍ନ ପରିବେଶରେ ଏ ଜୀବନ ଥିଲା ହରିବାବୁଙ୍କ ପାଇଁ ଏକ ଆହ୍ୱାନ । ଶୀତ ପ୍ରଧାନ ଦେଶ । ବର୍ଷସାରା କୋହଲା ପବନ । ଖାଲି ବସିହେବ ନାହିଁ । କେବଳ ଜୁନ୍ ଜୁଲାଇ ବେଳକୁ ସାମାନ୍ୟ ଗରମ ହୁଏ ।

ଗବେଷଣା କାର୍ଯ୍ୟ ସମୟକୁ ବାଦ୍ ଦେଲେ ବାକି ସମୟତକ ପ୍ରାୟ କଟେ ନିଃସଙ୍ଗତାରେ । ହେଲେ ଏ ନିଃସଙ୍ଗତା ତାଙ୍କ ପାଇଁ ପୀଡ଼ାଦାୟକ ନ ଥିଲା, କାରଣ ପ୍ରତି ମୁହୂର୍ତ୍ତରେ ସେ ଅନୁଭବ କରୁଥିଲେ ଠାକୁରଙ୍କର ସଦୟ ଉପସ୍ଥିତି । ଠାକୁର ଲେଖିଲେ– "ତୋହର ପ୍ରଭୁ ତୋର ପାଶ, ଦେଖ ତୁ କରିଣ ବିଶ୍ୱାସ ।" ମଝିରେ ମଝିରେ ଚିଠିପତ୍ରର ଆଦାନ ପ୍ରଦାନ ବି ଚାଲିଥାଏ ଠାକୁରଙ୍କ ସହିତ ।

ହେଲେ ସେଦିନ କାହିଁକି କେଜାଣି ମନଟା ଆଦୌ ଭଲ ଲାଗିଲା ନାହିଁ । ଖାଇବା, ପିଇବା, ବସିବା, ପଢ଼ିବା କୋଉଥିରେ ବି ଲାଗିଲା ନାହିଁ ମନ । କ'ଣ କରିବେ କ'ଣ ନାହିଁ ସେ ସ୍ଥିର କରିପାରିଲେନି । ମନର ଅସୁସ୍ଥତା କ୍ରମଶଃ ସଂକ୍ରମିତ ହେଲା ଦେହକୁ । ରାତିରେ କିଛି ନ ଖାଇ ସେଇମିତି ଶୋଇ ପଡ଼ିଲେ ।

ରାତି ପ୍ରାୟ ଦୁଇଟା / ତିନିଟା ହେବ । ସ୍ୱପ୍ନ ଦେଖିଲେ, ଠାକୁରେ ତାଙ୍କ ପାଖରେ ଛିଡ଼ା ହୋଇ ହସୁଛନ୍ତି । ତାଙ୍କର ବରଦ ହସ୍ତକୁ ତାଙ୍କ ମସ୍ତକରେ ଥାପି ଆଶୀର୍ବାଦ କରୁଛନ୍ତି । ଭାବିଲେ ଦ୍ୱାରରେ ତ ତାଲା ପଡ଼ିଛି । ଠାକୁରେ ଏ ଭିତରକୁ ଆସିଲେ କେମିତି ? (ପ୍ରସଙ୍ଗ କ୍ରମେ ଏଇଠି ହୁଏତ ସ୍ପଷ୍ଟ କରିଦେବା ଉଚିତ ହେବ ଯେ ସେ ରହୁଥିବା କୋଠରୀ ଭଳି ଦଶଟି କୋଠରୀକୁ ନେଇ ଗୋଟିଏ ଏକକ (ୟୁନିଟ୍) ଗଠିତ ଏବଂ ସେହି ଏକକ ଭିତରକୁ ପ୍ରବେଶ କରିବାର ଦ୍ୱାର ମାତ୍ର ଗୋଟିଏ । କୋଠରୀମାନଙ୍କର ଦ୍ୱାର ତଥା ମୁଖ୍ୟଦ୍ୱାର ଏଭଳି ନିର୍ମିତ ଯେ ଦ୍ୱାରଗୁଡ଼ିକ ଭିତରୁ ଖୋଲିହେବ, ଭିତରୁ ବନ୍ଦ ଥିଲେ ବାହାରପଟୁ କୌଣସି ପ୍ରକାରେ ଖୋଲିହେବ ନାହିଁ ।) ଏତିକି ଭାବିଲା ବେଳକୁ ହଠାତ୍ ତାଙ୍କ ନିଜ କୋଠରୀର କବାଟ ଖୋଲିଗଲା ଧଡ଼୍ କରି ଏବଂ ସେହି ଶବ୍ଦରେ ତାଙ୍କର ନିଦ ଭାଙ୍ଗିଗଲା । ଦେଖିଲେ ସତକୁ ସତ ଠାକୁରେ ଚାଲି ଯାଉଛନ୍ତି ସେହି ଦ୍ୱାର ଦେଇ । ଆଉ କିଛି ଚିନ୍ତା ନ

କରି ଦଉଡ଼ିଲେ ତାଙ୍କ ପଛରେ । ଦୀର୍ଘଦିନର ବ୍ୟବଧାନ ପରେ ଏଭଳି ଏକ ଦୁର୍ଲଭ ଦର୍ଶନ କ'ଣ ହାତଛଡ଼ା କରିହୁଏ ? ଶରୀରରେ କଦମ୍ୱର ଶିହରଣ । ଚରଣରେ ଚାଞ୍ଚଲ୍ୟ । ଉପର ମହଲାରୁ ତଳ ମହଲା । ମଝିରେ ଶିଡ଼ି । ହେଲେ ପହଞ୍ଚି ପାରିଲେନି ତାଙ୍କ ନିକଟରେ । ତଳମହଲାର ମୁଖ୍ୟ ଫାଟକ ବି ଖୋଲିଗଲା । ଚାହୁଁ ଚାହୁଁ ଠାକୁରେ ଚାଲିଗଲେ ସେ ପଟକୁ । କିନ୍ତୁ ସେ ପହଞ୍ଚିଲା ବେଳକୁ ଫାଟକ ବନ୍ଦ । ଅବଶେଷ ରହିଯାଇଥିଲା କେବଳ ଠାକୁରଙ୍କ ଶ୍ରୀଅଙ୍ଗର ଦିବ୍ୟ ସୁଗନ୍ଧ, ଯାହା ଆଚ୍ଛନ୍ନ କରି ରଖିଥିଲା ସମଗ୍ର ପରିବେଶକୁ ।

ହରିବାବୁ ସ୍ଥାଣୁ ପାଲଟିଗଲେ ସେଇଠି । ଭାବି ପାରିଲେନି କ'ଣ ସବୁ ଏମିତି ଘଟିଗଲା ତାଙ୍କ ଆଖି ଆଗରେ ଏବଂ ବିଜୁଳି ବେଗରେ । ଯେଉଁ ଦୂରତ୍ୱକୁ ସେ ଅଳ୍ପ କେତୋଟି ମୁହୂର୍ତ୍ତ ମଧ୍ୟରେ ଅତିକ୍ରମ କରି ଯାଇଥିଲେ ଠାକୁରଙ୍କ ପଛରେ, ସେତିକି ରାସ୍ତାକୁ ଅତିକ୍ରମ କରି ନିଜ କୋଠରୀକୁ ଫେରିବାକୁ ଲାଗିଲା ଘଡ଼ିଏ ।

ଯେଉଁ ବିଜ୍ଞାନୀ ମନ ତାଙ୍କର ସ୍ୱପ୍ନରେ ରୁଦ୍ଧ କୋଠରୀ ଭିତରକୁ ଠାକୁରଙ୍କ ପ୍ରବେଶ ନେଇ ପ୍ରଶ୍ନ ଉଠାଇଥିଲା, ସେହି ମନ ପୁଣି ତାଙ୍କୁ ଅସ୍ଥିର କଲା କୋଠରୀକୁ ଫେରିବା ପଥରେ । ସ୍ୱପ୍ନ ଏବଂ ସତ୍ୟ ମଧ୍ୟରେ ଥିବା ପାର୍ଥକ୍ୟକୁ ସେ ଖୋଜିବାକୁ ଲାଗିଲେ ଏକ ବୈଜ୍ଞାନିକର ଦୃଷ୍ଟିଭଙ୍ଗୀ ନେଇ । ଯେଉଁଥିରେ ଥିଲା ସାକ୍ଷ୍ୟ ଓ ପ୍ରମାଣର ଆବଶ୍ୟକତା ।

ପ୍ରଥମେ ସେ ଖୋଜିଲେ ତାଙ୍କ କୋଠରୀର ଚାବିକୁ । ଦେଖିଲେ, ସବୁଦିନ ପରି ଶୋଇବା ପୂର୍ବରୁ କୋଠରୀର ତାଲା ସେ ଭିତରପଟୁ ବନ୍ଦ କରି ନିଜ ତକିଆ ତଳେ ରଖିଛନ୍ତି ତେବେ ? ବିନା ଚାବିରେ ଏ କବାଟ ପୁଣି ଖୋଲିଲା କେମିତି ? ହେଲେ ତା'ର ଉତ୍ତର ମିଳି ନ ଥିଲା ।

ଜଡ଼ ବିଜ୍ଞାନର ସମସ୍ତ ଅସମାହିତ ପ୍ରଶ୍ନର ସମାଧାନ କିନ୍ତୁ କରିଥିଲା ଚିନ୍ମୟ ବିଜ୍ଞାନ । ଠାକୁରଙ୍କ ସର୍ବବ୍ୟାପିତ୍ୱ, ସର୍ବଶକ୍ତିମାନ ଏବଂ ସର୍ବଜ୍ଞ ସ୍ୱରୂପ ହୃଦୟରେ ଉଦ୍‌ଭାସିତ ହେବା ମାତ୍ରେ ହିଁ ସମସ୍ତ ଅନ୍ଧକାର ଦୂର ହୋଇଯାଇଥିଲା ମନରୁ । ଠାକୁରଙ୍କୁ ବାରମ୍ୱାର ପ୍ରଣାମ ଜଣାଇ ସେ ବାହାରିଲେ ବାହାରକୁ ଭୋର୍ ଚାରିଟାରେ ଏବଂ ପରେ ଚିଠି ପାଇଲେ ଯେ ଠିକ୍ ସେହିଦିନ ଅର୍ଥାତ୍ ୧୯୬୩ ମସିହା ନଭେମ୍ବର ୨୭ ତାରିଖ ରାତିରେ ହିଁ ଠାକୁରେ ତାଙ୍କ ମାନୁଷୀ ଲୀଳାର ଅବସାନ ଘଟାଇ ବାହୁଡ଼ି ଯାଇଛନ୍ତି ତାଙ୍କର ନିତ୍ୟଧାମକୁ ।

ଏ ଖବର ପାଇ ସତେ ଯେମିତି ବଜ୍ର ପଡ଼ିଗଲା ମୁଣ୍ଡରେ । ଛାତିର କୋହ ଓ ଆଖିର ଲୁହକୁ ଆଉ ଲୁଚାଇ ପାରିଲେନି ହରିବାବୁ । ମନେ ମନେ ଜଣାଇଲେ– ପ୍ରଭୁ ! ବିଦେଶରୁ ଫେରିବା ପରେ ତୁମ ଦର୍ଶନ ନ ପାଇ କାଳେ ଭାଙ୍ଗି ପଡ଼ିବି, କ'ଣ ସେଇଥିପାଇଁ

ଏ ଲୀଳା ? ଏ ଦୀନହୀନ ଅକିଞ୍ଚନ ପାଇଁ କ'ଣ ସତରେ ଏତେ କରୁଣା ? ସନ୍ଦିଗ୍ଧ ମନକୁ ମୋର ଶାନ୍ତ କରିବା ପାଇଁ ସତରେ କ'ଣ ଏତେ ସବୁ କଳକୌଶଳ ? ତୁମର ବରଦହସ୍ତ ସବୁଦିନେ ଏଇମିତି ତୁମ ଭକ୍ତମାନଙ୍କ ମସ୍ତକ ଉପରେ ଥାଉ ପ୍ରଭୁ ? ଆଉ କିଛି ଲୋଡ଼ା ନାହିଁ ।

ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି କରିବା ପରେ ରେଭେନ୍ସା ମହାବିଦ୍ୟାଳୟରେ ପୂର୍ବବତ୍ ପ୍ରାଧ୍ୟାପକ ଭାବରେ କିଛି ବର୍ଷ ପୁଣି ଅତିବାହିତ ହେଲା ହରିବାବୁଙ୍କର । ତା'ପରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଭାବରେ କିଛିବର୍ଷ ଏବଂ ଶେଷରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ଅବସ୍ଥାପିତ ହେଲେ ୧୯୮୦ ମସିହାରୁ ୧୯୮୨ ମସିହା ପର୍ଯ୍ୟନ୍ତ, ଯାହା ଥିଲା ତାଙ୍କ ପାଇଁ ଠାକୁରଙ୍କ ଭାଷାରେ ଶିକ୍ଷା ବିଭାଗର ସର୍ବୋଚ୍ଚ ଆସନ ଏବଂ ଯାହା ଥିଲା ସ୍ୱୟଂ ହରିବାବୁଙ୍କ କଳ୍ପନାର ଅତୀତ ।

ପ୍ରିୟ ପାଠକ ବନ୍ଧୁ ! ଠାକୁରେ ଏଇମିତି ଠକନ୍ତି ତାଙ୍କ ଭକ୍ତମାନଙ୍କୁ । ତାଙ୍କ ଠକବିଦ୍ୟାର ଅନ୍ତ ଆଜି ପର୍ଯ୍ୟନ୍ତ କେହି ପାଇ ନାହାନ୍ତି କି ପାଇବେ ନାହିଁ ।



# ଅବୁଝା ଅଙ୍କ

ପାଠପଢ଼ା ପିଲାଙ୍କ ପାଇଁ ଅଙ୍କ ଏକ ବାଧ୍ୟତାମୂଳକ ବିଷୟ । ଅତି କମ୍‌ରେ ମାଟ୍ରିକ୍ ପର୍ଯ୍ୟନ୍ତ ଏ ପାଠଟି ପଢ଼ିବାକୁ ହୁଏ ସମସ୍ତଙ୍କୁ ଏବଂ ତା'ପରେ ସମ୍ପୂର୍ଣ୍ଣ ଇଚ୍ଛାଧୀନ କଲେଜ ସ୍ତରରେ । ବାସ୍ତବ ଜୀବନରେ ଅନ୍ୟ ବିଷୟମାନଙ୍କ ଭଳି ଏ ପାଠଟି କେତେ କାମରେ ଲାଗେ ବା ନାହିଁ, ତାହା ଏକ ଭିନ୍ନ ପ୍ରସଙ୍ଗ । କିନ୍ତୁ ଦେଖାଯାଏ ଅଧିକାଂଶ ପିଲାଙ୍କର ଅଙ୍କ ପ୍ରତି ଥାଏ ଏକ ଅହେତୁକ ଭୟ । ପଢ଼ା ସମ୍ପର୍କୀୟ ଆଲୋଚନାରେ ଯଦି କେବେ କେଉଁଠି 'କଡ଼ା' ନାମକ ଶବ୍ଦଟିର ପ୍ରୟୋଗ ହୁଏ, ତେବେ ତାହା ପ୍ରଥମେ ଲାଗେ ଏଇ ଅଙ୍କ ପାଖରେ । କାରଣ ଅଙ୍କ ଏମିତି ଗୋଟାଏ ପାଠ ଯାହା ବୁଝିବା ଏବଂ ବୁଝାଇବା ପାଇଁ ଉଭୟ ଛାତ୍ର ଏବଂ ଶିକ୍ଷକଙ୍କୁ ଅଧିକ ପରିଶ୍ରମ କରିବାକୁ ପଡ଼େ । ବୁଦ୍ଧିର ବିକାଶ ତଥା ମସ୍ତିଷ୍କକୁ ଅଧିକ କ୍ରିୟାଶୀଳ କରିବା ପାଇଁ ବୋଧହୁଏ ଏ ପାଠଟିର ଏତେ ଗୁରୁତ୍ୱ !

ଆଉ ସବୁଠାରୁ ମଜାକଥା ହେଲା, କେବଳ ଅଙ୍କ ହେଉଛି ଏକମାତ୍ର ପାଠ (ବିଷୟ) ଯେଉଁଥିରେ ଶହେରୁ ଶହେ ନମ୍ବର ମିଳେ । ଅନ୍ୟ କୌଣସି ବିଷୟରେ ନୁହେଁ । ଯଦି ଜଣେ ଠିକ୍ ଭାବରେ ବୁଝିଛି, ତେବେ ଶତକଡ଼ା ଶହେ ନମ୍ବର ରଖିବା ତା' ପକ୍ଷରେ କିଛି ଅସମ୍ଭବ ନୁହେଁ । ଆଉ ଯଦି ବୁଝିନି, ତେବେ ଅଙ୍କ ତା' ପାଇଁ କଡ଼ା ।

କିନ୍ତୁ ବେଳେବେଳେ ଏମିତି କିଛି ଅଙ୍କ ଆସେ ଜୀବନରେ, ଯାହା ବୁଝିବା ଏବଂ ବୁଝାଇବା ଏକାବେଳକେ ଅସମ୍ଭବ ହୋଇପଡ଼େ... ଅବୁଝା ହୋଇ ରହିଯାଏ ସବୁଦିନ ପାଇଁ । ନିମ୍ନୋକ୍ତ ଘଟଣାଟି ହେଉଛି ସେହିଭଳି ଏକ ଅବୁଝା ଅଙ୍କ, ଯାହାର ସମାଧାନ ଆଜିଯାଏଁ ମିଳି ନାହିଁ ।

୧୯୭୭ ମସିହାର ଘଟଣା । କଟକରୁ କରମଳାକୁ ଫେରିବା ବାଟରେ ଆଶ୍ରମର ଜଣେ ବାବାଜୀ ପୁରୀ ମରିଚିକୋଟ୍ ଆଶ୍ରମରେ ଥାଆନ୍ତି । ସନ୍ଧ୍ୟା ପୂଜା ଆରତୀ ପୂର୍ବରୁ ଜଣେ ପଞ୍ଜାବୀ ଭଦ୍ରବ୍ୟକ୍ତି ଆସି ଠାକୁରଙ୍କୁ ଦର୍ଶନ କରି ଠାକୁରଙ୍କ ନିକଟରେ ବସିଥାନ୍ତି ନିରବରେ । ବୟସ ଷାଠିଏ ପାଖାପାଖି ହେବ । ପୂଜା ଆରମ୍ଭ ହେଲା । ପୂଜାରେ ବସିଥାନ୍ତି ସୁଦାମ ବାବା । ନିକଟରେ ବସିଥାନ୍ତି ପୂଜ୍ୟ ନବକିଶୋର ବାବା ଓ ଆଉ ତିନି ଚାରି ଜଣ

ଭକ୍ତ । ଭଜନ ଚାଲିଥାଏ । ଧୀରେ ଧୀରେ ଘଣ୍ଟ ଘଣ୍ଟା ବାଜିଲା ଓ ଠାକୁରଙ୍କର ଆଳତୀ ଉଠିଲା । ତତ୍ ସଙ୍ଗେ ସଙ୍ଗେ ସେ ବ୍ୟକ୍ତିଜଣକଠାରେ କମ୍ପ, ରୋମାଞ୍ଚ, ଅଶ୍ରୁ ଆଦି ସାତ୍ତ୍ୱିକ ବିକାରମାନ ପ୍ରକାଶ ପାଇବାକୁ ଲାଗିଲା । ଅନ୍ୟ ସମସ୍ତେ ଠାକୁରଙ୍କ ଭଜନ ଓ ପୂଜା ଭିତରେ ମଜ୍ଜି ଯାଇଥିବା ବେଳେ ବାବାଜୀ ଜଣକ କିନ୍ତୁ ଅନ୍ୟମନସ୍କ ହୋଇପଡ଼ିଲେ । ଭାବୁଥାନ୍ତି, ଏ ଭଦ୍ରଲୋକ ଜଣକ ତ ଠାକୁରଙ୍କ ଭଜନ କିଛି ବୁଝିପାରୁ ନ ଥିବେ । ଯାଙ୍କଠାରେ ଏସବୁ ଭାବର ଲକ୍ଷଣ ପ୍ରକାଶ ପାଉଛି କେମିତି ?

ପୂଜା ସରିଲା । ଭଦ୍ରଲୋକ ଉଠିଲେ । କୌତୂହଳ ବଶତଃ ବାବାଜୀ ମଧ ଉଠି ଚାଲିଲେ ତାଙ୍କ ପଛେ ପଛେ । ରାସ୍ତା ଉପରକୁ ଆସି ପଚାରି ଚାଲିଥାନ୍ତି ନାନା ପ୍ରଶ୍ନ ହିନ୍ଦୀରେ । ନାଁ, ଗାଁ, ଠିକଣା, ବେଉସା ଇତ୍ୟାଦି କେତେ କଥା ।

ଆଉ ଖୁବ୍, ଧୀର, ନମ୍ର ଭାବରେ ଉତ୍ତର ଦେଇ ଚାଲିଥାନ୍ତି ଭଦ୍ରବ୍ୟକ୍ତି ଜଣକ । ଶେଷରେ ଯାହା ଜଣାଗଲା ସେ ହେଉଛନ୍ତି ପଞ୍ଜାବ ଲୁଧିଆନାର । ନାଁ ସାଧୁ ସିଂ ବୈଦ୍ୟ । ବୃତ୍ତିରେ କବିରାଜ । ଲୋକଙ୍କୁ ବିଭିନ୍ନ ରୋଗ ପାଇଁ ଜଡ଼ିବୁଟି ଔଷଧ ଦେଲାବେଳେ ତା' ସହିତ ଦିଅନ୍ତି ଶ୍ରୀ ଶ୍ରୀ ଠାକୁରଙ୍କର ତୁଳସୀ ପ୍ରସାଦ । ଡାକ୍ତରମାନେ କହନ୍ତି – "We treat, but he cures." ଅର୍ଥାତ୍ ଆମେ ଚିକିତ୍ସା କରୁ, ମାତ୍ର ସେ ଆରୋଗ୍ୟ କରନ୍ତି । ସମ୍ଭବତଃ ସେହି ଏକତତ୍ତ୍ୱ (ଭଗବତ୍ ବିଶ୍ୱାସ) ହିଁ କାମ କରେ ଏ କ୍ଷେତ୍ରରେ । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଉଛି ଯେ ସେ ଠାକୁରଙ୍କ ଦୀକ୍ଷା ଗ୍ରହଣ କରିନାହାନ୍ତି । ମାତ୍ର ଶ୍ରୀ ଶ୍ରୀ ଠାକୁରଙ୍କର ଆଶ୍ରିତ । ଘରେ ଠାକୁରଙ୍କୁ ପୂଜା କରନ୍ତି ଧୂପ, ଦୀପ, ନୈବେଦ୍ୟରେ । ଘରେ ସମସ୍ତ ପରିବାରଙ୍କୁ ଧରି ନାମ କୀର୍ତ୍ତନ କରନ୍ତି– "ସତ୍ୟ ନାରାୟଣ ଅଭିରାମ, ହରେକୃଷ୍ଣ ହରେରାମ"ଓ "ସତ୍ ଚିତ୍ ଆନନ୍ଦ ଗିରିଧର ଶ୍ୟାମ, ଗୁଣୀ ଗୁଣ ନିର୍ଗୁଣ ସଗୁଣ ରାମ । ଅବତାରୀ ଅବତାର ସବୁ ତୁମେ ରାମ, ରାମେତି ରାମେତି ରାମେତି ରାମ ।"

ସବୁ ଆନୁଷ୍ଠାନିକ ବିଧି ବିଧାନର ଊର୍ଦ୍ଧ୍ୱରେ ହେଉଛି ପ୍ରେମଭକ୍ତି । ଠାକୁରଙ୍କୁ ଯିଏ ଭଲ ପାଇଲା, ଶ୍ରଦ୍ଧାଭକ୍ତି କଲା, ପୂଜା ଆରାଧନା କଲା, ସେ ହେଲା ତାଙ୍କର ଭକ୍ତ... ଆଶ୍ରିତ ଜନ । ଠାକୁର ତା'ର ଗୁରୁ, ଭଗବାନ ସବୁକିଛି ।

ବାବାଜୀ ଭାବିଲେ, ଦୀକ୍ଷା ନ ନେଇଥିଲେ ବି ସାଧୁ ସିଂଙ୍କର ମନ ଭିତରେ ନିଶ୍ଚୟ ଏକ ଆକର୍ଷଣ ଥିବ ଶାନ୍ତିଧାମ ପ୍ରତି... ଠାକୁରଙ୍କର ଲୀଳାକ୍ଷେତ୍ର କରମଳା ପ୍ରତି ଏବଂ ସେଥିପାଇଁ ସବୁକଥା ଶୁଣିଲା ପରେ କହିଲେ, "ମୁଁ ତ କାଲି ଆଶ୍ରମକୁ ଯାଉଛି; ଚାଲନ୍ତୁ ସାଙ୍ଗ ହୋଇ କରମଳା ଯିବା । ଠାକୁରଙ୍କୁ ଦର୍ଶନ କରି ଆସିବେ । ବୈକୁଣ୍ଠବାବା ଅଛନ୍ତି, ତାଙ୍କୁ ବି ଦର୍ଶନ କରି ଆସିବେ ।"

ସାଧୁ ସିଂ କିନ୍ତୁ ମନାକଲେ ଆଶ୍ରମ ଯିବାକୁ । କହିଲେ, "ବାବା, ମୁଁ ଯିବି, କିନ୍ତୁ ଏବେ ନୁହେଁ । ଠାକୁର ଯେଉଁଦିନ ନିଜେ ମୋତେ ଡାକିବେ, ସେଇଦିନ ଯିବି ।" ଏତକ କହି ଜାମା ପକେଟ୍‌ରେ ହାତ ପୂରାଇ କିଛି ଟଙ୍କା ମୁଠାକରି କାଢ଼ିଲେ, ବାବାଜୀଙ୍କ ହାତକୁ ବଢ଼ାଇଦେଲେ । ଦେଖିଲେନି କେତେ କାଢ଼ିଲେ । କହିଲେ ଆଶ୍ରମକୁ ଯଦି ଯିବେ, ଏତକ ନେଇ ଠାକୁରଙ୍କୁ ଦେଇଦେବେ ।

ଏତେ ଶ୍ରଦ୍ଧା, ଭକ୍ତି ତଥା ବିଶ୍ୱାସ ସତ୍ତ୍ୱେ ସେ ଯେ କାହିଁକି ଠାକୁରଙ୍କ ଲୀଳାଧାମକୁ ଯିବା ପାଇଁ ମନା କରୁଛନ୍ତି, ସେକଥା ବୁଝିପାରିଲେନି ବାବାଜୀ । ଠାକୁରଙ୍କ ସହିତ ସାଧୁ ସିଂଙ୍କର ସମ୍ପର୍କ ଯେ କି ପ୍ରକାର, ତାହା ଥିଲା ତାଙ୍କ ବିଚାର ବୁଦ୍ଧିର ଅଗମ୍ୟ ।

ଶେଷରେ ଏକ ଭାରାକ୍ରାନ୍ତ ମନ ନେଇ ଫେରିଆସିଲେ ବାବାଜୀ । ମନରେ ଉଙ୍କି ମାରୁଥିବା ଅନେକ ପ୍ରଶ୍ନ ରହିଗଲା ଅସମାହିତ ।

ଏତିକିରେ କିନ୍ତୁ ପୂର୍ଣ୍ଣଚ୍ଛେଦ ପଡ଼ି ନ ଥିଲା ସମ୍ପର୍କରେ । ବରଂ ଆରମ୍ଭ ହେଲା । ତାଙ୍କ ନିକଟରୁ ସଂଗ୍ରହ କରିଥିବା ଠିକଣାରେ ମଝିରେ ମଝିରେ ପତ୍ରାଳାପ କରୁଥିଲେ ବାବାଜୀ । ଉତ୍ତର ମଧ୍ୟ ମିଳୁଥିଲା ସାଧୁ ସିଂଙ୍କଠାରୁ ।

୧୯୭୮ ମସିହା ଜନ୍ମୋତ୍ସବ ପୂର୍ବରୁ ସାଧୁ ସିଂ ଗୋଟିଏ ପତ୍ର ଦେଲେ – ମୁଁ ଆଶ୍ରମକୁ କିଛି ପଠାଇବାକୁ ଚାହୁଁଛି, କାହା ନା'ରେ ପଠାଇବି । ତାଙ୍କ ନିକଟକୁ ଉତ୍ତର ଗଲା, ଯାହା ପଠାଇବ, ଆଚାର୍ଯ୍ୟ ଶ୍ରୀ ବୈକୁଣ୍ଠନାଥ ଦାସଙ୍କ ନାଁରେ ପଠାଅ ।

ଜନ୍ମଦିନର କିଛିଦିନ ପୂର୍ବରୁ ଗୋଟିଏ ବଡ଼ ପାର୍ଶଲ ଆସି ପହଞ୍ଚିଲା ଶାନ୍ତିଧାମ ଡାକଘରେ ଲୁଧିଆନାରୁ । ତା' ସହିତ ପାଞ୍ଚଶତ ଟଙ୍କାର ଏକ ମନିଅର୍ଡ଼ର ଓ ଲଫାପାରେ ଦୁଇଟି ଚିଠି । ପ୍ରେରକ ଥିଲେ ସାଧୁ ସିଂ ବୈଦ୍ୟ । ପାର୍ଶଲଟି ଦେଢ଼ଫୁଟ୍ ମୋଟା ଓ ଅଢ଼େଇ ଫୁଟ ଲମ୍ବା । କନାରେ ଗୋଲାକାରରେ ସିଲେଇ ହୋଇ ଜଉମୁଦ ହୋଇଛି । ସେତେବେଳେ ପାଞ୍ଚଶହ ଟଙ୍କା ମନିଅର୍ଡ଼ର ଆଶ୍ରମର ଅନ୍ତେବାସୀମାନଙ୍କ ପାଇଁ ଥିଲା ଏକ ବିସ୍ମୟ । କାରଣ ସେତେବେଳେ ପାଞ୍ଚଶହ ଟଙ୍କା କେହି ପଠାଇବାର ଜଣା ନ ଥିଲା କି ଶୁଣା ନ ଥିଲା । ପାର୍ଶଲ ଆସିବା ପରେ ରବିବାବା ଆଶ୍ରମର ସବୁ ବାବାମାନଙ୍କୁ ଡକାଇଲେ ଆଳତି ମନ୍ଦିର ସାମ୍ନା ହଲ୍‌କୁ । ଠାକୁରଙ୍କ ସାମ୍ନାରେ ଓ ସମସ୍ତଙ୍କର ଉପସ୍ଥିତିରେ ଖୋଲା ହେଲା ପାର୍ଶଲ । ପ୍ରଥମେ ଖୋଲା ହେଲା ଦୁଇଟି ଚିଠି । ଗୋଟିକରେ ଥିଲା ପାର୍ଶଲରେ ପଠାଯାଇଥିବା ସମସ୍ତ ଦ୍ରବ୍ୟର ତାଲିକା । ଠାକୁରଙ୍କର ଅନନ୍ତ ଶୟନ ପଲଙ୍କରେ ବିଛାଇବା ପାଇଁ ଲୁଧିଆନା ହସ୍ତତନ୍ତର ବଡ଼ ବିଛଣା ଚାଦର, ତକିଆ ଖୋଳ, ଛୋଟ ତଉଲିଆ, ଚରଣ ରଖିବା ପାଇଁ ଛୋଟ ଗାଲିଚା ପରି ଗୋଟିଏ । ଠାକୁରଙ୍କ

ସମାଧିରେ ପିନ୍ଧାଇବା ପାଇଁ ଏକ ବହୁମୂଲ୍ୟ ବସ୍ତ୍ର ଓ ଚାଦର, ଆଚାର୍ଯ୍ୟ ବୈକୁଣ୍ଠ ବାବାଙ୍କ ପାଇଁ ଲୁଗା ଓ ଚାଦର, ଛୋଟ ତଉଲିଆ । ଦ୍ୱିତୀୟ ଚିଠିରେ ଥିଲା ସାଧୁ ସିଂଙ୍କର ଓ ତାଙ୍କ ଠାକୁର ଘରର ଦୁଇଟି ଫଟୋଚିତ୍ର ଏବଂ ତାଙ୍କ ପରିବାରର ସମସ୍ତଙ୍କର ନାମ ଓ ବିବରଣୀ । ଠାକୁର ଘରଟିର ଆକାର ଦଶଫୁଟରେ ଦଶଫୁଟ । ଠାକୁରଘର କାନ୍ଥରେ ଗୁରୁ ନାନକଙ୍କର ଏକ ବଡ଼ ପ୍ରତିମୂର୍ତ୍ତି ଏବଂ ତା'ର ଦୁଇପାର୍ଶ୍ୱରେ ପାଞ୍ଚ ପାଞ୍ଚଟି କରି ଦୁଇଧାଡ଼ିରେ ଠାକୁର ଅଭିରାମଙ୍କର କୋଡ଼ିଏଟି ଏକା ସାଇଜ୍‌ର ଭିନ୍ନ ଭିନ୍ନ ପ୍ରତିମୂର୍ତ୍ତି । ଅନ୍ୟ ଦୁଇପଟ କାନ୍ଥରେ ପଞ୍ଜାବୀ ଭାଷାରେ ଲେଖା ହୋଇଥାଏ– "ସତ୍ୟ ନାରାୟଣ ଅଭିରାମ ଓ ସତ୍‌ଚିତ୍ ଆନନ୍ଦ ଗିରିଧର ଶ୍ୟାମ' ଏହି ନାମ । ଯାହାକୁ ପରିବାରର ସମସ୍ତେ ଏକାଠି ବସି ଗାନ କରନ୍ତି । ଶେଷରେ ଚିଠିରେ ଲେଖାଥିଲା ଏକ ଅନୁରୋଧ, ଠାକୁରଙ୍କର ଗୋଟିଏ ଛଡ଼ା ତୁଳସୀମାଳ ପଠାଇବାକୁ । ସାଧୁ ସିଂଙ୍କଦ୍ୱାରା ପ୍ରେରିତ ସମସ୍ତ ଦ୍ରବ୍ୟ ଯଥାବିଧି ଜୟନ୍ତୀ ଉତ୍ସବରେ ଠାକୁରଙ୍କ ସେବାରେ ଲାଗିଲା ଏବଂ ଉତ୍ସବ ସମାପନାନ୍ତେ କିଛି ଶୁଖିଲା ଭୋଗ ଓ ଶ୍ରୀ ଶ୍ରୀ ଠାକୁରଙ୍କର ତୁଳସୀମାଳ ତାଙ୍କ ନିକଟକୁ ପାର୍ଶଲ କରି ପଠାଗଲା । ପ୍ରାପ୍ତି ସ୍ୱୀକାର ପତ୍ର ମଧ୍ୟ ମିଳିଲା ।

ଏହାପରେ ଆସିଲା ଶ୍ରୀ ଶ୍ରୀ ଠାକୁରଙ୍କର ହୀରକ ଜୟନ୍ତୀ ଉତ୍ସବ ୧୯୭୯ ମସିହାରେ । ପ୍ରଧାନ ଉତ୍ସବ ମୁଖ୍ୟ ଆଶ୍ରମ କରମଳାଠାରେ ପାଳିତ ହେବା ପରେ, ଏ ଉପଲକ୍ଷେ ରାଜ୍ୟ ଭିତରେ ଓ ବାହାରେ ବିଭିନ୍ନ ସ୍ଥାନରେ ସନାତନ ଧର୍ମ ସମ୍ମିଳନୀମାନ ଅନୁଷ୍ଠିତ ହେଲା । ରାଜ୍ୟ ବାହାରର ଉତ୍ସବମାନଙ୍କ ମଧ୍ୟରେ ପ୍ରମୁଖ ଥିଲା, ଦିଲ୍ଲୀ, ମୁମ୍ବାଇ ଓ ବିଜୟ ନଗରମ୍ । ଦିଲ୍ଲୀରେ ଅନୁଷ୍ଠିତ ହୀରକ ଜୟନ୍ତୀ ଉତ୍ସବ ପୂର୍ବରୁ ସାଧୁ ସିଂଙ୍କ ନିକଟକୁ ଆମନ୍ତ୍ରଣ ପତ୍ରଟିଏ ବି ପଠାଗଲା ଦିଲ୍ଲୀ ଉତ୍ସବରେ ଆସି ଯୋଗଦେବା ପାଇଁ । ଲୁଧିଆନାରୁ ଦିଲ୍ଲୀ ଅତି ନିକଟ । କିନ୍ତୁ ତାଙ୍କଠାରୁ କୌଣସି ଉତ୍ତର ଆସିଲା ନାହିଁ । ସେତେବେଳେ ତ ଟେଲିଫୋନ୍ ବା ମୋବାଇଲ ଫୋନ୍‌ର ଏତେଟା ସୁବିଧା ନ ଥିଲା । ଯୋଗାଯୋଗର ଏକମାତ୍ର ସୁବିଧା ମାଧ୍ୟମ ଥିଲା ଡାକଯୋଗେ ପତ୍ରାଳାପ । ସମ୍ମିଳନୀ, ହୀରକ ଜୟନ୍ତୀ ଉତ୍ସବ ସରିଗଲା । ସାଧୁ ସିଂ କିନ୍ତୁ ଆଉ ଆସିଲେ ନାହିଁ । ଏବେ ସାଧୁ ସିଂ ଅଛନ୍ତି କି ନିତ୍ୟଧାମକୁ ଗଲେଣି ଏହା କହିହେବ ନାହିଁ ।

ଏ ଘଟଣାରୁ କିନ୍ତୁ ଏତିକି ବାବାଜୀଙ୍କର ହୃଦ୍‌ବୋଧ ହେଲା ଯେ ଠାକୁରଙ୍କର ଦୀକ୍ଷା ଗ୍ରହଣ ନ କରି ମଧ୍ୟ ଏଭଳି ଅନେକ ଭକ୍ତ ଦେଶର ବିଭିନ୍ନ ପ୍ରାନ୍ତରେ ଅଛନ୍ତି, ଯେଉଁମାନେ ଶ୍ରଦ୍ଧାଭକ୍ତି ଓ ଦୃଢ଼ ବିଶ୍ୱାସରେ ଠାକୁରଙ୍କୁ ବାନ୍ଧି ରଖିଛନ୍ତି । ଯାହା ତାଙ୍କର କେତେକ ଦୀକ୍ଷିତ ଶିଷ୍ୟଭକ୍ତଙ୍କ ନିକଟରେ ନାହିଁ ।

ମନେପଡ଼ିଲା ଠାକୁରଙ୍କ ଲେଖାରୁ ପଦଟିଏ–

"ଭକ୍ତି ମୁକ୍ତିମାନ ତୁମ୍ଭରି କୃପାରେ,
ଭାଗ୍ୟବାନ ବ୍ୟକ୍ତି ମାତ୍ର ପାଇପାରେ।" (ଭକ୍ତି କଲ୍ଲୋଳ)

ସାଧୁ ସିଂ ନିଶ୍ଚୟ ସେହି ଭାଗ୍ୟବାନ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ।



# ଭୋଜିଖିଆ ଅଧାରୁ ରହିଲା

ଚାଉଳିଆଗଞ୍ଜ 'ମଙ୍ଗଳା ମଣ୍ଡପ'ରେ ବିନିର ମାମୁଁଝିଅ ଭଉଣୀର ବାହାଘର । ହଜାରେ ବର୍ଷର ସହର ହେଲେ ବି କଟକର ଗଳିକନ୍ଦି ଦେଖିଲେ ବେଳେବେଳେ ବିଶ୍ୱାସ କରି ହୁଏନା, ଏଇଟା ସହର ନାଁ ଗାଁ । ଅଣଓସାରିଆ ଗଳିରେ ଜଣ ଜଣଙ୍କ ଘରକୁ ଗଲାବେଳେ ସାଇକେଲଟିଏ ଗଡ଼େଇ ଗଡ଼େଇ ନେଇ ହୁଏନା, ବସିକରି ଯିବା ତ ଦୂରର କଥା । ଗଳି ଭିତରେ ଗଳି ଗଳି ଗଲାବେଳେ ଟିକିଏ ସତର୍କ ନ ହେଲେ ଅପର ପାର୍ଶ୍ୱରୁ ଆସୁଥିବା ଲୋକଟିର ଦେହରେ ଦେହ ବାଜିଯାଏ ।

ଏଭଳି ପରିସ୍ଥିତିରେ ଘର ପାଖରେ ବାହାଘର କରିବା, ପାଆଁଶ ତିନିଶ ଲୋକଙ୍କୁ ଡାକି ଭୋଜିଭାତ କରିବା, ବରଯାତ୍ରୀ ଗହଣରେ ବରକୁ ରୋଶଣୀରେ ଆଣି ଘରକୁ ପାଛୋଟି ନେବା ଏକ ପ୍ରକାର ଅସମ୍ଭବ ବ୍ୟାପାର କହିଲେ ଚଳେ । ଏତେ ଝିଂଝଟରେ ପଶିବା ଅପେକ୍ଷା ଖୋଲା ମେଲାରେ ଥିବା ମଣ୍ଡପ ବେଶ୍ ଭଲ । ତେଣୁ ବନ୍ଧୁବାନ୍ଧବ, ସାଙ୍ଗସାଥୀ, ଘରକୁ ଡାକିଲା ନାହିଁ ବୋଲି କହନ୍ତୁ ପଛେ, ଝିଅ ସୀମାର ବାହାଘର ପାଇଁ ଘରଲୋକେ ବାଛିଛନ୍ତି ଏଇ ମଣ୍ଡପକୁ ।

ରଙ୍ଗବେରଙ୍ଗ ଆଲୋକମାଳାରେ ସଜ୍ଜିତ ମଣ୍ଡପ ଓ ତା'ର ଦ୍ୱାରଦେଶରେ ଥିବା ପୁଷ୍ପତୋରଣ ସ୍ୱାଗତ କରୁଛି ନିମନ୍ତ୍ରିତ ଅତିଥି ଅଭ୍ୟାଗତଙ୍କୁ । ରାତି ଦଶଟା ପରେ ବାଜା, ବାଣ, ଡାକବାଜି ଯନ୍ତ୍ର ସବୁ ମନା ଥିବାରୁ ବର ତା' ଭିତରେ ଆସି ପହଞ୍ଚିବାଟା ପ୍ରାୟ ନିଶ୍ଚିତ । ତେଣୁ ତା' ପୂର୍ବରୁ ନିମନ୍ତ୍ରିତ ଅତିଥି ତଥା ବନ୍ଧୁବାନ୍ଧବଙ୍କ ପାଇଁ ମଣ୍ଡପର ଦ୍ୱିତୀୟ ମହଲାରେ ଚାଲିଛି ଭୋଜିଭାତର ବିପୁଳ ଆୟୋଜନ ।

ଅନ୍ୟମାନଙ୍କ ସହିତ ଭୋଜିରେ ମଧ୍ୟ ଯୋଗ ଦେଇଛନ୍ତି କଟକର ଭକ୍ତ ବ୍ରଜଭାଇ (ବ୍ରଜବନ୍ଧୁ ପାତ୍ର) ଓ ପତ୍ନୀ ବିନି । ନାନାଦି ସୁସ୍ୱାଦୁ ଅନ୍ନବ୍ୟଞ୍ଜନରେ ଭରପୂର ନିଜ ନିଜର ଥାଳିଟି ମାନ ଧରି ଯିଏ ଯେଉଁଠି ସୁବିଧା, ବସି ବା ଛିଡ଼ା ହୋଇ ଭୋଜିର ମଜା ଉଠାଉଛନ୍ତି । ଏତିକିବେଳେ ହଠାତ୍ ବ୍ରଜଭାଇଙ୍କର ନଜର ପଡ଼ିଗଲା ମଣ୍ଡପର ସିଡ଼ି ଉପରେ । ଅଶୀତିପର ଜଣେ ବୃଦ୍ଧ ହାତରେ ଖଣ୍ଡିଏ ବଙ୍କୁଲି ବାଡ଼ି ଧରି ଧୀରେ ଧୀରେ

ଉଠି ଚାଲିଛନ୍ତି ପାହାଚ ପରେ ପାହାଚ । ପରିଧାନରେ ଅଛି ଈଷତ୍ କଷାୟ ରଙ୍ଗର ଖଣ୍ଡିଏ ବସ୍ତ୍ର ଓ ପଞ୍ଜାବୀ । ଚମକି ପଡ଼ିଲେ ବ୍ରଜଭାଇ । ଇଏ ଆଉ ସେଇ ବୃଦ୍ଧ ନୁହନ୍ତି ତ, ଯାହାଙ୍କୁ ସିଏ ଭେଟିଥିଲେ ଶଯ୍ୟାଶାୟୀ ଅବସ୍ଥାରେ ପ୍ରାୟ ବର୍ଷକ ତଳେ ? ଡାକ ପକାଇଲେ ବିନିକୁ ।

– ଅଛା ବିନି ! ଦେଖିଲ ଦେଖିଲ, ଇଏ ସେଇ ଅବୁଲି ସାହୁ ନା ?

– ହଁ ତ !... କିନ୍ତୁ... କେମିତି... !!!

ଉଭୟଙ୍କର ହାତ ପାଟି ସେତେବେଳକୁ ବନ୍ଦ ହୋଇ ଯାଇଥିଲା ବିସ୍ମୟରେ । ଦୁହେଁ କେବଳ ଚାହିଁ ରହିଥିଲେ ବୃଦ୍ଧଙ୍କର ଗତିପଥକୁ ।

ବୃଦ୍ଧ କ୍ରମଶଃ ନିକଟତର ହେଲେ । କୌତୂହଳବଶତଃ ବିନି ଓ ବ୍ରଜଭାଇ ଧାଇଁଗଲେ ତାଙ୍କ ପାଖକୁ । ଆଖି ଆଗରେ ତାଙ୍କର ନାଚି ଉଠୁଥିଲା ସେଦିନର ସେଇ ରୋଗଶଯ୍ୟା । ଯେଉଁଠି ଶାୟିତ ଥିଲେ ଏଇ ବୃଦ୍ଧ ଅବଧୂତ ସାହୁ । ଡାକ ନାଁ ଅବୁଲି ସାହୁ । ପ୍ରାୟ କୋଡ଼ିଏ ବର୍ଷର ପାରାଲିସିସ୍ ରୋଗୀ । ସମ୍ପୂର୍ଣ୍ଣ ଚଳତ୍‌ଶକ୍ତିହୀନ । ଝାଡ଼ା ପରିସ୍ରା ସବୁକିଛି ସେଇ ବିଛଣାରେ । ପାଞ୍ଚସାତ ପୁଅ... ସମସ୍ତେ ଉଚ୍ଚଶିକ୍ଷିତ । ବିଭିନ୍ନ ସରକାରୀ ତଥା ରାଷ୍ଟ୍ରାୟତ୍ତ ସଂସ୍ଥାମାନଙ୍କରେ ଉଚ୍ଚ ପଦପଦବୀରେ ଅବସ୍ଥାପିତ । ଧନ ବା ମନର ଅଭାବ ନାହିଁ । ପୁଅ ବୋହୂ କାହାରି ବି ସେବା ଯତ୍ନରେ ଅବହେଳା ନାହିଁ । ଡାକ୍ତରୀ ଚିକିତ୍ସା ଓ ଔଷଧ ଅନବରତ ଚାଲିଛି । କିନ୍ତୁ ସ୍ୱାସ୍ଥ୍ୟର ଉନ୍ନତି ଘର ଶୂନ୍ । ଖାଲି ଯାହା କଥା ଦି'ପଦ କହିପାରୁଥାଆନ୍ତି ।

ବ୍ରଜଭାଇଙ୍କ ଶାଶୂ ସେଇ କୁଟୁମ୍ବର ଝିଅ । ଅବୁଲି ସାହୁ ହଠାତ୍‌ଦିନେ କୋଉଠୁ ଶୁଣିବାକୁ ପାଇଲେ, ବିନି ଓ ବ୍ରଜଭାଇ କାଳେ ଠାକୁର ଶ୍ରୀ ଅଭିରାମଙ୍କର ଚରଣାଶ୍ରିତ ହୋଇଛନ୍ତି । ଦିନେ ସାହୁଏ ତାଙ୍କୁ ଡାକି କହିଲେ– ଆରେ ମା ! ତୋ ଝିଅ ଜ୍ୱାଇଁ କେବେ ଆସିଲେ ଟିକେ ମୋ ସହିତ ଭେଟ ହେବାକୁ କହିବୁ ତ !

ଏ ଭିତରେ ପ୍ରାୟ ଚାରି ପାଞ୍ଚମାସ ବିତିଗଲା । ଶଶୁର ଘର ଆଡ଼େ ଯେବେ ବୁଲି ଆସନ୍ତି, ଶାଶୂ ପ୍ରାୟ ଏକଥା କହନ୍ତି । କିନ୍ତୁ ତାଙ୍କ କଥାକୁ ଏତେଟା ଗୁରୁତ୍ୱ ଦିଅନ୍ତି ନାହିଁ ବ୍ରଜଭାଇ । କହନ୍ତି, ତାଙ୍କ ସହିତ ତ ମୋର ପରିଚୟ ନାହିଁ... ସେ କାହିଁକି ମୋତେ ଖୋଜୁଛନ୍ତି ? ମୋ'ଠି ତାଙ୍କର କି କାମ ?

ହେଲେ ସେଥର ଆଉ ଶାଶୂଙ୍କ କଥାକୁ ଟାଳି ପାରି ନ ଥିଲେ ବ୍ରଜଭାଇ । ଶାଶୂ କହିଥିଲେ – ଆରେ ପରିଚୟ ନ ଥିଲେ କ'ଣ ହେଲା ? ବୁଢ଼ା ମଣିଷ... ବିଛଣାରେ ପଡ଼ିଛନ୍ତି... ତମକୁ କେତେ ଖୋଜୁଚନ୍ତି.... ଟିକିଏ ଦେଖା କରି ଆସିଲେ ହୁଅନ୍ତାନି ?

ସମ୍ପର୍କରେ ବିନି ଅବୁଲି ସାହୁଙ୍କର ନାତୁଣୀ । ତେଣୁ ବାଟ କଢ଼େଇଲା ବିନି, ଆଉ ସାଙ୍ଗରେ ଚାଲିଲେ ବ୍ରଜଭାଇ । ଦୁହିଁଙ୍କୁ ପାଖରେ ପାଇ ସେଦିନ ବହୁତ ଖୁସି

ହୋଇଥିଲେ ଅବୁଲି ସାହୁ । କହିଲେ– ଶୁଣିବାକୁ ପାଇଲି ତୁମେ ଦୁହେଁ ଠାକୁରଙ୍କର ଆଶ୍ରିତ ହୋଇଛ ବୋଲି । ଭଲକଥା... ନର ରୂପରେ ସିଏ ନାରାୟଣ... ମୁଁ ମଧ୍ୟ ତାଙ୍କରି ଆଶ୍ରିତ । ଯୁବକବେଳେ ତାଙ୍କର ପ୍ରାକଟ୍ୟ ଲୀଳାଖେଳା କେତେ ଦେଖିଛି... ଏ ଦୀନହୀନ ଅକିଞ୍ଚନକୁ ସେ କେତେଥର ତାଙ୍କର ଶ୍ରୀଅଙ୍ଗରେ ଜଡ଼ାଇ ଧରି ଆଲିଙ୍ଗନ କରିଛନ୍ତି... ଏକା ଏକା କେତେଥର ସାଇକେଲରେ କଟକରୁ କରମଳା ବେଳ ଅବେଳ ନ ମାନି ଧାଇଁ ଯାଇଛି, ତାଙ୍କର ସେଇ ମଦନ ମନୋହର ରୂପକୁ ଟିକିଏ ଦର୍ଶନ କରିବା ପାଇଁ । ହେଲେ ଏବେ ଦୀର୍ଘ କୋଡ଼ିଏ ବର୍ଷ ହେଲା ଏଇ ବିଛଣାରେ... ଆଉ ଯାଇପାରୁନି ଠାକୁରଙ୍କ ପାଖକୁ ।

କଥା କହୁ କହୁ ଦୁଇଧାର ଅଶ୍ରୁ ବହି ଆସିଲା ଅବୁଲି ସାହୁଙ୍କର । ହେଲେ ତାକୁ ପୋଛିବା ପାଇଁ ଶକ୍ତି ନ ଥିଲା ହାତରେ । ଖବର ପାଇ ମଧ୍ୟ ଏତେଦିନ ଧରି ଦେଖା କରିବାକୁ ଆସି ପାରି ନ ଥିବାରୁ ନିଜକୁ ମନେ ମନେ ଦୋଷୀ କରୁଥିଲେ ବ୍ରଜଭାଇ । ଆଉ ଅଧିକ କି ପରିଚୟ ସେ ଖୋଜୁଥିଲେ ସତରେ ? ଯାହାଙ୍କର ଚରଣାଶ୍ରୟ ଲାଭ କରି ସେ ନିଜ ଜୀବନକୁ ଧନ୍ୟ କରିଛନ୍ତି, ଇଏ ତ ତାଙ୍କରି ଅଙ୍ଗଦେହୀ ଭକ୍ତ... ତାଙ୍କରି ଲୀଳାସଙ୍ଗୀ ! ଭାଗ୍ୟରେ ଥିଲେ ଏଭଳି ଭକ୍ତଙ୍କର ଦର୍ଶନ ମିଳେ । ଆଉ ସିଏ... !

ପ୍ରଭୁ ବିଚ୍ଛେଦ ଜନିତ ଦୁଃଖକୁ ଯଥାସମ୍ଭବ ହୃଦୟ ଭିତରେ ଚାପି ରଖି ପୁଣି କହିଥିଲେ ଅବୁଲି ସାହୁ – ଆଚ୍ଛା, ତୁମେମାନେ ତ କରମଳା ନିଶ୍ଚୟ ଯାଉଥିବ ?

– ହଁ ଯାଉଛୁ । ଏବେ ଦୁର୍ଗାପୂଜାକୁ ବି ଯିବୁ ।

– ହଉ, ଏଥର ଗଲାବେଳେ ମନେକରି ଟିକେ ମୋ' ପାଖକୁ ଆସିବ । ତମ ହାତରେ ଠାକୁରଙ୍କ ପାଖକୁ ମୁଁ କିଛି ପ୍ରଣାମୀ ପଠେଇବି । ଦୟାକରି ଟିକେ ନେଇ ଆଶ୍ରମରେ ଦେଇଦବ ।

ଏକ ଭାବପୂର୍ଣ୍ଣ ପରିବେଶରେ ସେଦିନ ବିନି ଓ ବ୍ରଜଭାଇ ବିଦାୟ ନେଇ ଆସିଥିଲେ ବୃଦ୍ଧ ଅବୁଲି ସାହୁଙ୍କଠାରୁ ।

– "ଯାଅ, ଠାକୁରେ ତୁମର ମଙ୍ଗଳ କରନ୍ତୁ ।" ବାଷ୍ପରୁଦ୍ଧ କଣ୍ଠର ଏଇ ଅସ୍ପଷ୍ଟ ଆଶୀର୍ବାଣୀ ସହ ଲୁହଭିଜା ଆଖିର ନିରବ ଚାହାଣୀରେ ସେଦିନ ବିଦାୟ ଦେଇଥିଲେ ଅବୁଲି ସାହୁ । ଭକ୍ତ ପଦଧୂଳି ନେବାର ଅପୂର୍ବ ସୁଯୋଗକୁ ମଧ୍ୟ ହାତଛଡ଼ା କରି ନ ଥିଲେ ଏମାନେ ।

କଥା ଅନୁସାରେ ଦଶହରା ବେଳେ ବ୍ରଜଭାଇ ଅବୁଲି ସାହୁଙ୍କଠାରୁ ପ୍ରଣାମୀ ନେଇ ଆଶ୍ରମରେ ଦେଇଥିଲେ ଏବଂ ଫେରିଲା ବେଳେ ମଧ୍ୟ ଆଶୀର୍ବାଦ ପତ୍ର ଓ ଠାକୁରଙ୍କ ତୁଳସୀ ପ୍ରସାଦ ଆଣି ଦେଇ ଆସିଥିଲେ ତାଙ୍କ ଘରେ ।

ବାସ୍ ସେତିକି । ସେତିକି ମାତ୍ର ଦେଖା ସାକ୍ଷାତ ତାଙ୍କ ସହିତ ବ୍ରଜଭାଇଙ୍କର । ତା'ପରେ ସମ୍ପୂର୍ଣ୍ଣ ଭୁଲିଗଲେ ତାଙ୍କ କଥା । ଗତ ବର୍ଷକ ଭିତରେ କେବେ ଥରଟିଏ ବି ତାଙ୍କର ଆଉ ମନେ ପଡ଼ିନାହାନ୍ତି ଅବୁଲି ସାହୁ ।

ଆଜି ହଠାତ୍ ଏଇ ବାହାଘର ଭୋଜିରେ ତାଙ୍କ ସହିତ ଦେଖା । ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ ବିନି ଆଉ ବ୍ରଜଭାଇଙ୍କର ।

ଏକାସ୍ୱରରେ ପଚାରିବସିଲେ ଦୁହେଁ– ଅଜା ଆପଣ ?... ପୁଣି ଏଠି ! .... କେମିତି ?

– ହଁ ମୁଁ, ସେଦିନର ସେଇ ପଙ୍ଗୁ ପାରାଲିସିସ୍ ରୋଗୀ ଅବୁଲି ସାହୁ ।

– କିନ୍ତୁ କେମିତି ?... ଏକା ଏକା... ସାଙ୍ଗରେ କେହି ନାହାନ୍ତି !... ଆପଣ ଘରଠାରୁ ମଣ୍ଡପ ଯାଏଁ ଏ ଅଧକିଲୋମିଟର ରାସ୍ତା... ଏକା ଏକା... ପୁଣି ରାତି ନଅଟା ବେଳେ... ଆସିଲେ କେମିତି ?...

... ଆପଣ କ'ଣ ସତରେ ଏବେ ସମ୍ପୂର୍ଣ୍ଣ ରୋଗମୁକ୍ତ ?

– କହିବି... ନିଶ୍ଚୟ କହିବି... ଭୋଜି ଖାଇସାର... ମୁଁ ନିଶ୍ଚୟ ତୁମମାନଙ୍କୁ କହିବି... ମୁଁ କେମିତି ଭଲ ହେଲି ।

ବେଶ୍ ସ୍ୱାଭାବିକ ଭାବରେ ଆବୁଲି ସାହୁ ଗୋଟିଏ ଥାଳିରେ ତାଙ୍କର ଖାଦ୍ୟ ଆଣିଲେ... ଗୋଟିଏ ଚୌକିରେ ବସି ଆରାମ୍‌ରେ ଖାଇଲେ ।

ଅଥଚ ଖୁବ୍ ଅସହଜ ହୋଇ ପଡ଼ିଥିଲେ ବିନି ଓ ବ୍ରଜଭାଇ । ଦୁହେଁ ଯେମିତି ବୁଡ଼ି ଯାଇଥିଲେ କେଉଁ ଭାବରାଜ୍ୟରେ । ହାତରେ ଥାଳି ଥିଲା... ମଝିରେ ମଝିରେ ହାତ ପାଟି ପାଖକୁ ଯାଉଥିଲା ସତ... କିନ୍ତୁ ଖାଦ୍ୟ ସରୁ ନ ଥିଲା ଥାଳିରୁ । ନିଜ ଅଜାଣତରେ ଦୃଷ୍ଟି ତାଙ୍କର ମଝିରେ ମଝିରେ ଆକର୍ଷିତ ହୋଇ ଯାଉଥିଲା ଅବୁଲି ସାହୁଙ୍କ ଆଡ଼କୁ... ଉତ୍କଣ୍ଠା ଯେମିତି ବଢ଼ି ବଢ଼ି ଚାଲିଥିଲା ଜାଣିବାକୁ... ଏତେଦିନ ଧରି ଯିଏ ବିଛଣାରେ ପଡ଼ିଥିଲେ... ସେ ଏତେ ଶୀଘ୍ର ଆରୋଗ୍ୟ ଲାଭ କଲେ କେମିତି ?

ଭୋଜନାନନ୍ତରଂ ମୁଖରେ ପରମ ତୃପ୍ତିର ମୃଦୁ ହସଟିଏ ଫୁଟାଇ ଏଥର ଚାହିଁଲେ ଅବୁଲି ସାହୁ । ପଚାରିଲେ– ଆରେ ତମେମାନେ ମୋତେ ଏମିତି ଚାହିଁଛ କ'ଣ ? ତମେ ପରା ଶୁଣିବ, ମୁଁ କେମିତି ଭଲ ହେଲି ବୋଲି ...ତମର ତ ଏ ଯାଏଁ ଖାଇବା ସରିନି ?

ସଚେତନ ହେଲେ ବିନି ଓ ବ୍ରଜଭାଇ । ଖାଦ୍ୟରେ ଆଉ ରୁଚି ନ ଥିଲା ସେମାନଙ୍କର । ରୁଚି ଥିଲା ଅବୁଲି ସାହୁଙ୍କ କଥା ଶୁଣିବାରେ । ହାତ ଧୋଇ ସାରି ଦୁହେଁ ଆସି ବସିଗଲେ ତାଙ୍କ ପାଖରେ ।

ଆରମ୍ଭ କଲେ ଅବୁଲି ସାହୁ । ...ହଉ, ତା'ହେଲେ ଶୁଣ । ତୁମେ ସେଦିନ ଠାକୁରଙ୍କ ତୁଳସୀ ପ୍ରସାଦ ଦେଇ ଫେରିଗଲା ପରେ ମୋ' ମନରେ ଆସିଲା ଭାବାନ୍ତର । ଠାକୁରଙ୍କ କଥା ବହୁତ ମନେପଡ଼ିଲା । ...ଆଖି ଆଗରେ ନାଚି ଉଠିଲା ସେଇ ହସ ହସ ମୁହଁ... ନାଚି ଉଠିଲା ତାଙ୍କ ସହିତ କଟିଥିବା ସେଇ ବିରଳ ମୁହୂର୍ତ୍ତଗୁଡ଼ିକର ଦୃଶ୍ୟାବଳୀ... । ତାଙ୍କ ଅନାବିଳ ସ୍ନେହର ସ୍ମୃତିରାଜି ସୃଷ୍ଟିକଲା ଭାବାବେଗ । ...ଶରୀର ରୋମାଞ୍ଚିତ ହେଲା । ...ନେତ୍ର ଯୁଗଳରୁ ଝରିଗଲା ଅଶ୍ରୁର ଝରଣା । ଭାବିଲି, କୋଡ଼ିଏ ବର୍ଷ କାଳ ତ ଔଷଧ ଖାଇଲି... କିଛି କାମ ଦେଲାନି ।... ଆଉ ଏଗୁଡ଼ାକ ଖାଇକରି ଲାଭ କ'ଣ ? ଏଇମିତି ପଡ଼ି ପଡ଼ି ଯଦି ମରିବା ନିଶ୍ଚିତ, ତେବେ ଏ ଔଷଧଗୁଡ଼ାକ ଖାଇବି କାହିଁକି ? ... ନା, ଆଜିଠାରୁ ଆଉ କୌଣସି ଔଷଧ ଖାଇବି ନାହିଁ ।... କେବଳ ଠାକୁରଙ୍କ ତୁଳସୀ ପ୍ରସାଦ ହିଁ ପାଇବି ।... ତେଣିକି ତାଙ୍କ ଇଚ୍ଛା ଯାହା ଥିବ ତାହା ହେବ ।.... ସେଇଦିନଠାରୁ ମନକୁ ଦୃଢ଼ କରିଦେଲି ।... ଔଷଧ ବନ୍ଦ କରିଦେବା କଥା ଶୁଣି ପୁଅମାନେ ବିରକ୍ତ ହେଲେ ।... ହେଲେ ମୁଁ ଆଉ କାହାରି କଥା ଶୁଣିଲି ନାହିଁ ।

– ତା'ପରେ ?

– ତା'ପରେ ଆଉ କ'ଣ ? ତା'ପରେ ଯାହା ହେବା କଥା ତାହା ହିଁ ହେଲା... ହଠାତ୍ ଦିନେ ଅନୁଭବ କଲି, ଯେମିତି ମୋ ଦେହ, ମନ ଆଉ ପ୍ରାଣରେ ଏକ ଶିହରଣ ଖେଳି ଯାଉଛି । ମୋତେ ଲାଗିଲା, ଯେମିତି ମୋ ଭିତରେ ଏକ ଶକ୍ତିର ସଞ୍ଚାର ହେଉଛି । ମୁଁ ଯେମିତି ଆଉ ପୂର୍ବଭଳି ନିସ୍ତେଜ ନୁହେଁ । ଧୀରେ ଧୀରେ ମନରେ ବଳ ଆସିଲା । ଦେହ ମୁଣ୍ଡ ହାତ ଗୋଡ଼ ଟିକେ ଟିକେ ହଲିବାକୁ ଆରମ୍ଭ କଲା । ଆଗରୁ ପୁଅ ବୋହୂ ମୋତେ ଧରି କଡ଼ ଲେଉଟାଇ ଦେଉଥିଲେ । ଏବେ ମୁଁ ନିଜେ ନିଜେ କଡ଼ ଲେଉଟାଇଲି । ଦିନେ ଇଚ୍ଛା ହେଲା ଉଠି ବସିବାକୁ ଏବଂ ଅନ୍ୟ କାହାରି ସାହାଯ୍ୟ ନ ନେଇ ମୁଁ ଉଠି ବସିବାରେ ସକ୍ଷମ ହେଲି । ଦିନେ ଗୋଡ଼ ଦୁଇଟିକୁ ଖଟ ତଳକୁ ଝୁଲାଇ ଧୀରେ ଧୀରେ ଭୂଇଁରେ ପାଦ ଲଗାଇଲି । ଘରଲୋକଙ୍କ କାନ୍ଧରେ ଭରା ଦେଇ ତା'ପରେ ଛିଡ଼ା ହେଲି । ମୋ ବାହୁକୁ ଧରି ସେମାନେ ମୋତେ ଘର ଭିତରେ ଟିକେ ଟିକେ ଚଲାଇବାକୁ ଚେଷ୍ଟା କଲେ ଏବଂ ତା'ପରେ ମୁଁ ନିଜେ ନିଜେ ଚାଲିବାକୁ ଆରମ୍ଭ କରିଦେଲି । ଔଷଧବନ୍ଦ କରିଦେବା ଯୋଗୁଁ ଯେଉଁମାନେ ମୋ ଉପରେ ବିରକ୍ତ ହେଉଥିଲେ, ସେମାନେ ଦେଢ଼ମାସ ଦୁଇମାସ ଭିତରେ ମୋ ସ୍ୱାସ୍ଥ୍ୟର ଦ୍ରୁତ ପରିବର୍ତ୍ତନକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ଆଉ କ'ଣ କହିବି ପୁଅ ! ସବୁ ସେଇ କରୁଣାମୟ ଠାକୁରଙ୍କ କରୁଣା । କୋଉ କର୍ମ ଦୋଷରୁ ମୋ'ର ଭୋଗିବାର ଥିଲା... ମୁଁ ଭୋଗିଲି... ଆଉ ଆଜି... ମୁଁ ସମ୍ପୂର୍ଣ୍ଣ ସୁସ୍ଥ ।

ଏ ତ ଗଲା ୨୦୦୫ ଡିସେମ୍ବର ୧୧ ତାରିଖର ଘଟଣା। ତା'ପରେ ଆଉ ଦିନେ କରମଲା ଭକ୍ତ ନିବାସରେ ତାଙ୍କ ଘରର କବାଟ ସକାଳୁ ସକାଳୁ ଖୋଲିଦେଲା ବେଳକୁ ବ୍ରଜଭାଇ ଦେଖିଲେ, ଭକ୍ତ ଅବୁଲି ସାହୁ ପିଣ୍ଡାରେ ବସି ଦାନ୍ତ ଘଷୁଛନ୍ତି। ପଚାରିଲେ– ଅଜା ଆପଣ! କେତେବେଳେ?

– କାଲି ସନ୍ଧ୍ୟାରେ ଆସି ପହଞ୍ଚିଲି।

– କ'ଣ ଏକା ନା ଆଉ କିଏ ଆସିଛନ୍ତି?

– ନାଇଁ ଏକା... ଠାକୁରଙ୍କ ଦର୍ଶନ କରିବା ପାଇଁ ବହୁତ ଇଚ୍ଛା ହେଲା... ପୁଅକୁ କହିଲି... ସେ ଆଣି ପୁରୀ ବସ୍‌ରେ ବସେଇ ଦେଲା। ଚନ୍ଦନପୁରରେ ଓହ୍ଲାଇ ଅଟୋରେ ଚାଲିଆସିଲି। ଆଉ ଅସୁବିଧା କ'ଣ? ଠାକୁରେ ଭଲରେ ଭଲରେ ନେଇ ଆସିଲେ।

ବ୍ରଜଭାଇ ଭାବୁଥିଲେ ଭକ୍ତ ଅବୁଲି ସାହୁଙ୍କ ଦୃଢ଼ ବିଶ୍ୱାସ ଆଉ ଠାକୁରଙ୍କର ଅହେତୁକୀ କୃପାର କଥା।

ବୋଧହୁଏ ସେହିଥର ଆଶ୍ରମରେ ବଡ଼ଭାଇ ମୋତେ ଦୂରରୁ ଚିହ୍ନାଇ ଦେଇଥିଲେ ଅବୁଲି ସାହୁଙ୍କୁ... ଆଉ ଶୁଣାଇଥିଲେ ଠାକୁରଙ୍କର ସେହି ଲୀଳା କାହାଣୀ। କିନ୍ତୁ ତାଙ୍କୁ ଭେଟି କଥା ହେବାର ସୁଯୋଗ ମିଳି ନ ଥିଲା ସେତେବେଳେ। ପରେ ଯେତେଥର କଟକ ଯାଇଛି ପ୍ରାୟ ସବୁଥର ଚେଷ୍ଟା କରିଛି ବ୍ରଜଭାଇଙ୍କୁ ସାଙ୍ଗରେ ନେଇ ତାଙ୍କୁ ଭେଟିବାକୁ। କିନ୍ତୁ କେବେ ବି ତାହା ସମ୍ଭବ ହୋଇନି।

ଭେଟିବାର ସୁଯୋଗ ଯେବେ ମିଳିଲା, ସେ ଦିନଟି ହେଉଛି ୨୦୧୭ ମସିହା ନଭେମ୍ବର ୩୦ ତାରିଖ। ବ୍ରଜଭାଇଙ୍କୁ ଫୋନ୍ କଲାବେଳକୁ ସେ ଯାଇ ବାଙ୍ଗାଲୋର୍‌ରେ। ତଥାପି ମନ ଦୃଢ଼ କଲି ଏଥର ନିଶ୍ଚୟ ଭେଟିବି। ବ୍ରଜଭାଇ ଫୋନ୍‌ରେ ତାଙ୍କର ଚାଉଳିଆଗଞ୍ଜ ମଠସାହି ଘର ଠିକଣା ବତେଇ ଦେଲେ। ଯାହାହେଉ ସବୁ ଶ୍ରୀକାନ୍ତଙ୍କ ସହିତ ଘର ଖୋଜି ଖୋଜି ଶେଷକୁ ପାଇଗଲି। ପ୍ରାୟ ଏକଘଣ୍ଟା କାଳ ତାଙ୍କ ପାଖରେ ବସି ଠାକୁରଙ୍କ କଥା ଶୁଣିଲି। ଆମକୁ ଦେଖି ସେ ମଧ୍ୟ ବହୁତ ଖୁସି ହେଲେ।

ତାଙ୍କ ସମେତ ଭକ୍ତ ନିତ୍ୟାନନ୍ଦ ସାହୁ, ଦ୍ୱିଜବର ସାହୁ, ମହେନ୍ଦ୍ର ସାହୁ, ଦେବେନ୍ଦ୍ର ସାହୁ, କୃଷ୍ଣଚନ୍ଦ୍ର ପାତ୍ର, ଗୋବିନ୍ଦ ବେହେରା, ବୁଲା ବାରିକ ଓ ଧନେଶ୍ୱର (ବୁଲା) ସାହୁଙ୍କୁ ନେଇ ଯେଉଁ ଭକ୍ତଗୋଷ୍ଠୀ ସେ ସମୟରେ ଏକାଠି ଆଶ୍ରମ ଯାଉଥିଲେ ଓ ଯେଉଁ ଦଳକୁ ଠାକୁର ଭେଗାଦଳ ବୋଲି ନାଆଁ ଦେଇଥିଲେ, ସେ କଥା କହିବା ସଙ୍ଗେ ସଙ୍ଗେ ଥରେ କେମିତି ଏଇ ଭେଗାଦଳ ପାଇଁ ଠାକୁରଙ୍କ ଚନ୍ଦନ ଚାପ ବିଳମ୍ବିତ ହୋଇଥିଲା, ସେକଥା ମଧ୍ୟ କହିଲେ।

ବିଦାୟ ବେଳେ ତାଙ୍କର ଫୋନ୍ ନମ୍ବର ଆଣିଥିଲି କଥା ହେବାକୁ । କିନ୍ତୁ ଦୁର୍ଭାଗ୍ୟ, ଥରଟିଏ ମଧ୍ୟ କଥା ହେବାର ସୁଯୋଗ ମିଳିଲା ନାହିଁ । ତାଙ୍କୁ ଭେଟିବାର ଠିକ୍ ମାସକ ପରେ ଡିସେମ୍ବର ଶେଷ ଆଡ଼କୁ ସେ ବାହୁଡ଼ି ଗଲେ ଠାକୁରଙ୍କ ଚରଣ ତଳକୁ... ନବେ ବର୍ଷ ବୟସରେ । ସେତେବେଳେ ନା ଥିଲା ତାଙ୍କର ରୋଗ ନା ଥିଲା ଯନ୍ତ୍ରଣା.... ସମ୍ପୂର୍ଣ୍ଣ ସ୍ୱାଭାବିକ ଥିଲା ତାଙ୍କର ଏଇ ମହାଯାତ୍ରା ।

ମୁଁ ତାଙ୍କୁ ଭେଟିବାର ମାତ୍ର ଚାରିଦିନ ପୂର୍ବରୁ ତା ୨୬।୧୧।୨୦୧୭ରେ କଟକ ନୂଆପଡ଼ା ଆଶ୍ରମ ବାର୍ଷିକ ଉତ୍ସବ ପାଳନ ଅବସରରେ ତାଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା ଅନ୍ୟତମ ପୁରାତନ ଭକ୍ତ ଶ୍ରୀ ନୟନ କିଶୋର ମହାନ୍ତିଙ୍କ ସହିତ ।

ସେଦିନ ତାଙ୍କୁ ଭେଟି ନ ଥିଲେ ବୋଧହୁଏ ମୋ ମନରେ ଏକ ବଡ଼ ଅବସୋସ ରହିଯାଇଥାନ୍ତା ସବୁଦିନ ପାଇଁ ।





## ଶ୍ରୀ ପ୍ରତାପ କିଶୋର ପଟ୍ଟନାୟକ

ଜଣେ ନିରଳସ କର୍ମ ତପସ୍ୱୀ । ଠାକୁର ଅଭିରାମ ପରମହଂସ ଦେବଙ୍କ କୃପାଧନ୍ୟ । ସରଳ ଅମାୟିକ ଧର୍ମପ୍ରାଣ ବ୍ୟକ୍ତି । ଗଳ୍ପ, ପ୍ରବନ୍ଧ ଓ କବିତା ପ୍ରତି ଆଦର । ଲେଖିଛନ୍ତି ମଧ୍ୟ ଅନେକ କବିତା । 'ଆରାଧନା' ତାଙ୍କ ଭକ୍ତି ତଦ୍‌ଗତ ହୃଦୟର ସ୍ୱଚ୍ଛନ୍ଦ ସରଳ ଛାନ୍ଦସିକ ଅଭିବ୍ୟକ୍ତି । 'ଅନୁଭବକୁ ସତ୍ୟ କହି' ଠାକୁର ଅଭିରାମଙ୍କ ବାଣୀ ତାଙ୍କ ଭିତରେ ସତତ ବିନର୍ଶିତ୍ । ଠାକୁରଙ୍କ ସମ୍ପର୍କିତ ଅନେକ ଅନୁଭୂତିର ସରଳ ରୂପକାର । ଆକାଂକ୍ଷାମୁକ୍ତ । ଭକ୍ତି ଭାବନାରେ ଋଦ୍ଧିମନ୍ତ । ଠାକୁର ଅଭିରାମଙ୍କ ସମ୍ପର୍କିତ ଜୀବନ୍ତ ଅନୁଭୂତିର ସ୍ନିଗ୍ଧ ରୂପକାର ।

'ଅନୁଭବକୁ ସତ୍ୟ କହି' ତାଙ୍କ ହୃଦୟ ରସରେ ରସାଣିତ ଏକ ରମ୍ୟ ଅର୍ଘ୍ୟ ।

- ପ୍ରକାଶିକା -

